# ଆମ ତୀର୍ଥଯାତ୍ରାର
# ସ୍ମୃତି ଓ ଅନୁଭୂତି



ଶ୍ରୀମତୀ ଇନ୍ଦିରା ପଣ୍ଡା

ମା କୁଠାରୀ ପ୍ରକାଶନ
୰ ରାଘବ ସାହୁ ପରିବାର

ତେଣ୍ଟୁଆପଡ଼ା, ପୋ- ଡ଼ାବରାସିଙ୍ଗି, ଭାୟା: ନୂଆପଡ଼ା
ଜିଲ୍ଲା : ଗଞ୍ଜାମ, ଓଡ଼ିଶା, ପିନ୍ : ୭୬୧୦୧୧

# ଆମ ତୀର୍ଥଯାତ୍ରାର ସ୍ମୃତି ଓ ଅନୁଭୂତି

ଲେଖିକା ଓ ପ୍ରକାଶିକା:
**ଶ୍ରୀମତୀ ଇନ୍ଦିରା ପଣ୍ଡା**
ତେଣ୍ଟୁଆପଡ଼ା, ପୋ- ଡ଼ାବରାସିଙ୍ଗି,
ଭାୟା: ନୂଆପଡ଼ା, ଜିଲ୍ଲା   ଗଞ୍ଜାମ, ଓଡ଼ିଶା,
ପିନ୍   ୭୬୧୦୧୧
ଦୂରଭାଷ : ୯୪୩୮୧୧୪୭୧୩



ପ୍ରଥମ ପ୍ରକାଶନ   ୨୦୧୪

ମୁଦ୍ରଣ
**ଅରୁନ୍ ପ୍ରିଣ୍ଟର୍ସ**
ଗାନ୍ଧିନଗର ମେଇନ୍ ରୋଡ଼
ବ୍ରହ୍ମପୁର, ୭୬୦୦୦୧

# ଅବତରଣିକା

ଜୀବନ ସ୍ମୃତି ଓ ଅନୁଭୂତିର ଗନ୍ତାଘର । ସମଗ୍ର ଜୀବନ କାଳରେ କେତେ ଅନୁଭବ ଆସେ, ସେମିତି ଅକୁହା ରହିଯାଏ, କିନ୍ତୁ ଜୀବନର କିଛି ଅନୁଭୂତି ଅମୃତ ତୁଲ୍ୟ ଅନନ୍ୟ ସ୍ମୃତି ପାଲଟିଯାଏ ମନ ଭିତରେ ଅନୁଭୂତି ହିଁ ଅନୁଭୂତି । ଅନୁଭୂତିକୁ ପରିପ୍ରକାଶ କରିବା ପାଇଁ ଶବ୍ଦର ସାହାଯ୍ୟ ନିଆଯାଇପାରେ ସତ ହେଲେ ଶବ୍ଦକୁ ମାଧ୍ୟମ କରି ଯାହା ପ୍ରକାଶ କରାଯାଏ ତାହା ଅନୁଭୂତିର ପ୍ରତିନିଧିତ୍ୱ କରିପାରେ ନାହିଁ । ତେଣୁ ସବୁକାଳରେ ବ୍ୟକ୍ତିର ଅନୁଭୂତି ତା'ର ନିଜସ୍ୱ ସଂପତ୍ତି ହୋଇ ରହିଥାଏ, ତଥାପି ବେଳେବେଳେ ମଣିଷ ତାହାକୁ ଅନ୍ୟ ଆଗରେ ବ୍ୟକ୍ତ କରିବାର ବ୍ୟାକୁଳତା ଦେଖାଇଥାଏ । ଏଇ ପରିପ୍ରେକ୍ଷୀରେ ଇସ୍କନ ଆୟୋଜିତ ତୀର୍ଥଯାତ୍ରାର ଦିବ୍ୟ ଅନୁଭୂତିରୁ କିଛି ଉପସ୍ଥାପନ କରିବା ଏହି ପୁସ୍ତକର ଉଦ୍ଦେଶ୍ୟ ।

ଏ ପୁସ୍ତକ ପ୍ରକାଶନ ଅବସରରେ ମୁଁ କୃତଜ୍ଞତା ଜଣାଉଛି- ଏଭଳି ଏକ ଅଭିନବ ପୁସ୍ତକ ପ୍ରକାଶନ ପାଇଁ ଉତ୍ସାହ ପ୍ରଦାନ ତଥା ଦାୟିତ୍ୱ ସଂପନ୍ନ କରିଥିବା ମୋ ଦିଅର ଅଧ୍ୟାପକ ଶ୍ରୀ ନିର୍ମଳଚନ୍ଦ୍ରଙ୍କ ନିକଟରେ, ତୀର୍ଥଯାତ୍ରା ଆୟୋଜନର ସମସ୍ତ ଭାର ବହନ କରିଥିବା ମୋର ଦୁଇ ଦିଅର ଶ୍ରୀ ନିତ୍ୟାନନ୍ଦ ଓ ଶ୍ରୀ ଗୌରଚନ୍ଦ୍ରଙ୍କ ନିକଟରେ । ଯେଉଁମାନଙ୍କର ଆଗ୍ରହ, ଉତ୍ସାହ, ସାହାଯ୍ୟ ଓ ଶୁଭକାମନାକୁ ପାଥେୟ କରି ତୀର୍ଥାଟନ ସମାପନ ହୋଇପାରିଛି, ମୋର ଗୁରୁଜନ, ପରିବାର, ବନ୍ଧୁ ଓ ଆତ୍ମୀୟସ୍ୱଜନଙ୍କ ପ୍ରତିବେଶୀ ଓ ସହକର୍ମୀବୃନ୍ଦଙ୍କ ନିକଟରେ ଦୀର୍ଘ ଚାଳିଶ ବର୍ଷର ସୁଖ ଦୁଃଖର ସାଥୀ, ପ୍ରେରଣାର ଉତ୍ସ ମୋ ସ୍ୱାମୀଙ୍କ ନିକଟରେ...

ପୁସ୍ତକର ସଂଶୋଧନ ଓ ପ୍ରକାଶନ ଦାୟିତ୍ୱ ବହନ କରିଥିବା ଅଧ୍ୟାପକ ଡ଼କ୍ଟର ନିହାର ରଞ୍ଜନ ମିଶ୍ର ଓ ଅରୁନ୍ ପ୍ରିଣ୍ଟର୍ସ, ବ୍ରହ୍ମପୁର କର୍ମଚାରୀଙ୍କ ନିକଟରେ...

ଆଧୁନିକ ବ୍ୟସ୍ତବହୁଳ କର୍ମଜଞ୍ଜାଳମୟ ଜୀବନଧାରା ମଧ୍ୟରୁ ଅମୂଲ୍ୟ ସମୟ ଦେଇ ମୂଲ୍ୟବାନ ଅଭିମତମାନ ପ୍ରଦାନ କରି ମୋତେ ଚିରଋଣୀ କରିଥିବା ମୋର ପରମ ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ରାମଚନ୍ଦ୍ର ସାହୁ, ଶ୍ରୀ କାଳିଚରଣ ପଟ୍ଟନାୟକ ଓ ଶ୍ରୀ ଭାସ୍କର ସ୍ୱାଇଁଙ୍କ ନିକଟରେ...

ତଥା ଜଗତର ନାଥ ଶ୍ରୀଜଗନ୍ନାଥ ଯେ ମନ୍ତ୍ରହୀନ, କ୍ରିୟାହୀନ, ଅକିଞ୍ଚନର ବ୍ୟାକୁଳ ଐବେଦନ ଶୁଣିପାରନ୍ତି ତାଙ୍କରି ଜଳଜ ଚରଣରେ...

ଅକ୍ଷରରେ ଅକ୍ଷର ଯୋଡ଼ି ମନ ଗହନର ଦିବ୍ୟ ସ୍ମୃତି ଓ ଅନୁଭୂତିକୁ ରୂପ ଦେଲାବେଳେ ଅକ୍ଷରେ ଅକ୍ଷରେ ମୁଁ ଅନୁଭବ କରିଛି କରୁଣା ବରୁଣାଳୟଙ୍କ ଅଲୌକିକ ଲୀଳା ।

ଅତଏବ ଜଗତ ଜନ ବନ୍ଧୁ ଜଗନ୍ନାଥ ସ୍ୱାମୀଙ୍କ ନିକଟରେ ବିନମ୍ର ବିନତି ଜଗତ ଜନଙ୍କୁ ଶଙ୍ଖରେ ପୁରାଇ ଘଣ୍ଟରେ ଘୋଡ଼ାଇ ସୁଖରେ ରଖନ୍ତୁ ।

**!! ହରେକୃଷ୍ଣ !!**

*- ଲେଖିକା*

# ରଚନା ପଠନ ପରେ...

ତୀର୍ଥ ପର୍ଯ୍ୟଟନରେ ପରମାର୍ଥ ପ୍ରାପ୍ତିର ସୂକ୍ଷ୍ମ ବିଭବ ନିବିଷ୍ଟ ଅଟେ । ତେଣୁ ଇସ୍କନ କୃଷ୍ଣ ବଳରାମ ମନ୍ଦିର, ଭୁବନେଶ୍ୱର ଆନୁକୂଲ୍ୟରେ ପ୍ରତିବର୍ଷ ମୁମୁକ୍ଷୁ ତୀର୍ଥଯାତ୍ରୀମାନଙ୍କର ପବିତ୍ର ଭାରତ ଭୂମିରେ ଥିବା ପରମ ପାବନ ଚତୁର୍ଦ୍ଧାମ, ମଙ୍ଗଳମୟ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ, ଶାକ୍ତି ଓ ଶକ୍ତିପୀଠ, ଅଲଭ୍ୟ ମହାକୁମ୍ଭ, ପୁଣ୍ୟତୋୟା ନଦନଦୀ ତଥା ସାଗର ସଙ୍ଗମ ମହାସ୍ନାନ, ହିନ୍ଦୁ-ପ୍ରାଣ ପୁରାଣ ରାମାୟଣ , ମହାଭାରତ ବର୍ଣ୍ଣିତ ପ୍ରସିଦ୍ଧ ଅବତାର ମୁନି, ଋଷି ପବିତ୍ର ଜନ୍ମଭୂମି, ସାଧନାସ୍ଥଳ ତଥା ଜାତୀୟ ସଂହତିର ଆଧାର ମହାନ୍ ଐତିହାସିକ ସ୍ମୃତି ପୀଠ । ଅଖଣ୍ଡ ହରେକୃଷ୍ଣ ନାମ ସଂକୀର୍ତ୍ତନ ପରିବେଶରେ ଦର୍ଶନ କରିବାର ସୌଭାଗ୍ୟ - ଭେଟି ବିଗତ ୨୦ ବର୍ଷଧରି ସଞ୍ଚାଳିତ ହୋଇଆସୁଅଛି ।

ଏହି ସୁଲଭ ତୀର୍ଥଯାତ୍ରାରେ ସାରସ୍ୱତ ସାଧିକା ଶ୍ରୀମତି ଇନ୍ଦିରା ପଣ୍ଡା ସଂପ୍ରତି ସମଗ୍ର ଭାରତବର୍ଷର ତୀର୍ଥ ପର୍ଯ୍ୟଟନ ସାରି ତାଙ୍କର ଅମ୍ଳାନ ପ୍ରତ୍ୟକ୍ଷ ଅନୁଭୂତିକୁ ହୃଦୟର ବିଦଗ୍ଧ ଭାବ ଓ ମନଜିଣା ପରିଭାଷାରେ ସାବଲୀଳ ସୁଖପାଠ୍ୟ ଶୈଳୀରେ ଏହି ପୁସ୍ତିକ ''ଆମ ତୀର୍ଥଯାତ୍ରାର ସ୍ମୃତି ଓ ଅନୁଭୂତି''ରେ ଆମ ସମସ୍ତଙ୍କ ପାଇଁ ଉପସ୍ଥାପନା କରିଅଛନ୍ତି ।

ପ୍ରତ୍ୟେକ ଟ୍ରେନ୍ ତଥା ବସ୍‌ଯାତ୍ରାରେ ଅଙ୍ଗଲିଭା ଅନୁଭୂତି, ପ୍ରସାଦସେବନ ବ୍ୟବସ୍ଥା, ରାତ୍ରିଯାପନ, ସହଯାତ୍ରୀମାନଙ୍କର ଏକାନ୍ନବର୍ତ୍ତୀ ପରିବାରର ଭାବ ଏବଂ ସର୍ବୋପରି ପରସ୍ପର ମଧ୍ୟରେ ନୂତନ ବଂଧୁ ଭାବରେ ପ୍ରତିଷ୍ଠା ନିଖୁଣ ଭାବରେ ଶବ୍ଦ ବ୍ରହ୍ମପୁ ମାଧୁର୍ଯ୍ୟ ଶକ୍ତିରେ ଆଙ୍କିବାରେ ଶ୍ରୀମତୀ ପଣ୍ଡା ସଫଳ ହୋଇଛନ୍ତି ।

ପୁସ୍ତିକାଟିରେ ଆବଶ୍ୟକତା ଅନୁଯାୟୀ ବାସ୍ତବତାରୁ ସ୍ୱକୀୟ ଅନୁଭୂତିରେ ଆହରଣ କରିବା ପାଇଁ ଲେଖିକା ଉଚ୍ଚକୋଟିର ମୂଲ୍ୟବାନ ଉଦ୍ଧୃତାଂଶ (Quotation) ପରିବେଷଣ କରିଛନ୍ତି ।

ପ୍ରତ୍ୟେକ ତୀର୍ଥର ମାହାତ୍ମ୍ୟ ତଥା ଆତ୍ମାକୁ ଉପଲବ୍ଧି କରିବା ପାଇଁ ନୂତନ ସୃଷ୍ଟିର ସମ୍ଭାବରେ ପୁସ୍ତିକାଟି ପରିପୁଷ୍ଟ ହୋଇଅଛି । ଅତୀତର ଯାତ୍ରୀ ଏହା ପାଠକରି ସ୍ମୃତି ରୋମନ୍ଥନ କରି ନିଶ୍ଚିତ ଭାବରେ ଉଲ୍ଲସିତ ହେବେ । ପୁନଶ୍ଚ ଭବିଷ୍ୟତ ଯାତ୍ରୀମାନଙ୍କର କରକମଳରେ ଏହା ଏକ ଅମୂଲ୍ୟ ଉପହାର ହୋଇ ପଥପ୍ରଦର୍ଶକର ଭୂମିକା ନିର୍ବାହ କରିବ ।

ସର୍ବୋପରି ଏହି ପୁସ୍ତିକ ଓଡ଼ିଶା ସାରସ୍ୱତ ଭଣ୍ଡାରରେ ଏକ ମାଇଲଷ୍ଟମ୍ଭ ହୋଇ ତୀର୍ଥଯାତ୍ରା ଧର୍ମୀୟ ଚେତନାର ସର୍ବକାଳୀନ ପ୍ରସଙ୍ଗ ହୋଇରହିବ ।

ରାମଚନ୍ଦ୍ର ସାହୁ

ତା. ୧୧.୦୮.୨୦୧୩
ଭୁବନେଶ୍ୱର

ରାମଚନ୍ଦ୍ର ସାହୁ
(ଲେଖିକାଙ୍କ ସହତୀର୍ଥଯାତ୍ରୀ)



# ଲେଖା ଓ ଲେଖିକାଙ୍କ ସଂପର୍କରେ

ଶ୍ରୀମତୀ ଇନ୍ଦିରା ପଣ୍ଡାଙ୍କ ସହିତ ଭୁବନେଶ୍ୱର ଇସ୍କନ ମନ୍ଦିର ପକ୍ଷରୁ ଆୟୋଜିତ ଉତ୍ତରଭାରତ, ଦକ୍ଷିଣ ଭାରତ ଏବଂ ପଶ୍ଚିମ ଭାରତ ତୀର୍ଥଯାତ୍ରା କରିବାର ସୌଭାଗ୍ୟ ମୋତେ ମିଳିଥିଲା । ସେ ଯେଉଁ ଉତ୍ତର ଭାରତ ଏବଂ ଦକ୍ଷିଣ ଭାରତ ତୀର୍ଥଯାତ୍ରାର ଭ୍ରମଣ କାହାଣୀ ପାଣ୍ଡୁଲିପିଟି ଲେଖିଥିଲେ ତାକୁ ପଢ଼ିବାର ସୁଯୋଗ ଯାତ୍ରା ସମୟରେ ମିଳିଥିଲା ଏବଂ ଲେଖାଟି ମୋତେ ବହୁତ ଭଲ ଲାଗିଥିଲା । ଲେଖାଟିରେ ସେ ଟିକିନିଖି ଯାତ୍ରାକାଳର ସମସ୍ତ ବିଷୟ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଥିଲେ । ତାଙ୍କର ଶବ୍ଦ ସଂଯୋଜନା, ଭାଷାଶୈଳୀ ଏବଂ ପ୍ରତ୍ୟେକ ତୀର୍ଥସ୍ଥାନ ଏବଂ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନର ବର୍ଣ୍ଣନା ଅତି ଉଚ୍ଚକୋଟୀର ହୋଇଛି ।

ଶ୍ରୀମତୀ ପଣ୍ଡାଙ୍କ ସହିତ ଯେଉଁ ଅଳ୍ପ କେତେଦିନ ତୀର୍ଥଯାତ୍ରା କାଳରେ ମିଶିବାର ସୁଯୋଗ ମିଳିଥିଲା, ସେଥିରୁ ଜଣାଗଲା ଯେ ସେ ଏକାଧାରରେ ଜଣେ ସୁଗୃହିଣୀ, ଉଚ୍ଚଶିକ୍ଷିତା ନାରୀ, ପ୍ରତିଭାମୟୀ, ସ୍ନେହଶିଳା, ସୁଶିକ୍ଷୟିତ୍ରୀ ଏବଂ ସୁଲେଖିକା ମଧ୍ୟ । ତାଙ୍କର ଅମାୟିକ ବ୍ୟବହାର ଖୁବ୍ ଅଳ୍ପ ସମୟ ମଧ୍ୟରେ ସମସ୍ତଙ୍କୁ ମୁଗ୍ଧ କରିଦିଏ ।

ତୀର୍ଥଯାତ୍ରାରେ ଆମେ ପ୍ରାୟ ୨୦୦ରୁ ୨୫୦ ପର୍ଯ୍ୟନ୍ତ ଲୋକ ଯାଇଥାଉ ଏବଂ ସେମାନଙ୍କ ମଧ୍ୟରେ ଶ୍ରୀମତୀ ପଣ୍ଡାଙ୍କର ପ୍ରତିଭା ବାରି ହୋଇପଡ଼େ କାରଣ ସେ ପ୍ରତ୍ୟେକ ଯାଗାର ବିସ୍ତୃତ ବିବରଣୀ ସଂଗ୍ରହରେ ଲାଗିପଡ଼ନ୍ତି  ଏବଂ ସେ ସଂଗୃହିତ ତଥ୍ୟ ସବୁକୁ ନିଜ ଲେଖନୀ ମୁନରେ ରୂପ ଦିଅନ୍ତି ।

ତାଙ୍କର ସ୍ୱାମୀ ଶ୍ରୀଯୁକ୍ତ ନିରଞ୍ଜନ ସାହୁଙ୍କ ପାଖରୁ ଟେଲିଫୋନ୍‌ରେ ଖବର ପାଇଲି ଯେ, ଶ୍ରୀମତୀ ପଣ୍ଡାଙ୍କ ଲିଖିତ ୪ଟି ଯାକ ତୀର୍ଥଯାତ୍ରାର ଭ୍ରମଣ କାହାଣୀକୁ ନେଇ ସେ ଏକ ପୁସ୍ତକ ଛାପୁଛନ୍ତି । ଭାରି ଖୁସି ଲାଗିଲା । ଏହା ଲେଖିକାଙ୍କର ଏକ ଅନବଦ୍ୟ ସାହିତ୍ୟ ସୃଷ୍ଟି ହେବ, ଏଥିରେ ସନ୍ଦେହ ନାହିଁ । ପୁସ୍ତକଟିର ଆତ୍ମପ୍ରକାଶ ସମସ୍ତ ପାଠକ ପାଠିକାମାନଙ୍କୁ ନିଶ୍ଚୟ ଆକୃଷ୍ଟ କରିବ ।

ଶ୍ରୀମତୀ ପଣ୍ଡାଙ୍କର ଜୀବନର ଚଲାପଥ କୁସୁମିତ ହେଉ ଏବଂ ତାଙ୍କର ସାରସ୍ୱତ ସାଧନାର ଲେଖନୀ ଏମିତି ଚାଲିରହୁ ଏହାହିଁ ଜଗତର ନାଥ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।

କାଳିଚରଣ ପଟ୍ଟନାୟକ

କାଳିଚରଣ ପଟ୍ଟନାୟକ
ସୁଭଦ୍ରା ଆପାର୍ଟମେଣ୍ଟ, ପଟିଆ, ଭୁବନେଶ୍ୱର



# ଅଭିମତ

ପରମ ପାବନ ହରିଦ୍ୱାର ଧାମରୁ ପୁଣ୍ୟ ଗଙ୍ଗାଜଳ ଏକତ୍ର ସଂଗ୍ରହ କରି ପୁନଶ୍ଚ ଶ୍ରୀ ଶ୍ରୀ ରାମେଶ୍ୱରଙ୍କ ମଥାରେ ଏକତ୍ର ଜଳାଭିଷେକ କରିବା ଆମ ଦୁଇ ପରିବାରର ପୂର୍ବଜନ୍ମର ସଂପର୍କ ବୋଲି ଅନୁମାନ କରିହୁଏ । ତୀର୍ଥଯାତ୍ରା ସମୟରେ ତୀର୍ଥସ୍ଥାନର ଅନୁଭୂତି ଓ ବର୍ଣ୍ଣନାରେ ଶ୍ରୀମତୀ ପଣ୍ଡା ଯାହାସବୁ ଲେଖିଛନ୍ତି ଏହା ପ୍ରତ୍ୟେକ ତୀର୍ଥ ଭ୍ରମଣକାରୀଙ୍କୁ ଉପଯୁକ୍ତ ଜ୍ଞାନଦାୟକ ଓ ପଥପ୍ରଦର୍ଶକ ହିସାବରେ ଗ୍ରହଣୀୟ ହେବ । ଏଥିପାଇଁ ଆମେ ଦୁହେଁ (ମୁଁ ଓ ମୋ ସ୍ତ୍ରୀ) ଆଶା କରୁଛୁ ଏହାର ବହୁଳ ପ୍ରସାରଣ ହେଉ । ଲେଖିକାଙ୍କର ଲେଖନୀ ମୁନରୁ ଅଧିକ ଲେଖା ପ୍ରକାଶ ପାଉ । ଭଗବାନଙ୍କ ପାଖରେ ଲେଖିକାଙ୍କର ସୁସ୍ଥ ଜୀବନ ପାଇଁ ପ୍ରାର୍ଥନା କରୁଛୁ ।

ଭାସ୍କର ସ୍ୱାଇଁ

ଭାସ୍କର ସ୍ୱାଇଁ

ଭଂଜନଗର

ତା. ୨୫.୦୮.୨୦୧୩

# ସୂଚୀପତ୍ର

# ଇସ୍କନ ଆୟୋଜିତ ଉତ୍ତର ଭାରତ ଦର୍ଶନ ତୀର୍ଥଯାତ୍ରା ୨୦୧୦ରେ

## (ଯାତ୍ରାକାଳ - ତା. ୧୫.୦୯.୨୦୧୦ ଠାରୁ ୦୭.୧୦.୨୦୧୦)

## ସ୍ମୃତି ଓ ଅନୁଭୂତିରୁ ଦୁଇପଦ ।

**ପୂର୍ବାଭାସ :** ସବୁ ଅନୁଭୂତି ଲେଖି ବସିଲେ ପୋଥି ପାଲଟି ଯିବ ତେଣୁ ଅଭୁଲା ଅନୁଭୂତି ଗୁଡ଼ିକୁ ସଂକ୍ଷେପରେ ବର୍ଣ୍ଣନା କରିବା ଏହି ଲେଖାର ଉଦ୍ଦେଶ୍ୟ ।

ଅଗଷ୍ଟ ୨୦୧୦ର ଏକ ଶନିବାର ଅପରାହ୍ନ ୩ଟାରେ ସମାଜ ଖୋଲିଲା ବେଳକୁ ଆଖିରେ ପଡ଼ିଲା ଇସ୍କନ ଆୟୋଜିତ ଉତ୍ତର ଭାରତ ତୀର୍ଥଯାତ୍ରାର ପ୍ରଚାରପତ୍ର । ଏଠାରେ ପ୍ରଚାରପତ୍ର ମିଳିବା ସମ୍ବନ୍ଧରେ ହରେକୃଷ୍ଣଙ୍କର ଅପାର କରୁଣା ବିଷୟରେ ପଦେ କହିଲେ ଭଲ ହେବ । ବର୍ତ୍ତମାନ ଆମ ନିବାସସ୍ଥଳୀ ବମକୋଇରେ ଖବରକାଗଜ ପାଇବା କଷ୍ଟକର । ବସ୍‌ରୁ ଖବରକାଗଜ ଓହ୍ଲାଇବା ପରେ କେତେଜଣ ଇଚ୍ଛୁକ ଓ ପ୍ରବଳ ଆଗ୍ରହୀ ଖବରକାଗଜ ପାଠକ ତରତରରେ ଅନ୍ୟମାନଙ୍କର ଖବରକାଗଜକୁ ମଝି ରାସ୍ତାରେ ଖୋଲି ପଢ଼ିସାରିଲା ପରେ, ପୃଷ୍ଠା ପୃଷ୍ଠା କରି ଅସଜଡ଼ା ଅବସ୍ଥାରେ, ନିକଟରେ ଥିବା ଏକ ପାନଦୋକାନରେ ପକାଇ ଚାଲିଯାଆନ୍ତି । ବିଶେଷ ଖବର/ନିଯୁକ୍ତି ଖବର ପ୍ରକାଶିତ ହୋଇଥିଲେ ଘରକୁ ମଧ୍ୟ ନେଇଯାଆନ୍ତି । ଖବର କାଗଜ ଗ୍ରାହକମାନଙ୍କୁ ନିଜର ସମୟ ସୁବିଧା ଦେଖି ଖଣ୍ଡ ଖଣ୍ଡ ଖବର କାଗଜକୁ ଏକାଠି କରି ପାନ ଦୋକାନରୁ ସଂଗ୍ରହ କରିବାକୁ ପଡ଼ିଥାଏ । ଆମକୁ ଲାଗୁଛି ସତେ ଯେପରି ଏହି ସମସ୍ୟାର ସମାଧାନ ନାହିଁ । ସେହି ଶନିବାର ଦିନ ଏଠାରୁ ୮ କି.ମି ଦୂରରେ ଅବସ୍ଥିତ ତେଂତୁଆପଡ଼ା ଗ୍ରାମରୁ ଦୈନନ୍ଦିନ କାମ ତଦାରଖ କରି ମୋର ସ୍ୱାମୀ ଦିନ ୧୨ଘ. ରେ ଗ୍ରାମରୁ ଫେରୁଥିବା ସମୟରେ **'ନିଶାମଣୀ'** ନାମକ ଏକ ବସ୍‌ରୁ ଖବର କାଗଜ ଓହ୍ଲାଇବା ଦେଖିଲେ ଓ ଅକ୍ଷତ ଅବସ୍ଥାରେ ଖବର କାଗଜଟିକୁ ନେଇ ଘରକୁ ଆସିଲେ । ବୋଧହୁଏ ଆମ ଦୀର୍ଘ ୭ ବର୍ଷର ରହଣି ଭିତରେ ଏହା ପ୍ରଥମ ଘଟଣା ଥିଲା । ସେହି ଦିନ ପ୍ରଚାର ପତ୍ର ଦେଖି ଆମେ ଦୁହେଁ ବସି ବିଚାର କଲା ବେଳକୁ ରାତି ସାଢ଼େ ସାତ । ମନ ଭିତରେ ନିଷ୍ପତ୍ତି ନେଇ ସାରିଲା ପରେ ପ୍ରଥମେ ପୂଜ୍ୟା ଶାଶୁଙ୍କୁ ଅନୁମତି ପାଇଁ, ଦ୍ୱିତୀୟରେ ଫୋନ୍ ଯୋଗେ ପରିଚାଳକ ଶ୍ରୀ ପଦ୍ମଧର ଦାସ ମହୋଦୟଙ୍କୁ ବ୍ୟବସ୍ଥା ବିଷୟରେ ଜାଣିବା ପାଇଁ ଓ ସର୍ବଶେଷରେ ତୀର୍ଥଯାତ୍ରାର ସମସ୍ତ ଆୟୋଜନ କଷ୍ଟ ବହନ କରିଥିବା ଭୁବନେଶ୍ୱରରେ ରହୁଥିବା

ମୋର ଦିଅର ଶ୍ରୀ ଗୌର ଚନ୍ଦ୍ର ସାହୁଙ୍କୁ ଫୋନ୍ କଲୁ । ଠିକ୍ ତା' ପରଦିନ ଯାଇ ମୋ ଦିଅର ମାତ୍ର ଟ୧୦୦୦୦.୦୦ ଅଗ୍ରୀମ ଦେଇ ଦୁଇଟି ଟିକଟ ଠିକ୍ କଲେ । ତା' ପରେ ଚାଲିଲା ପ୍ରସ୍ତୁତି ପର୍ବ । କିଛି ସନ୍ଦେହ ହେଲେ ପ୍ରଭୁ ପଦ୍ମଧର ମହୋଦୟଙ୍କଠାରୁ ଫୋନ୍‌ରେ ବୁଝୁଥିଲୁ । ଆମେ ଦୁଇଜଣ ଯାକ ଅଣ୍ଟା, ଆଣ୍ଠୁ ବ୍ୟଥାରେ ପୀଡ଼ିତ । ଜିନିଷ ଧରି ଗାଡ଼ି ବଦଳାଇବାର ଭୟ । ତଥାପି ମନ ଦୃଢ଼ କଲୁ । ଦୀର୍ଘ ତିନି ବର୍ଷ ପୂର୍ବରୁ ମୋ ସ୍ୱର୍ଗୀୟ ନନାଙ୍କର ଅସ୍ଥି ବିସର୍ଜନ କରାଯାଇ ପାରିନଥିଲା । ତେଣୁ ପିତୃପକ୍ଷରେ ଅସ୍ଥି ବିସର୍ଜନ । ପିତୃପୁରୁଷଙ୍କୁ ପିଣ୍ଡଦାନ ଓ ଦର୍ଶନୀୟ ସ୍ଥାନ ପର୍ଯ୍ୟଟନର ଲାଭ ଏକାସାଥିରେ ଉଠେଇବାର ଅଦମ୍ୟ ଉତ୍ସାହ ମନରେ ବଳ ସଂଚାର କଲା ।

ତୀର୍ଥଯାତ୍ରାର କିଛିଦିନ ପୂର୍ବରୁ ମୋ ଶାଶୁ ଓ ମୋ ବୋଉଙ୍କ ଠାରୁ ଆଶୀର୍ବାଦ ଭିକ୍ଷା ପାଇଁ ଯାଇଥିଲୁ । ଆନ୍ଧ୍ରପ୍ରଦେଶର ଇଚ୍ଛାପୁର ନିକଟସ୍ଥ ବିନ୍ଧ୍ୟଗିରି ଗ୍ରାମରେ ଅବସ୍ଥିତ ଆମ ଘର ଇଷ୍ଟ ଦେବୀ ମା କୁଠାରୀ ଚଣ୍ଡୀଙ୍କର କରୁଣା ଭିକ୍ଷା ପାଇଁ ମଧ୍ୟ ଯାଇଥିଲୁ । ଏହି ସବୁ ବିଷଦ ଭାବରେ ବର୍ଣ୍ଣନାର ଉଦ୍ଦେଶ୍ୟ - ଚାକିରୀ ଓ ଚାଷରୁ ସମୟ ବାହାର କରି ଚାରିଆଡ଼େ ବୁଲାବୁଲି କରିବା ଆମ ପକ୍ଷେ କଷ୍ଟକର ଥିଲା । କିନ୍ତୁ ବିନା ଆଶୀର୍ବାଦରେ ତୀର୍ଥଯାତ୍ରା ଅସମ୍ପୂର୍ଣ୍ଣ ବୋଲି ମଧ୍ୟ ମନରେ ଭୟ ରହିଥିଲା ।

ଯାତ୍ରାକାଳ ତା. ୧୫.୦୯.୨୦୧୦ରୁ ଭୁବନେଶ୍ୱରରୁ ଠିକ୍ ହୋଇଥିଲା ମାତ୍ର ଆମେ ସର୍ବମଙ୍ଗଳ ଶ୍ରୀଜଗନ୍ନାଥ ଧାମରୁ ଯାତ୍ରାରମ୍ଭ ଇଛାକରି ପୂର୍ବଦିନ ଅର୍ଥାତ୍ ତା ୧୪.୦୯.୨୦୧୦ରେ ଇଷ୍ଟଦେବୀ ସ୍ମରଣ କରି ଯାତ୍ରାରମ୍ଭ କଲୁ । ବ୍ରହ୍ମପୁରରେ ରହୁଥିବା ମୋ ଦିଅର ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଘରୁ ଭୋଜନ ସାରି, ସେ କରିଦେଇଥିବା ପୁରୀ ରେଳ ଟିକଟ ସଂଗ୍ରହ କରି ତିରୁପତି-ପୁରୀ ଏକ୍ସପ୍ରେସ୍‌ରେ ଦିନ ୧୦ଘ ୧୫ମି.ରେ ଚଢ଼ିଲୁ । ପୁରୀଧାମର ବଡ଼ଦାଣ୍ଡର ନୀଳାଚଳ ଭକ୍ତ ନିବାସରେ ଦିନ ୨ଟାରେ ପହଞ୍ଚିଲୁ । ଶ୍ରୀ ଜଗନ୍ନାଥ ଦର୍ଶନ ବ୍ରାହ୍ମଣ ଭୋଜନ ଓ ମହାପ୍ରସାଦ ସେବନ ପରେ ଭକ୍ତ ନିବାସରେ ରାତ୍ରି ବିଶ୍ରାମ ନେଲୁ ।

### ତା. ୧୫.୦୯.୨୦୧୦, ବୁଧବାର

ଦିନ ୧୦ଟାରେଆମ ତୀର୍ଥଯାତ୍ରା ପାଇଁ ଉଦ୍ଦିଷ୍ଟ ପୁରୀ-ନୂଆଦିଲ୍ଲୀ ନୀଳାଚଳ ଏକ୍ସପ୍ରେସ୍‌ରେ ନିର୍ଦ୍ଧାରିତ ବଗିର ନିର୍ଦ୍ଦିଷ୍ଟ ଆସନରେ ବସି ନୀଳାଚଳ ନାଥ ଶ୍ରୀ ଜଗନ୍ନାଥଙ୍କର ଶୁଭ ଆଶୀର୍ବାଦ ପାଇଁ ଭକ୍ତିପୂତ ପ୍ରଣତି ଜଣାଇ ପୁରୀ ଷ୍ଟେସନ ଛାଡ଼ିଲୁ ଦିନ ୧୨ଘ ୩୫ମି. ସମୟରେ ଗାଡ଼ି ଭୁବନେଶ୍ୱରରେ ପହଞ୍ଚିବା ପରେ ତୀର୍ଥଯାତ୍ରା

ସମ୍ବନ୍ଧୀୟ ଯାବତୀୟ କାଗଜପତ୍ର ମୋ ଦିଅରଙ୍କଠାରୁ ସଂଗ୍ରହ କଲୁ ଓ ଜିନିଷ ବୋହିବା ଭୟରେ କିଛି ଲୁଗାପଟା ତାଙ୍କ ହାତରେ ତାଙ୍କ ଘରକୁ ପଠାଇଦେଲୁ । ଗାଡ଼ିରPantry ରୁ (ରୋଷେଇ ଯାନ) ମଧ୍ୟାହ୍ନ ଭୋଜନ ଗ୍ରହଣ କରି ତୀର୍ଥଯାତ୍ରୀଙ୍କ ସହ ମିଳାମିଶା କରି ଠିକଣା ବୁଝିବାରେ ଲାଗିଲୁ । ନିମିଷକ ମଧ୍ୟରେ ସଂଧ୍ୟା ଯାଇ ରାତ୍ରି ଆସିଲା ପରି ଲାଗିଲା, ଇସ୍କନ ତରଫରୁ ରୁଟି, ପନୀର ଛୋଲା ଓ ଆଚାର ପ୍ରସାଦ ରୂପେ ପାଇ ସୁଖ ନିଦ୍ରାରେ ହଜିଗଲୁ, ପ୍ରକାଶ ଥାଉ କି ଆମର ତୀର୍ଥ ଯାତ୍ରୀ ସଂଖ୍ୟା ମୋଟ ୨୪୭, (ବ୍ରହ୍ମପୁର ଓ ଏହାର ଆଖପାଖର ଅଞ୍ଚଳର ପ୍ରାୟ ୧୨୦ ଜଣ ଯାତ୍ରୀ ସେ ଭିତରୁ) ଓ ବାବା ଏବଂ କର୍ମଚାରୀ ୪୦, ଏପରି ଭାବେ ମୋଟ ୨୮୭ ଜଣ ।

***ତା. ୧୬.୦୯.୨୦୧୦, ଗୁରୁବାର***

ଭାରତୀୟ ରେଳ ପରିବହନର ଅନିୟମିତାର ଫଳ ସ୍ୱରୁପ ନିର୍ଦ୍ଧାରିତ ସମୟ ୭ଘ. ୩୦ମି. ପରିବର୍ତ୍ତେ ଦିନ ୧୦ଘ. ୩୦ମି. ସମୟରେ ଆମେ ଆଲାହାବାଦରେ ପହଞ୍ଚିଲୁ । ତୀର୍ଥଯାତ୍ରୀମାନଙ୍କ ମଧ୍ୟରୁ ଆମ କ୍ରମିକ ନମ୍ବର ଥିଲା ଯଥାକ୍ରମେ ୨୦୬ ଓ ୨୦୭ ଓ ଆମ ପାଇଁ ନିର୍ଦ୍ଧାରିତ ବସ୍‌ର ନାଁ ଥିଲା 'କୃଷ୍ଣ ବଳରାମ' । ଇସ୍କନ ଯାତ୍ରୀ ହିସାବରେ ନାମ ରଖାଯାଇଥିଲା ନନ୍ଦକିଶୋର ଦାସ ଓ ତୁଳସୀ ଦାସ । ଆମକୁ ଏକ ବ୍ୟାଜ (Badge) ଦିଆଯାଇଥିଲା । ସେହି ବ୍ୟାଜ ଧାରଣ କରି ଆମେ ନିଜକୁ ଭାଗ୍ୟବାନ ମନେ କରୁଥିଲୁ ଓ ବସ୍‌ଷ୍ଟାଣ୍ଡରେ କିମ୍ୱା ରେଳଷ୍ଟେସନରେ କିମ୍ୱା ମନ୍ଦିର ବା ଆଶ୍ରମ ନିକଟରେ ଦଳ ଦଳ ହୋଇ ଯାତ୍ରା କରୁଥିବା ଯାତ୍ରୀମାନଙ୍କୁ ଦେଖିଲେ ସେମାନଙ୍କର ବ୍ୟାଜ୍ ଅନ୍ୱେଷଣ କରୁଥିଲୁ ସେମାନେ କେଉଁ ସଂସ୍ଥାର ବୋଲି ଜାଣିବା ପାଇଁ । ଏହିଭଳି କୁରୁକ୍ଷେତ୍ର ଷ୍ଟେସନରେ ଦଳେ ଦକ୍ଷିଣ ଭାରତୀୟ ତୀର୍ଥଯାତ୍ରୀ ଦଳ ଓ ବଦ୍ରି ବିଶାଳଙ୍କ ନିକଟରେ ଅନ୍ୟ ଏକ ତୀର୍ଥଯାତ୍ରୀ ଦଳଙ୍କ ସହ ପରିଚୟ ହୋଇଥିଲା । ଆହ୍ଲାବାଦ ଷ୍ଟେସନରୁ 'କୃଷ୍ଣ ବଳରାମ' ବସ୍ ଯୋଗେ ଭାରତ ସେବାଶ୍ରମ ସଂଘ ଧର୍ମଶାଳାରେ ପହଞ୍ଚିଲୁ । ସେଠାରେ ଦୁଇଟି ପରିବାର ପାଇଁ ଗୋଟିଏ ବଖରାର ବ୍ୟବସ୍ଥା ହୋଇଥିଲା । ସେଦିନ ଆମ ସାଥୀ ଥିଲେ ବ୍ରହ୍ମପୁର ବିଜିପୁରର ଜଣେ ଅବସର ପ୍ରାପ୍ତ ଶିକ୍ଷକ ଶ୍ରୀଯୁକ୍ତ ବେହେରା ଓ ତାଙ୍କ ସହଧର୍ମଣୀ ଶ୍ରୀମତୀ ବାସନ୍ତୀ ବେହେରା । ଅଧ ଘଣ୍ଟାଏ ଭିତରେ ନିତ୍ୟକର୍ମ ସାରି ଅସ୍ଥି ବିସର୍ଜନ ଓ ପିଣ୍ଡଦାନ ପାଇଁ ତୀର୍ଥରାଜ ପ୍ରୟାଗ ଅଭିମୁଖେ ଯାତ୍ରା କଲୁ । ଇସ୍କନ ବାବାଙ୍କ ସୁଦୟାରୁ ତ୍ରିବେଣୀ ସଂଗମରେ ସୂଚାରୁ ଓ ସନ୍ତୋଷଜନକ ଭାବେ ଅସ୍ଥି ବିସର୍ଜନ, ଶ୍ରାଦ୍ଧକର୍ମ ଓ ତ୍ରିବେଣୀ ସ୍ନାନ ଶେଷ କରି ଦିନ ୪ଘଣ୍ଟା ସମୟରେ ପ୍ରସାଦ ସେବନ ପାଇଁ ସ୍ୱାମୀ ନାରାୟଣ

ମନ୍ଦିରରେ ପହଞ୍ଚିଲୁ । ଆଳସ୍ୟ ଓ ଦେହର ଅବଶତାକୁ ଖାତିର ନ କରି ଦିନ ୫ଘ. ୩୦ମି. ସମୟରେ ନିର୍ଦ୍ଧାରିତ ବସ୍‌ରେ ଆନନ୍ଦ ଭବନ ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଭ୍ରମଣରେ ବାହାରିପଡ଼ିଲୁ । ଇନ୍ଦ୍ରଦେବଙ୍କ ପ୍ରବଳ ବର୍ଷା ଯୋଗୁଁ ଭ୍ରମଣ ଓ ଦର୍ଶନରୁ ବଞ୍ଚିତ ହୋଇ ଭାରତ ସେବାଶ୍ରମ ସଂଘରୁ ନିଜ ନିଜର ଜିନିଷପତ୍ର ଗାଡ଼ିରେ ଲଦି ସ୍ୱାମୀ ନାରାୟଣ ମନ୍ଦିରରେ ପହଞ୍ଚିଲୁ । ସେଠାରେ ଇସ୍କନ ପ୍ରଭୁଙ୍କଠାରୁ ପ୍ରୟାଗ ରାଜର ମାହାତ୍ମ୍ୟ ବିଷୟରେ ପ୍ରବଚନ ଶୁଣି ରାତ୍ରି ପ୍ରସାଦ ସେବନ କରି ରାତି ୯ଟାରେ ଷ୍ଟେସନ ଅଭିମୁଖେ ଯାତ୍ରା କଲୁ । ରାତି ୧୦ଘ. ୩୦ମି. ରେ ଆହ୍ଲାବାଦ - ମଥୁରା ଏକ୍ସପ୍ରେସ୍‌ରେ ଉଠିଲୁ ଓ ମଥୁରାରେ ପହଞ୍ଚିବା ସମୟ ଦିନ ୮ଘ. ୨୦ମି. ଥିବାରୁ ଆରାମଦାୟକ ନିଦ୍ରାରେ ହଜିଗଲୁ ।

### ତା. ୧୭.୦୯.୨୦୧୦, ଶୁକ୍ରବାର

ଦିନ ୯ଘଣ୍ଟା ସମୟରେ ମଥୁରା ଷ୍ଟେସନରୁ ନିର୍ଦ୍ଧାରିତ ବସ୍ ଯୋଗେ ବୃନ୍ଦାବନର ଚିତ୍ରକୂଟ ଆଶ୍ରମ ଅଭିମୁଖେ ଯାତ୍ରା କଲୁ । ଏଠାରେ ତୃତୀୟ ମହଲାରେ ଗୋଟିଏ ପରିବାର ପାଇଁ ଗୋଟିଏ ରୁମ୍‌ର ବ୍ୟବସ୍ଥା ହୋଇଥିଲା । ମଧ୍ୟାହ୍ନ ୧୨ଟାରେ ପ୍ରସାଦ ସେବନ କରି ବିଶ୍ରାମ ନେଲୁ । ଅପରାହ୍ନ ୪ଘଣ୍ଟା ସମୟରେ ଇସ୍କନ କୀର୍ତ୍ତନ ମଣ୍ଡଳୀ ସହ ବୃନ୍ଦାବନର ବିଭିନ୍ନ ମନ୍ଦିର ଦର୍ଶନରେ ବାହାରିଲୁ । ପ୍ରଥମେ ପହଞ୍ଚିଲୁ ସନାତନ ଗୋସ୍ୱାମୀଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀ ମଦନମୋହନ ମନ୍ଦିରରେ । ସେଠାରେ ମଦନମୋହନ ବିଗ୍ରହ ନାହାନ୍ତି । ଆଉରେଙ୍ଗଜେବ୍‌ଙ୍କ ଆକ୍ରମଣର ଆଶଙ୍କାରେ ସ୍ୱପ୍ନାଦେଶ ପାଇ ବିଗ୍ରହଙ୍କୁ ରାଜସ୍ଥାନ ସ୍ଥାନାନ୍ତର କରାଯାଇଥିଲା । ମନ୍ଦିର ଉଚ୍ଚ ପ୍ରାଙ୍ଗଣରୁ ଯମୁନାଜୀଙ୍କର ଅପରୂପ ଶୋଭା ଦର୍ଶନ କଲୁ । ଦ୍ୱିତୀୟରେ ମଦନମୋହନଙ୍କ ପ୍ରକଟ ସ୍ଥଳୀ ବଟ ବୃକ୍ଷ ପରିକ୍ରମା କଲୁ । ତୃତୀୟରେ ପହଞ୍ଚିଲୁ ଅଷ୍ଟସଖୀଙ୍କ ରାସ ମନ୍ଦିର । ଆଧୁନିକ ଶିଳ୍ପକଳାରେ ଧଳା ମାର୍ବଲ ପ୍ରସ୍ତରରେ ନିର୍ମିତ ମନ୍ଦିର । ସେଠାରେ ସଂଧ୍ୟା ଆଳତୀ ଦର୍ଶନ କଲୁ । ମନ୍ଦିର କାନ୍ଥରେ ଶ୍ରୀ ଗଣେଶ, ଲକ୍ଷ୍ମୀ, ସରସ୍ୱତୀ, ଶିବପାର୍ବତୀ, ବିଷ୍ଣୁ ପ୍ରଭୃତି ଦେବଦେବୀଙ୍କ ମୂର୍ତ୍ତି ସ୍ଥାପିତ ହୋଇଛି । ସେହି ମନ୍ଦିରର କାନ୍ଥରେ ଲେଖାଥିବା ଏକ ସୁନ୍ଦର କବିତାକୁ ଟିପି ଆଣିଛି । କବିତାଟି ଏପରି :-

ରୁଠେ ରବକା ମନାନା
ଆସାନ ହେ,
ରୁଠୀ ରାଧା କୋ ମନାନା
ମୁସ୍କିଲ ହେ ।

ରୁଠୀ ରାଧା ବୋଲୀ
ରାସ ବିହାରୀ,
ମେହେନ୍ଦୀ ମାଣ୍ଡୋ ମେରା ହାଥ
ମେହେନ୍ଦୀ ରଚା ହାଥ ହୈ
ତୋ ରାସ କରୁଁ ଯାରା ସାଥ ।।

*    *    *    *    *    *

ଅଷ୍ଟସଖୀ କୁଞ୍ଜ ମେଁ          ବୃନ୍ଦାବନ ଧାମ ମେଁ
ଥାମୋ ହାଥୋଁ ମେଁ ହାଥ
କାହ୍ନା ରାଧା କେ ସାଥ ।
ଛେଡ଼ି ମୁରଲୀ କା ଧୁନ୍
ବୋଲି ପାୟଲ ରୁନ୍ ଝୁନ୍,
ବାଜି ଚୁଡ଼ିୟାଁ ଖନ ଖନ
ହୋ ଗୟି ରାଧା ମଗନ ।। (ଶୀଲା)

ଚତୁର୍ଥରେ ପ୍ରବେଶ କଲୁ ବୃନ୍ଦାବନର ପ୍ରସିଦ୍ଧ ବାଙ୍କେ ବିହାରୀ ମନ୍ଦିରରେ । ପୂର୍ବରୁ ଶୁଣିଥିଲୁ, ପଢ଼ିଥିଲୁ ବାଙ୍କେ ବିହାରୀଙ୍କ ଅପୂର୍ବ ରୂପ ଲାବଣ୍ୟ ସମ୍ବନ୍ଧରେ, ସାମନା ସାମନି ରୂପ ମାଧୁରୀକୁ ଦେଖି ଅବାକ୍ ହୋଇଗଲୁ । ସ୍ନାତକୋତ୍ତର ଶ୍ରେଣୀରେ ପଢ଼ାଯାଇଥିବା ମୈଥିଳୀ କବି ବିଦ୍ୟାପତିଙ୍କ

"ଜନମ ଅବଧି ହମ ରୂପ ନିହାରଲ ନୟନ ନ
ତିରପତି ଭେଲ", ଉକ୍ତିକୁ ଅନୁଭବ କଲୁ ।

ବୋଧହୁଏ ଚାହିଁ ଚାହିଁ ଯୁଗ ସରିଗଲେ ମଧ୍ୟ ମନ, ନୟନ ତୃପ୍ତି ଲାଭ କରିପାରିବ ନାହିଁ । ସେଠାକାର ଦର୍ଶନର ବିଚିତ୍ର ବ୍ୟବସ୍ଥା, କିଛି କ୍ଷଣ ଦର୍ଶନ ପରେ ପରଦା ପତନ, ପରେ ପରଦା ଉନ୍ମୋଚନ । ପରଦାର ଫାଙ୍କ ଭିତରେ ଅପଲକ ନେତ୍ରରେ ଚାହିଁ ରହିଲେ ଯାହା ମୋହନ ମୂର୍ତ୍ତି ଦେଖି ହେବ । କବି ବନମାଳୀ ଏଇଥିପାଇଁ ଗାଇଥିଲେ :-.

ଶ୍ୟାମ ନାଗର ହେ
ଏ ବେଶ ହୋଇବ ନାହିଁ,
ଏ ବେଶ ହୋଇଲେ ପାଷାଣ ତରଳେ
ଯୁବତୀ ବଞ୍ଚିବେ କାହିଁ ?

ସମୟର ସ୍ୱଳ୍ପତା ଦୃଷ୍ଟିରୁ କୀର୍ତ୍ତନ ମଣ୍ଡଳୀଙ୍କର ଆଦେଶରେ ବାଙ୍କେ ବିହାରୀଙ୍କୁ ବିଦାୟ ମାଗି ପଞ୍ଚମରେ ପହଞ୍ଚିଲୁ ଶ୍ରୀ ରାଧା ବଲ୍ଲଭ ମନ୍ଦିର । ମନ୍ଦିରର ଯୁଗଳ ମୂର୍ତ୍ତି ବେଶ୍ ମନଲୋଭା । ଷଷ୍ଠରେ ପହଞ୍ଚିଲୁ ସେବାକୁଞ୍ଜ, ସୁନ୍ଦର ସୁନ୍ଦର ବୃକ୍ଷରାଜିରେ ସୁଶୋଭିତ ସେବାକୁଞ୍ଜ ସମ୍ମୁଖ ଦ୍ୱାର ସୁଉଚ୍ଚ, ମନ୍ଦିର ଭିତର ପାର୍ଶ୍ୱଦେବା ଦେବୀ ବିମଣ୍ଡିତ । ସପ୍ତମରେ ପହଞ୍ଚିଲୁ ଶ୍ରୀ ରାଧା ଦାମୋଦର ମନ୍ଦିର । ସଂଧ୍ୟା ଆଳତୀ ସମୟ ହୋଇଥିବାରୁ ମନ୍ଦିରରେ ପ୍ରବଳ ଭିଡ଼ ଜମିଥାଏ । ପୁଷ୍ପ ଓ ପଟ୍ଟବସ୍ତ୍ର ମଣ୍ଡିତ ଯୁଗଳ ମୂର୍ତ୍ତି ଅତି ଚମତ୍କାର । ଅଷ୍ଟମରେ ପହଞ୍ଚିଲୁ ପରମ ସାଧିକା ମୀରାବାଈଙ୍କର ସମାଧିସ୍ଥଳ ତଥା ଶ୍ରୀରାଧା ଦାମୋଦରଙ୍କର ମୂଳପୀଠରେ । ସେଠାରେ ସର୍ପ ଗୋଟିଏ ଶାଳ ଗ୍ରାମରେ ପରିଣତ ହେବା କାହାଣୀ ପୂଜକଙ୍କ ଠାରୁ ଶୁଣିଲୁ । ମୀରାବାଈଙ୍କ ସୁଲଳିତ ଭକ୍ତି ସଂଗୀତ :-

''ଚାକର ରାଖୋଜୀ ମାଇନେ'' ସ୍ମରଣ କରି ମୀରାବାଈଙ୍କର ଚାକର ହେବା ପାଇଁ ପ୍ରାର୍ଥନା କଲୁ । ନବମରେ ପହଞ୍ଚିଲୁ ଶ୍ରୀ ବୃନ୍ଦାବନ ଧାମର ଶୋଭାବର୍ଦ୍ଧନ ନିଧିବନ ନିକଟରେ । କବି ଗୋପାଳ କୃଷ୍ଣଙ୍କ ସୁଲଳିତ ପଦାବଳୀର ସ୍ଥାନ ନିଧିବନ । କବିଙ୍କ ଭାଷାରେ ''ବ୍ରଜବନକୁ ମନ ଯା ଚାଲିରେ, ଜୟ ରାଧେକୃଷ୍ଣ ବୋଲି ରେ'' । ପଦକୁ ମନେ ମନେ ଗୁଣୁ ଗୁଣୁ ହୋଇ ପ୍ରାକୃତିକ ଶୋଭା ବିମଣ୍ଡିତ ଉଦ୍ୟାନ ପରିକ୍ରମା ସମୟରେ ଏକ ଅଭୁଲା ଘଟଣା ଘଟିଥିଲା । ସେଠାରେ ଗାଇଡ୍(Guide) ଆମକୁ ଚଷମା, କ୍ୟାମେରା ଓ ଭେନିଟ୍ ବ୍ୟାଗ୍ ଯତ୍ନରେ ମାଙ୍କଡ଼ମାନଙ୍କ ଦାଉରୁ ରକ୍ଷା କରିବା ପାଇଁ ସତର୍କ ସୂଚନା ଦେଉଥିଲେ, ତଥାପି ଆମେ କେତେ ଜଣ କପିରାଜଙ୍କ କୌତୁକର ଶିକାର ହୋଇଥିଲୁ । ମୋର ହାତ ବ୍ୟାଗ୍‌ଟିକୁ ଶ୍ରଦ୍ଧାରେ କପିରାଜ ନେଲା ବେଳେ ମୁଁ ତାଙ୍କ ହାତରୁ ଛଡ଼ାଇବାକୁ ଯାଇ ''ଜୟ ରାଧେ, ଜୟ ରାଧେ'' ଡ଼ାକ ଛାଡୁଥାଏ, କିନ୍ତୁ କପିରାଜ ନାରାଜ, ପରେ ଆମର ଛୋଟା ଗାଇଡ୍ (୭ ବର୍ଷର ପିଲା) ଓ ଆମ କ୍ୟାମେରା ମ୍ୟାନ୍ କୁନା ଉଭୟେ ଜୋର୍‌ରେ ''ଜୟ ଶ୍ରୀ ରାମ, ଜୟ ଶ୍ରୀ ରାମ''ପାଟି କରିବାରୁ ଅନିଚ୍ଛା ସତ୍ତ୍ୱେ ମୁହଁ ଶୁଖାଇ କପିରାଜ ବ୍ୟାଗଟି ଦେବା ପାଇଁ ବାଧ ହେଲେ । ପ୍ରଦ୍ୟୁମ୍ନଙ୍କ ନାତି ଅନିରୁଦ୍ଧଙ୍କ ପୁଅ ବଜ୍ରନାଭଙ୍କ ଦ୍ୱାରା ପୁନଃ ପ୍ରତିଷ୍ଠିତ ଏହି ମନୋମୁଗଧକର ନିଧିବନ । ଏଠାରେ ସଂଗୀତ ସମ୍ରାଟ ତାନ୍‌ସେନଙ୍କର ଗୁରୁ ହରିଦାସଙ୍କର ସମାଧି ରହିଛି । ରାଧା କୁଞ୍ଜ, ଲଳିତା କୁଞ୍ଜ, ଅଷ୍ଟସଖୀ କୁଞ୍ଜ, ଲଳିତା କୁଣ୍ଡ, ମହାଦେବ ମନ୍ଦିର, ଲକ୍ଷ୍ମୀଦେବୀ ମନ୍ଦିର, ବହୁ ପୌରାଣିକ ଉପାଖ୍ୟାନ ଜଡ଼ିତ ବିଭିନ୍ନ ପବିତ୍ର ସ୍ଥାନ ନିଧିବନର ମୁଖ୍ୟ ଆକର୍ଷଣ । ବାଙ୍କେ ବିହାରୀଙ୍କ ପ୍ରକଟସ୍ଥଳୀ ମଧ୍ୟ ଏଠାରେ ଅବସ୍ଥିତ । ଦଶମରେ ପହଞ୍ଚିଲୁ ଶ୍ରୀ ରାଧାରମଣ ମନ୍ଦିରରେ । ରାତ୍ରି

ବଢ଼ି ଯାଇଥିବାରୁ ଆଉ ଅନ୍ୟାନ୍ୟ ମନ୍ଦିର ଉଦ୍ଦେଶ୍ୟରେ ନ ବାହାରି ଚିତ୍ରକୂଟ ଆଶ୍ରମ ଅଭିମୁଖେ ଯାତ୍ରା କଲୁ । ଚା' ପାନ ଓ ନିତ୍ୟକର୍ମ ସମାପନ ପରେ ଉପସ୍ଥିତ ହେଲୁ ଆଶ୍ରମ ବାରଣ୍ଡାରେ ପ୍ରବଚନ କାର୍ଯ୍ୟକ୍ରମରେ । ସେଠାରେ ଇସ୍କନ ପ୍ରଭୁଙ୍କଠାରୁ "ଶ୍ରୀ ବୃନ୍ଦାବନ ଧାମ" ମାହାତ୍ମ୍ୟ ଶ୍ରବଣ କରି ରାତ୍ରି ପ୍ରସାଦ ସେବନ କଲୁ । ସେଠାରେ ଆମ ପାଇଁ ତୃତୀୟ ମହଲାରେ ଏକକ (Single) ବଖରା ର ବ୍ୟବସ୍ଥା ହୋଇଥିଲା । ଯମୁନାଜୀଙ୍କର ସୁମଧୁର ଜଳର ଲୋଭ ସମ୍ଭାଳି ନପାରି ମାତ୍ର ଦୁଇଦିନର ମଇଳା ଲୁଗା ସଫା କରିବା ପରେ ବିଶ୍ରାମ ନେଲୁ ।

### ତା. ୧୮.୦୯.୨୦୧୦ ଶନିବାର

ଭୋର୍ ୪ଟା ସୁଦ୍ଧା ନିତ୍ୟକର୍ମ ସମାପନ କରି ନିକଟସ୍ଥ ଇସ୍କନ ମନ୍ଦିରରେ ମଙ୍ଗଳ ଆରତୀ ଦର୍ଶନ କରି ୫ଘ. ୩୦ମି.ରେ ଚିତ୍ରକୂଟ ଆଶ୍ରମରୁ ନିର୍ଦ୍ଧାରିତ ବସ୍ ଯୋଗେ ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ ତାଜମହଲ ଦର୍ଶନ ଅଭିମୁଖେ ଯାତ୍ରାକଲୁ । ଇସ୍କନ ସୂଚନା ଅନୁଯାୟୀ ବସ୍ ପାର୍କିଙ୍ଗ୍ ଠାରୁ ତାଜମହଲ ପର୍ଯ୍ୟନ୍ତ ନିଜ ବ୍ୟବସ୍ଥାରେ (ଟାଙ୍ଗା ସାହାଯ୍ୟରେ) ତାଜମହଲ ନିକଟରେ ଉପସ୍ଥିତ ହେଲୁ । ଖାଦ୍ୟ ପଦାର୍ଥ, ଟର୍ଚ୍ଚଲାଇଟ୍ ଭଳି କେତୋଟି ନିଷିଦ୍ଧ ଜିନିଷ ପ୍ରତ୍ୟେକ ଯାତ୍ରୀଙ୍କୁ ହଇରାଣରେ ପକାଇଥିଲା । ସେହି ଜିନିଷ ଗୁଡ଼ିକୁ ଲଗ୍ ରୁମରେ ଜମା ଦେଇ ରସିଦ ନେଇ ମାତ୍ର ୨ଘଣ୍ଟା ଅବଧିରେ କାରୁକାର୍ଯ୍ୟ ବିମଣ୍ଡିତ ଯମୁନା କୂଳର ତାଜମହଲର ସୌନ୍ଦର୍ଯ୍ୟ ଉପଭୋଗ କରିବା କଷ୍ଟକର ଥିଲା । ଇସ୍କନ ନିର୍ଦ୍ଦେଶାନୁସାରେ ଅନିଚ୍ଛା ସତ୍ତ୍ୱେ ସମସ୍ତ ଯାତ୍ରୀ ବସ୍ ପାର୍କିଙ୍ଗ୍ ଠାରେ ନିର୍ଦ୍ଧାରିତ ସମୟରେ ପହଞ୍ଚିଥିଲେ । କିନ୍ତୁ ଏଠାରେ ଏକ ଚମତ୍କାର ଘଟଣା ଘଟିଥିଲା । ନିର୍ଦ୍ଧାରିତ ୬ଟି ବସ୍ ମଧ୍ୟରୁ ଗୋଟିଏ ବସ୍‌ର ଚକା ଫାଟିଯିବାରୁ ସବୁ ବସ୍ ଯାତ୍ରୀ ସେଠାରେ ରହିବା ପାଇଁ ବାଧ ହେଲେ । ଏହି ସୁଯୋଗ ନେଇ ବୁଲା ବିକାଳିଙ୍କର ବସ୍ ନିକଟରେ ଭଲ ବ୍ୟବସାୟ ଆରମ୍ଭ ହୋଇଯାଇଥିଲା । ଗୋଟିଏ ପଟେ ସୁନ୍ଦର ଓ ସୁଲଭ ଦରର ଆକର୍ଷଣୀୟ ଉପହାର ସାମଗ୍ରୀ, ଅନ୍ୟପଟେ ଗେଷ୍ଟ ହାଉସ୍ ବା ଧର୍ମଶାଳାର ଉପର ମହଲାଠାରୁ ଆରମ୍ଭ କରି ବସ୍ ଓ ରେଳଠାରୁ ଓହ୍ଲାଇବା ଓ ଚଢ଼ାଇବା କଷ୍ଟ ପ୍ରତ୍ୟେକ ତୀର୍ଥଯାତ୍ରୀଙ୍କୁ ଦ୍ୱନ୍ଦ୍ୱରେ ପକାଇଦେଉଥିଲା । ତଥାପି ବୋହିପାରିବା ଶକ୍ତି ଅନୁଯାୟୀ ଯାତ୍ରୀମାନଙ୍କର କିଣା କିଣି ସେଠାରେ ବେଶ୍ ସୁନ୍ଦର ପରିବେଶ ସୃଷ୍ଟି କରିଥିଲା ।

ଦିନ ୧୧ଘ. ୩୦ମି. ସମୟରେ ଆଗ୍ରାରୁ ପ୍ରତ୍ୟାବର୍ତ୍ତନ କରି ଜନମନ ହରଣକାରୀ ରମଣରେତି ଅଭିମୁଖେ ଯାତ୍ରା କଲୁ । ସେ ଦିନ ରମଣରେତିରେ ପ୍ରସାଦ

ସେବନର ବନ୍ଦୋବସ୍ତ ହୋଇଥାଏ । ଯମୁନା ତଟ ନିକଟ ବଂଶୀବଟ ମୂଳେ ଗାଇଡ଼ଙ୍କ ଠାରୁ ରମଣରେତି ମାହାତ୍ମ୍ୟ ଶ୍ରବଣ, ବାଲିରେ ଗାର ଓ ଘର କରି ଏକ ପ୍ରକାର ସଂକଳ୍ପ କାର୍ଯ୍ୟକ୍ରମ ଓ ନାମ କୀର୍ତ୍ତନ ପରେ ନିଃସଙ୍କୋଚରେ ଯମୁନା ଧୂଳିରେ ଲୋଟି ପଡ଼ିଲୁ । ରମଣରେତିରେ ସ୍ୱଳ୍ପ ରହଣି ସମୟ ମଧ୍ୟରେ ଦୁଇଟି ହୃଦୟ ସ୍ପର୍ଶୀ ଘଟଣା ଘଟିଥିଲା । ପ୍ରଥମଟି ହେଲା:- କଥା କୀର୍ତ୍ତନ ପରେ ଇସ୍କନ ପ୍ରଭୁ ଜଣେ ଯମୁନା ଧୂଳିକୁ ତଳ ଉପର କରି କିଛି ଖୋଜୁଥିବାର ଲକ୍ଷ୍ୟ କଲି । ସାହାସର ସହିତ ବାବାଙ୍କୁ ପଚାରିଲି, ‘‘ପ୍ରଭୁ ! ଆପଣ କ’ଣ ଖୋଜୁଛନ୍ତି’’? ପ୍ରଭୁ ଜଣକ ସହାସ୍ୟ ବଦନରେ ଉତ୍ତର ଦେଲେ - ‘ମୋତି ଖୋଜୁଛି’, ମୁଁ ସନ୍ଦିହାନ ହୋଇ ପଚାରିଲି, ‘‘ବାବା ! ପାଞ୍ଚହଜାର ବର୍ଷ ତଳେ କାହ୍ନା ଏଠାରେ ଗାଈ ଚରାଉଥିଲେ, ସେହି ଦିନଠାରୁ ଆମ ଭଳି କେତେ ଯାତ୍ରୀ ଆସି ଖୋଜାଖୋଜି କରି ନେଇ ଯାଇଥିବେ, ଆଉ କ’ଣ ଆମ ପାଇଁ ଥିବ ?’’ ପ୍ରଭୁ ମୋର ସନ୍ଦେହ ଦୂର କରିବାକୁ ଯାଇ କହିଲେ - ‘‘ଖୋଜ, ଖୋଜ ମା’, ଖୋଜିଲେ ନିଶ୍ଚୟ ପାଇବ’’ - ଏହି ଦୁଇପଦରେ ଅଟଳ ବିଶ୍ୱାସ ରଖି ମୁଁ ମଧ୍ୟ ଖୋଜିବାରେ ଲାଗିଲି । ୨ମିନିଟ ଗଲା, ୩ ମିନିଟ୍ ଗଲା, ଖୋଳି ଖୋଳି ଛୋଟ ଚୁଆ ଭଳି ଗାତ କରି ସାରିଲିଣି, ପ୍ରସାଦ ସେବନ ପାଇଁ ଡ଼ାକରା ଆସିଲାଣି, କାହିଁ ମୋତିର ତ ଦେଖା ନାହିଁ । ମନେ ମନେ ଭାବିଲି, ଭାଗ୍ୟରେ ଥିଲେ ସିନା ମିଳନ୍ତା, ମୁଁ କେଉଁ ଭକ୍ତରେ ଲେଖା ଯେ ମୋତେ ମିଳିବ । ହଉ ଉଠୁଛି । ଉଠିଲେ ମଧ୍ୟ ମୋତିର ମୋହ ମନରୁ ତୁଟି ନଥାଏ । ପୁଣି ବସିଲି ଅନ୍ୟ ଏକ ଜାଗାରେ ଖୋଜି ପାଇବା ଆଶା ନେଇ । ଅଧିକାଂଶ ଲୋକ ଚାଲିଗଲେଣି ପ୍ରସାଦ ସେବନ ପାଇଁ । ମୋ ଭଳି ଆଉ ଜଣେ ଦୁଇ ଜଣ ମହିଳା ଖୋଜୁଥାନ୍ତି । ହଠାତ୍ ଧଳା ମାଳିଟିଏ ଧୂଳି ଭିତରୁ ଦେଖାଦେଲା । କହିବା ବାହୁଲ୍ୟ ଯେ ସେହି ମାଳିଟି ସାଧାରଣ ମାଳିଟିଏ, ମୋତି ହୋଇ ନ ପାରେ । ତଥାପି ଖୋଜି କରି ପାଇଛି ତ ! ‘ବିଶ୍ୱାସେ ମିଳଇ ହରି’ ନ୍ୟାୟରେ ତାକୁ ସାଇତି ରଖିଲି । ଦ୍ୱିତୀୟ ଘଟଣାଟି ଏହିପରି - ସେ ଦିନର ଅତି ସୁସ୍ୱାଦୁ ପ୍ରସାଦ ସହ ବୃନ୍ଦାବନର ପ୍ରସିଦ୍ଧ ଦହି ପ୍ରସାଦ ରୂପେ ପାଇ ପାଦୁକା ରଖିବା ସ୍ଥାନକୁ ଆସି ଦେଖିଲା ବେଳକୁ ପାଦୁକା ରଖିବା ଜାଗାରେ ମୋ ସ୍ୱାମୀଙ୍କର ମୂଲ୍ୟବାନ ଜୋତା ହଳକ ଥୁଆ ହୋଇଛି ଅଥଚ ମୋର ସାଧାରଣ ଜୋତା ହଳକ ନାହିଁ । ବହୁତ ଖୋଜା ଖୋଜି କରି ନିରାଶହୋଇ ଖାଲି ପାଦରେ ବସ୍ ନିକଟକୁ ଗଲି । ରମଣରେତିରେ ଏକ ଆକର୍ଷଣୀୟ ମୃଗ ବିହାର ରହିଛି । ସେହି ସମୟରେ ଯମୁନା ନଦୀର ପ୍ରବଳ ବନ୍ୟା ଯୋଗୁଁ ମୃଗମାନେ ପାଣି ଘେରରେ ରହିଥିବା ଦୃଶ୍ୟକୁ କ୍ୟାମେରା ରିଲ୍‌ରେ ବାନ୍ଧି ଆଣିଲୁ । ବସ୍ ଚାଲିଲା ଚଉରାଅଶୀ ଖନ୍ଦ

ଉଦ୍ଦେଶ୍ୟରେ । ଉତ୍ତର ପ୍ରଦେଶ ସରକାରଙ୍କର ଚରମ ଅବହେଳାର ନିଦର୍ଶନର ପ୍ରମାଣ ବହନ କରିଛି ଏହି ପୌରାଣିକ ଓ ଐତିହାସିକ କୀର୍ତ୍ତି ସମୂହ । କେତୋଟି ପାହାଚ ଅତିକ୍ରମ କଲାପରେ ଚଉରାଅଶୀ ଖମ୍ବ ମନ୍ଦିର ନିକଟରେ ପହଞ୍ଚି ହୁଏ ।

ଚଉରାଅଶୀ ଖମ୍ବର ନାମ ଉପରେ ସନ୍ଦେହ କରି ଆମ ସହଯାତ୍ରୀ ପ୍ରିନ୍ସପାଲ ନାୟକ ବାବୁ ଗଣିବା ଆରମ୍ଭ କଲେ । ୫୭ଟି ଖମ୍ବ ଗଣିଲେ, ବାକି କେଉଁଠି ରହିଯାଇଥିବ ବୋଲି କହିଲେ । ତା'ପରେ କିଛି ବାଟ ବସ୍‌ରେ ଯାଇ ପହଞ୍ଚିଲୁ ବ୍ରହ୍ମାଣ୍ଡ ଘାଟରେ । ବସୁଦେବ କୃଷ୍ଣଙ୍କୁ ମଥୁରାରୁ ଗୋପକୁ ଆଣିବା ଘାଟ ଏଠାରେ ଅବସ୍ଥିତ । ପୁଣି ମା' ଯଶୋଦାଙ୍କୁ ପାଟି ଭିତରେ ବ୍ରହ୍ମାଣ୍ଡ ଦେଖାଇବା ସ୍ଥାନ ଏଠାରେ ରହିଛି । ମୁଣ୍ଡରେ ପାଣି ଛିଞ୍ଚି, ବଟ ବୃକ୍ଷ ସନ୍ନିକଟ ମଣ୍ଡପ ଉପରୁ ଯମୁନାଜୀଙ୍କର ଅପରୂପ ସୌନ୍ଦର୍ଯ୍ୟ ଉପଭୋଗ କଲା ପରେ ଚାଲିଲୁ ମଥୁରା କୃଷ୍ଣ ଜନ୍ମଭୂମି ଦର୍ଶନ ପାଇଁ । ମଥୁରା କୃଷ୍ଣ ଜନ୍ମଭୂମିରେ କୃଷ୍ଣଜନ୍ମ ବନ୍ଦୀଶାଳ ଦ୍ୱାର ପରେ ଦ୍ୱାର, ସଶକ୍ତି କବାଟ, କୋଠରୀ ପରେ କୋଠରୀ ପୌରାଣିକ ଉପାଖ୍ୟାନର ସତ୍ୟତା ମନରେ ଗଭୀର ବିଶ୍ୱାସ ସହ ନୂତନ ମାର୍ବଲ ପ୍ରସ୍ତରର ସୁରମ୍ୟ ମନ୍ଦିରର ଅପୂର୍ବ ସମନ୍ୱୟ ପରିବେଶକୁ କୋଳାହଳମୟ କରି ଦେଉଥିଲା । କୃଷ୍ଣ ଜନ୍ମଭୂମି ନିକଟରେ ମସ୍‌ଜିଦ୍‌ର ସୁଉଚ୍ଚ ତୋରଣ ମୁସଲମାନମାନଙ୍କର ହିନ୍ଦୁ ବିରୋଧୀ ନୀତିର ସ୍ମାରକୀ ରୂପେ ଦଣ୍ଡାୟମାନ । ସଂଧ୍ୟା ସାତଟା ସମୟରେ ବସ୍‌ରେ ବୃନ୍ଦାବନ ଚିତ୍ରକୂଟ ଆଶ୍ରମରେ ପହଞ୍ଚିଲୁ । ଜଣେ ଦୁଇଜଣ ଯାତ୍ରୀଙ୍କର ବାରଣ ସତ୍ତ୍ୱେ ଆଶ୍ରମରୁ ଅଟୋ ଯୋଗେ ଚପଲ କିଣିବା ପାଇଁ ଗଲୁ, କିନ୍ତୁ ନିକଟରେ ଥିବା ଚପଲ ଦୋକାନ ବନ୍ଦ ଓ ଆଗରେ ଥିବା ବଜାରରେ ପହଞ୍ଚିବା ପାଇଁ ପ୍ରବଳ ଟ୍ରାଫିକ୍ ଭିଡ଼ ଯୋଗୁଁ ନିରାଶରେ ଆଶ୍ରମ ଫେରିଲୁ । ପରେ ଯାତ୍ରୀମାନଙ୍କଠାରୁ ଶୁଣିବାକୁ ପାଇଲୁ - ଶନିବାରରେ ଜୋତା କିଏ ନେଲା - ରିଷ୍ଟ ଗଲା, ଆଉ କେହି କେହି କହିଲେ ରମଣରେତି, ଗୋକୁଳ ଧାମରେ ଖାଲି ପାଦରେ ଚାଲନ୍ତି, ସେଥିପାଇଁ ଆପଣଙ୍କର ଜୋତା କାହ୍ନା ଲୁଚେଇ ଦେଲେ । ପ୍ରକାଶ ଥାଉକି ହଜିବାର ଦୁଇଦିନ ପରେ ବ୍ରଜ ଛାଡ଼ିଲା ପରେ ହିଁ ଦୋକାନ ମିଳିଲା, ଚପଲ କିଣା  ହେଲା । ମୋ ଭଳି ଅକିଞ୍ଚନ ପକ୍ଷେ ଏହା ଭଗବାନଙ୍କର ପରୀକ୍ଷା ନା, କରୁଣା-ମୋ ବିଚାରର ବାହାରେ । ଲୀଳାମୟଙ୍କ ମାୟାଧରଙ୍କ ବିଚିତ୍ର ଲୀଳା ! ରାତ୍ରି ପ୍ରସାଦ ସେବନ ପରେ ସେଦିନ ବିଶ୍ରାମ ନେଲୁ ।

***ତା. ୧୯.୦୯.୨୦୧୦, ରବିବାର (ବଡ଼ ଏକାଦଶୀ)***

ସେଦିନ ପ୍ରାତଃ ୪ ଘଣ୍ଟା ସମୟରେ ନିକଟସ୍ଥ ଇସ୍କନ ମନ୍ଦିରରେ ମଙ୍ଗଳ

ଆଳତୀ ଦର୍ଶନ କଲୁ । ୪ଘ. ୩୦ମି. ସମୟରେ ଆମେ ଇସ୍କନ ମନ୍ଦିରରେ ଥିବା ସମୟରେ ଆରମ୍ଭ ହେଲା ଝିପିଝିପି ବର୍ଷା । ଯମୁନା ନଦୀର ପ୍ରବଳ ବନ୍ୟାରେ ଦିଲ୍ଲୀ ରାସ୍ତା ବୁଡ଼ି ଯାଇଥିବା ଖବର ଦୂରଦର୍ଶନରୁ ଦେଖିଲୁ । ସେମିତି ଝିପି ଝିପି ବର୍ଷାରେ ନନ୍ଦ ଗ୍ରାମ (ଉଦ୍ଧବ ସାକ୍ଷାତ ସ୍ଥାନ) ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ବେଳକୁ ବେଳ ବର୍ଷା ଅଧିକ ହେଉଥାଏ ବସ୍ ଚାଲୁଥାଏ ପାର୍ଶ୍ୱରେ ଥିବା କୌଣସି ଦର୍ଶନୀୟ ସ୍ଥାନରେ ନ ଅଟକି । ଏହିପରି ଭାବେ ବରସାନା, ରାଧାକୃଷ୍ଣ, ଶ୍ୟାମକୁଣ୍ଡ ଓ ଗିରି ଗୋବର୍ଦ୍ଧନ ଦର୍ଶନରୁ ବଞ୍ଚିତ ହୋଇ ମାର୍ବଲ ପ୍ରସ୍ତରରେ ତିଆରି ଗିରି ଗୋବର୍ଦ୍ଧନ ମନ୍ଦିର ଓ ସେହି ମନ୍ଦିର ବେଢ଼ାରେ ଥିବା ବିଭିନ୍ନ ଦେବ ଦେବୀଙ୍କୁ ଦର୍ଶନ କରି ଚପଲ କିଣି ଚିତ୍ରକୂଟ ଆଶ୍ରମରେ ସଂଧ୍ୟା ୫ ଘଣ୍ଟା ସମୟରେ ପହଞ୍ଚିଲୁ । ସଂଧ୍ୟା ୫ଘ. ୩୦ମି. ସମୟରେ ବଡ଼ ଏକାଦଶୀ ପାଇଁ ପ୍ରସ୍ତୁତ ହୋଇଥିବା ସ୍ୱାଦିଷ୍ଟ ପ୍ରସାଦ ସେବନ କଲୁ । ଆଶ୍ରମର ମନ୍ଦିରର ସଂଧ୍ୟା ଆଳତୀ ଦର୍ଶନ କରି ରାତ୍ରି ବିଶ୍ରାମ ନେଲୁ ।

### *ତା. ୨୦.୦୯.୨୦୧୦. ସୋମବାର*

ଶ୍ରୀ ବୃନ୍ଦାବନରୁ ବିଦାୟ ନେଇ ରାତି ଦୁଇଟାରେ ମଥୁରା ଷ୍ଟେସନ ଅଭିମୁଖେ ବାହାରିଲୁ । ପ୍ରାତଃ ୪ଘ. ୩୦ମି.ରେ ମେୱାର ଏକ୍ସପ୍ରେସ୍ ଆରୋହଣ କରି ସକାଳ ୭ଘ. ୩୦ମି.ରେ ଦିଲ୍ଲୀରେ ପହଞ୍ଚିଲୁ । ରେଳରୁ ଓହ୍ଲାଇବା ବେଳେ ମଧ୍ୟ ସାମାନ୍ୟ ବର୍ଷା ଲାଗି ରହିଥାଏ । ବର୍ଷା ଓ କୋହଲା ପାଗରେ ଦିନ ୧୦ଘଣ୍ଟା ସମୟରେ କୁତବ୍‌ମିନାର ପରିଦର୍ଶନ ପରେ ମଧ୍ୟାହ୍ନ ୧୨ଘଣ୍ଟା ସମୟରେ ଇସ୍କନ ମନ୍ଦିରରେ ମଧ୍ୟାହ୍ନ ପ୍ରସାଦ ସେବନ କଲୁ । ପ୍ରସାଦ ସେବନ ସମୟରେ ବାସୁମତୀ ଅନ୍ନ, ସ୍ୱାଦିଷ୍ଟ କ୍ଷୀରି ଓ ରୁଚିକର ବ୍ୟଞ୍ଜନ ବିଷୟରେ ଆଲୋଚନା ଚାଲିଲା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଆସିଥିବା ଯାତ୍ରୀମାନଙ୍କ ମଧ୍ୟରେ କିଛି ସମୟ ପାଇଁ । ପ୍ରସାଦ ସେବନ ପରେ ସେହି ମନ୍ଦିରରେ ସ୍ଥାନୀୟ ଭକ୍ତଙ୍କ ସହ ମିଶି କିଛି ସମୟ ନାମ କୀର୍ତ୍ତନ କଲୁ । ତା' ପରେ ସଂଧ୍ୟା ୪ଟାରେ ଇଣ୍ଡିଆ ଗେଟ୍ ଅତି ନିକଟରୁ ଦେଖିଲୁ । ରାଜ୍ୟ ଗୋଷ୍ଠୀ କ୍ରୀଡ଼ା- (Common Wealth Games) ପାଇଁ ଦିଲ୍ଲୀ ନଗରୀ ଚଳଚଞ୍ଚଳ ହୋଇଥାଏ । ବସ୍‌ରେ ଭ୍ରମଣ ସମୟରେ ସେହି ଦୃଶ୍ୟ ଉପଭୋଗ କଲୁ । ବସ୍‌ରେ ଥାଇ ରାଷ୍ଟ୍ରପତି ଭବନ, ପାର୍ଲାମେଣ୍ଟ ଭବନ ଦେଖିଲୁ, ରାଜଘାଟ ନିକଟରେ ବସ୍‌ରୁ ଓହ୍ଲାଇ ଜାତିର ଜନକ ପ୍ରିୟ ବାପୁଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କଲୁ । ସଂଧ୍ୟା ୭ଟାରେ ଦିଲ୍ଲୀ ଷ୍ଟେସନରେ ପହଞ୍ଚିଲୁ । ନିର୍ଦ୍ଧାରିତ ବସ୍ ଯୋଗେ କୁରୁକ୍ଷେତ୍ର ଷ୍ଟେସନରୁ ଜାଠ ଧର୍ମଶାଳାରେ ପହଞ୍ଚିଲୁ । ଜାଠ ଧର୍ମଶାଳାର ତୃତୀୟ ମହଲାରେ ଏକକ ପ୍ରକୋଷ୍ଠରେ (Single Room) ଆମେ ରହିବା ପାଇଁ ନିର୍ଦ୍ଦେଶ ମିଳିଲା ।

**ତା. ୨୧.୦୯.୨୦୧୦, ମଙ୍ଗଳବାର**

ସକାଳର ନିତ୍ୟକର୍ମ ସାରି ୬ଘଣ୍ଟା ୩୦ମିରେ ଜାଠ ଧର୍ମଶାଳାର ଦ୍ୱାରଦେଶର ଚା' ଦୋକାନରୁ ଚା' ଖାଇଲାବେଳକୁ ଚା' ଦୋକାନୀ ଠାରୁ ଜାଣିବାକୁ ପାଇଲୁ ସାମ୍ନାରେ ବ୍ରହ୍ମ ସରୋବର । ସକାଳ ୭ଘ. ୩୦ମିରେ ସେଠାରୁ ବାହାରି ଅନ୍ୟାନ୍ୟ ମନ୍ଦିର ଦର୍ଶନ ସ୍ଥିର ହୋଇଥିଲା । ତେଣୁ ଏଇ ଅଳ୍ପ ସମୟର ଅବଧି ଭିତରେ ବ୍ରହ୍ମ ସରୋବର ଦର୍ଶନରେ ବାହାରିଲୁ । ଆଖି ପାଉ ନଥିବା ସୁନିର୍ମିତ ବିରାଟ ସରୋବର । ତା' ମଧ୍ୟରେ ପଞ୍ଚୁପାଣ୍ଡବ, ଶ୍ରୀକୃଷ୍ଣ, କର୍ଣ୍ଣ, ଦ୍ରୋଣ, କୌରବଗଣଙ୍କର ନାମରେ ସ୍ୱତନ୍ତ୍ର ଘାଟର ସୁସଜ୍ଜା ସେଠାରେ ଦେଖିଲୁ । ମହିଳା ଓ ପୁରୁଷଙ୍କ ପାଇଁ ସ୍ୱତନ୍ତ୍ର ସ୍ନାନ ବ୍ୟବସ୍ଥା ଦେଖି ଆମେ ସ୍ନାନ ନ କରିପାରିବା ଯୋଗୁଁ ମନ ଦୁଃଖ କଲୁ । ମୁଣ୍ଡରେ ପାଣି ଛିଞ୍ଚି ସରୋବର ମଧ୍ୟରେ ଥିବା ପ୍ରାଚୀନ ଦକ୍ଷିଣମୁଖୀ ହନୁମାନ ମନ୍ଦିରରେ ଦର୍ଶନ ଓ ବେଢ଼ା ପରିକ୍ରମା ସାରି ନିର୍ଦ୍ଧାରିତ ବସ୍‌ରେ ଗାଇଡ଼୍‌ଙ୍କ ସହ କୁରୁକ୍ଷେତ୍ର ଦର୍ଶନରେ ବାହାରିଲୁ । ପ୍ରଥମେ ପହଞ୍ଚିଲୁ ଜ୍ୟୋତିସରରେ, ଜ୍ୟୋତିସର ମହିମା ଓ ଗୀତା ଉପଦେଶ ସ୍ଥଳ ବିଷୟ ଶ୍ରବଣ କଲୁ । କୁରୁକ୍ଷେତ୍ର ଯୁଦ୍ଧର ସାକ୍ଷୀ ସ୍ୱରୂପ ଦଣ୍ଡାୟମାନ ଅକ୍ଷୟ ବଟ କୀର୍ତ୍ତନ ମଣ୍ଡଳୀ ସହ ପରିକ୍ରମା କଲୁ । ଗାଇଡ଼ଙ୍କ ମୁହଁରୁ ଶୁଣିଲୁ - ଗଂଗା-ଜଳ, କାଶୀ-ସ୍ଥଳ ପବିତ୍ର କିନ୍ତୁ ଜଳ, ସ୍ଥଳ ଓ ଅନ୍ତରୀକ୍ଷ - କୁରୁକ୍ଷେତ୍ରର ସବୁ ପବିତ୍ର । ମତ୍ସ୍ୟ ପୁରାଣରେ ବର୍ଣ୍ଣିତ 'କୁରୁକ୍ଷେତ୍ରେ ଗୟା ଗଙ୍ଗା ପ୍ରଭାସେ ପୁଷ୍କରିଣୀ ଚ' ବିଷୟ ବର୍ଣ୍ଣନା କଲେ । ଅଦୃଶ୍ୟ ସରସ୍ୱତୀ ନଦୀଙ୍କ ମହିମା ବିଷୟ ବୁଝାଇବାକୁ ଯାଇ ଗାଇଡ଼୍ କହିଲେ ଋଗ୍ ବେଦରେ ଗଙ୍ଗା ନାମ ୩ ଥର, ଯମୁନା ନାମ ୧ ଥର ବ୍ୟବହାର ହୋଇଥିବା ସ୍ଥଳେ ସରସ୍ୱତୀ ନାମ ମୋଟ ୪୩ ଥର ବର୍ଣ୍ଣନା କରାଯାଇଛି । ଦ୍ୱିତୀୟରେ ପହଞ୍ଚିଲୁ ମାର୍ବଲ ନିର୍ମିତ ଭୀଷ୍ମଙ୍କ ଶରଶଯ୍ୟା, ବିଶ୍ୱରୂପ ଦର୍ଶନ ଓ ବାଣଗଙ୍ଗା ନିକଟରେ । ଗାଇଡ଼୍‌ଙ୍କ ଠାରୁ ପୌରାଣିକ ଉପାଖ୍ୟାନ ଶ୍ରବଣ କରି ବାଣ ଗଙ୍ଗାଜଳ ମଥାରେ ସିଞ୍ଚନ କରି ଥାନେଶ୍ୱର ମନ୍ଦିର ଦର୍ଶନରେ ବାହାରିଲୁ । ଥାନେଶ୍ୱର ମନ୍ଦିର ସ୍ଥାଣୁ ମନ୍ଦିର ନାମରେ ମଧ୍ୟ ପରିଚିତ । ସୃଷ୍ଟି ସର୍ଜନା ନିମନ୍ତେ ଏଠାରେ ବ୍ରହ୍ମା ଯଜ୍ଞ ଆରମ୍ଭ କରିଥିଲେ । ବାଟରେ ଅନ୍ୟାନ୍ୟ ମନ୍ଦିର, ବିଖ୍ୟାତ କୁରୁକ୍ଷେତ୍ର ବିଶ୍ୱବିଦ୍ୟାଳୟ, ପ୍ରସିଦ୍ଧ ଯୋଗ ବ୍ୟାୟାମ ସାଧନା କେନ୍ଦ୍ର ଇତ୍ୟାଦି ଦେଖିଲୁ । ମଧ୍ୟାହ୍ନରେ ଜୟରାମ ବିଦ୍ୟାପୀଠରେ ପ୍ରସାଦ ସେବନ କରି ଅପରାହ୍ନ ୩ ଟାରେ ପୁନର୍ବାର କୁରୁକ୍ଷେତ୍ର ଦର୍ଶନ ପାଇଁ ଯାତ୍ରାରମ୍ଭ କଲୁ । ପ୍ରଥମେ ରାସ୍ତାରେ ଆସିଲା କୁରୁକ୍ଷେତ୍ର ମ୍ୟୁଜିୟମ୍, ମହାଭାରତର କଥା ଓ କାହାଣୀ ଚିତ୍ର ସବୁ ସେଠାରେ ସୁସଜ୍ଜିତ, ଟିକଟ ସଂଗ୍ରହ କରି ଅନ୍ୟ ଯାତ୍ରୀମାନେ ଦର୍ଶନ ପାଇଁ ବାହାରି ପଡ଼ିଲେ । ଶରୀର ଅବସନ୍ନ ଯୋଗୁଁ ତୃତୀୟ

ମହଲା ପର୍ଯ୍ୟନ୍ତ ଯାଇପାରିବା ଅସମ୍ଭବ ଦୃଷ୍ଟିରୁ ଆମ ଭଳି କେତେଜଣ ଯାତ୍ରୀ ସେହି ସୁଯୋଗରୁ ବଞ୍ଚିତ ହୋଇ ସେମାନେ ଫେରିବା ପର୍ଯ୍ୟନ୍ତ ବାର୍ତ୍ତାଳାପରେ ମାତିଗଲୁ ଦିନ ୩ଘ. ୫୦ମି.ରେ ପହଞ୍ଚିଲୁ ଭଦ୍ରକାଳୀ ମନ୍ଦିରରେ । ଦକ୍ଷ ଯଜ୍ଞରେ ଆତ୍ମାହୁତି ଦେଇଥିବା ସତୀ ଦେବୀଙ୍କର ଡ଼ାହାଣ ଗୋଡ଼ ଏହି ପୀଠରେ ପତିତ ହୋଇଥିବା ବିଷୟ ଗାଇଡ଼ଙ୍କଠାରୁ ଜାଣିବାକୁ ପାଇଲୁ । ତା'ପରେ ପହଞ୍ଚିଲୁ ସୃଷ୍ଟିର ୧ମ ତୀର୍ଥ ସନ୍ନିହୀତ ତୀର୍ଥ । ସୁରଜ କୁଣ୍ଡ ପରିକ୍ରମା କଲୁ । ଗ୍ରହଣ ଓ ସୂର୍ଯ୍ୟୋପରାଗ ର ପବିତ୍ର ଅବସରରେ ସେହି ସ୍ଥାନର ମେଳା ବିଷୟରେ ଗାଇଡ୍ ବର୍ଣ୍ଣନା କଲେ । ସେଠାରେ ରହିଥିବା ଧ୍ରୁବ ମନ୍ଦିର ଓ ବିଷ୍ଣୁ ମନ୍ଦିର, ସୂର୍ଯ୍ୟ ମନ୍ଦିର ଇତ୍ୟାଦିରେ ସଂଧ୍ୟ ଆଳତୀ ଦର୍ଶନ କରି ଜୟରାମ ବିଦ୍ୟାପୀଠ ଅଭିମୁଖେ ଯାତ୍ରା କଲୁ । ସଂଧ୍ୟା ୭ଟାରେ କୀର୍ତ୍ତନ ମଣ୍ଡଳୀ ସହ ୫କି.ମି ପରିମିତ ବ୍ରହ୍ମ ସରୋବର ପରିକ୍ରମା କଲୁ । ମଧ୍ୟଭାଗରେ ଅବସ୍ଥିତ ବିଶାଳ କାଂସ୍ୟ ନିର୍ମିତ କପିଧ୍ୱଜ ରଥରେ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କୁ ଦର୍ଶନ କଲୁ । ରାତ୍ରି ଭୋଜନ ପରେ ବସ୍ ଯୋଗେ କୁରୁକ୍ଷେତ୍ର ଷ୍ଟେସନରେ ପହଞ୍ଚିଲୁ । କୁରୁକ୍ଷେତ୍ର ଷ୍ଟେସନରେ ଟ୍ରେନ୍‌ର ବ୍ୟବସ୍ଥା ହୋଇଥିଲା । ୦୬ ନଂ ବଗିରେ ଆମ ସିଟ୍ । ୦୫ ନଂ ବଗି ପରେ ୫ଟି A.C ବଗି ଥିଲା । ଷ୍ଟେସନରେ ବୈଷ୍ଣୋ ଦେବୀ ଦର୍ଶନ ପାଇଁ ଦକ୍ଷିଣ ଭାରତୀୟ ଯାତ୍ରୀଙ୍କର ଭିଡ଼ ମଧ୍ୟ ଥିଲା । ଆମ ବଗିର ଦ୍ୱାର ମୁହଁରେ ପିଲାଟିଏ ଗୋଡ଼ରେ ଧରି ଜଣେ ଭିକାରୀ ମହିଳା ରାସ୍ତା ଅବରୋଧ କରିଥିଲା । ଏକ ସମୟରେ ବହୁ ଯାତ୍ରୀ ସମାଗମ । ମୋ ଜିମାରେ ଥିବା ସୁଟ୍‌କେଶଟି (ପ୍ରବଳ ଗହଳି ଭିତରେ) ଉଠାଇ ଚଢ଼ିବାରେ ମୁଁ ଅସମର୍ଥ ହୋଇପଡ଼ିଥିଲି । ହଠାତ୍ ଆମ ପୂର୍ବ ପରିଚିତ ତୀର୍ଥଯାତ୍ରୀ ଶ୍ରୀ ଦୋରାବାବୁ ପହଞ୍ଚି ମୋତେ ଚଢ଼ିବାକୁ କହି ଅସମ୍ଭବ ଭିଡ଼ ଭିତରେ ମୋ ହାତକୁ ବଢ଼େଇ ଦେଲେ ସୁଟ୍‌କେଶଟି । ମୋର ସ୍ୱାମୀ ଅନ୍ୟାନ୍ୟ ଜିନିଷ ସହ ଅଣନିଃଶ୍ୱାସୀ ହୋଇ ଅନ୍ୟ ଏକ ବଗିରେ ଉଠିଥିଲେ । ଅଧ ଘଣ୍ଟାଏ ପରେ ଆମ ନିର୍ଦ୍ଧାରିତ ବଗିକୁ ଜିନିଷ ଧରି ଫେରିଲେ । ସଂପୂର୍ଣ୍ଣ ଅପରିଚିତ ଦକ୍ଷିଣ ଭାରତୀୟ ଯାତ୍ରୀ ଓ ପୋଲିସ୍ ଆମ୍ଭମାନଙ୍କୁ ଚଢ଼ିବାରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ରାତି ୧୧ଟା ୩୯ମି.ରେ ଝେଲମ୍ ଏକ୍ସପ୍ରେସ୍‌ରେ ଜାମ୍ମୁ ଅଭିମୁଖେ ଟ୍ରେନ୍ ଗଡ଼ିଚାଲିଲା ।

## *ତା ୨୨.୦୯.୨୦୧୦, ବୁଧବାର*

ସକାଳ ୯ ଘ. ୫୫ ମି.ରେ ଜମ୍ମୁତାବି ଷ୍ଟେସନରେ ପହଞ୍ଚିଲୁ । ଜାମ୍ମୁ ଷ୍ଟେସନରୁ 'କୃଷ୍ଣ ବଳରାମ' ବସ୍ ଯୋଗେ କଟରା ବସଷ୍ଟାଣ୍ଡସ୍ଥିତ ମାତା ବୈଷ୍ଣୋଦେବୀ ସାଇନ୍ ବୋର୍ଡ଼ର ତ୍ରିକୂଟ ଭବନ ଧର୍ମଶାଳାରେ ପହଞ୍ଚିଲୁ । ସେଠାରେ ଦଶଜଣଙ୍କ ପାଇଁ

ଗୋଟିଏ ବଡ଼ ପ୍ରକୋଷ୍ଠ Dormitory ବ୍ୟବସ୍ଥା । ଟ୍ରେନ୍‌ରେ ବସିଥିବା ସମୟରେ ଆମେ ୫ଟି ପରିବାର ପାଇଁ ଗୋଟିଏ ରୁମ୍ ନିର୍ଦ୍ଧାରଣ କରାଯାଇଥିଲା । ୨୨ ତାରିଖ ଓ ୨୩ ତାରିଖ ଦୁଇ ଦିନ ରହିବା ପାଇଁ ସ୍ଥିର ହୋଇଥିଲା । ସେଠାରେ ଆମ ବସା ସାଥୀ ହେଲେ ଶ୍ରୀମତୀ ଓ ଶ୍ରୀ ପଢ଼ିଆଳି, ଶ୍ରୀ ତ୍ରୈଲୋକନାଥ ସେନାପତି ଓ ଶ୍ରୀମତି ଶକୁନ୍ତଳା ସେନାପତି, ଶ୍ରୀମତି ଓ ଶ୍ରୀ ଦାଶ ଏବଂ ଦୁଇ ଜଣ ମହିଳା (ନଣନ୍ଦ ଓ ଭାଉଜ) । ନିଜ ନିଜର ଖଟ ବିଛଣା ସଜାଡ଼ି ସାରିଲା ପରେ ନିତ୍ୟକର୍ମ ସାରି (ଲୁଗା ଧୋଇବା ଓ ଶୁଖାଇବା ସେଠାରେ ନିଷେଧ) ଦିନ ୧ ଘଣ୍ଟା ସମୟରେ ପ୍ରସାଦ ସେବନ କରି ବିଶ୍ରାମ ନେଲୁ । ଦିନ ୨ଘଣ୍ଟାରୁ ୪ ଘଣ୍ଟା ପର୍ଯ୍ୟନ୍ତ ପ୍ରବଳ ବର୍ଷା ଲାଗି ରହିଲା । ମାତାଙ୍କ ଦର୍ଶନର ସୌଭାଗ୍ୟ (୨୦୦୪ ମସିହାରେ) ଲାଭ କରିଥିବାରୁ ବର୍ତ୍ତମାନ ଦର୍ଶନରେ ନ ଯିବା ପାଇଁ ଘରୁ ବାହାରିଲା ବେଳେ ହିଁ ଠିକ୍ କରିଥିଲୁ । ସଂଧ୍ୟା ଆଗତ ହେବାରୁ ଝରକା ଦେଇ ଦେଖାଯାଉଥିବା ମା'ଙ୍କ ରାସ୍ତାର ଆଲୁଅ ଦେଖି ଦୂରରେ ଥାଇ ହାତ ଟେକିଲୁ । ସଂଧ୍ୟା ୭ଟାରେ ଧର୍ମଶାଳାସ୍ଥ ଲକ୍ଷ୍ମୀନାରାୟଣ ମନ୍ଦିରର ଆଳତୀ ଦର୍ଶନ କରି ଧର୍ମଶାଳାସ୍ଥ ହୋଟେଲ୍‌ରେ ନିଜ ଖର୍ଚ୍ଚରେ ରାତ୍ରି ଭୋଜନ କଲୁ । (ଥାଳୀ ପ୍ରତି ଟ୪୦.୦୦, ଅତି ସୁସ୍ୱାଦୁ ଭୋଜନ) । ଆମ ରୁମ୍‌ର ସହ ଯାତ୍ରୀମାନେ ବୈଷ୍ଣୋଦେବୀ ଯିବା ପାଇଁ ପାଲିଙ୍କି, ଘୋଡ଼ା ଓ ଟିକଟ ଇତ୍ୟାଦି ବ୍ୟବସ୍ଥା କରିବା ପାଇଁ ଝିପିଝିପି ବର୍ଷାରେ ବାହାରି ପଡ଼ିଲେ । ଆମ ଭିତରୁ କେତେଜଣ ତୀର୍ଥଯାତ୍ରୀ ସେହି ସଂଧ୍ୟାରେ ଦର୍ଶନ ଉଦ୍ଦେଶ୍ୟରେ ବାହାରିଥିବାର ଶୁଣିବାକୁ ପାଇଲୁ । ଆମେ ଆମ ପୂର୍ବ ଅନୁଭୂତି ବର୍ଣ୍ଣନା କରି ଯାତ୍ରୀମାନଙ୍କ ମନରେ ସାହସ ସଞ୍ଚାର କରିବାରୁ ସମସ୍ତ ଯାତ୍ରୀ ବିଶେଷତଃ ଶ୍ରୀମତୀ ଓ ଶ୍ରୀ ସେନାପତି ଆମକୁ ସାଥିରେ ନେବା ପାଇଁ ଏକ ପ୍ରକାର ଦୃଢ଼ ସଂକଳ୍ପ କଲେ । ରାତିରେ ଶୋଇବାକୁ ଯିବା ପୂର୍ବରୁ (୯ଟା ସମୟରେ) ଆମେ ମଧ ଯିବା ପାଇଁ ଟିକିଏ ଟିକିଏ ମନ କଲୁ । ହାତରେ ସମସ୍ତଙ୍କର ମଲମ, ଘଷାମଜା ପରେ ଜାଣିବାକୁ ପାଇଲୁ ଆଣ୍ଠୁ, ଅଣ୍ଟା, ହାତ ବ୍ୟଥାରେ ସମସ୍ତେ ପୀଡ଼ିତ । ସମୁଦାୟ ୧୦ଜଣ ଯାତ୍ରୀଙ୍କ ମଧ୍ୟରୁ ୪ଜଣ ପାଲିଙ୍କିରେ ଜଣେ ଘୋଡ଼ାରେ ଆଉ ବାକି ୫ଜଣ ପାଦରେ ଚାଲିଯିବା ପାଇଁ ଯୋଜନା ପ୍ରସ୍ତୁତ ହେଲା । ରାତି ୧୦ଟା ସମୟରେ ଆମେ ମଧ ପାଦରେ ଚାଲିଯିବା ପାଇଁ ଅଣ୍ଟା ଭିଡ଼ିଲୁ । ପାହାଡ଼ ଚଢ଼ା ଯୋଜନା ପ୍ରସ୍ତୁତ ହୋଇସାରିବା ପରେ ହସଖୁସି, ମଜାମଉଜ, ଅନୁଭବ ଅନୁଭୂତି ବର୍ଣ୍ଣନା ଭିତରେ ମସଗୁଲ ହୋଇଗଲୁ କିଛି ସମୟ ପାଇଁ । ଆମ ତୀର୍ଥ ସାଥୀ ଦାସ ବାବୁଙ୍କ ମଜା ମଜା କଥା ଅବିସ୍ମରଣୀୟ । ସ୍ତ୍ରୀଙ୍କର ଦେହ ଖରାପ ପରେ ଲଘୁ ମନ୍ତବ୍ୟ ଦେଲେ -୨୨ଦିନ ପର୍ଯ୍ୟନ୍ତ ରୋଷେଇ ବାସ ବନ୍ଦ, ଥାଳି

ବଢ଼େଇ ଦେଲେ ଖାଇବାକୁ ମିଳିବ ବୋଲି ଚାଲି ଆସିଲ, ଏବେ ଫଳ ପା', ପ୍ରତ୍ୟେକ ଯାତ୍ରୀଙ୍କର ଅନୁଭୂତି ଓ ଥଟ୍ଟା ପରିହାସ ସମୟର ବ୍ୟବଧାନକୁ କମ୍ କରି ଦେଉଥିଲା । ଉତ୍ତର-ଭାରତ ତୀର୍ଥଯାତ୍ରାର ରହଣି ଭିତରେ ଦଶଜଣଙ୍କର ଏକାଠି ଅବସ୍ଥାନ କେବଳ ଏହି ସ୍ଥାନରେ ହିଁ ହୋଇଥିଲା । ରାତି ଦୁଇଟାରେ ଶଯ୍ୟାତ୍ୟାଗ କରିବା ପାଇଁ ଠିକ୍ କରି ମା'ଙ୍କ ରାସ୍ତା ବିଜୁଳିବତୀ ଆଲୋକକୁ ହାତ ଟେକି ''ଦେହି ସୌଭାଗ୍ୟ ମାରୋଗ୍ୟଂ, ଦେହି ମେ ପରମ ସୁଖଂ, ରୂପଂ ଦେହି ଜୟଂ ଦେହି । 'ଯଶୋ ଦେହି, ଦ୍ୱିଷୋ ଦେହି'' ଦୁର୍ଗାଙ୍କ ନାମ ଉଚ୍ଚାରଣ କରି ରାତ୍ରି ବିଶ୍ରାମ ନେଲୁ । ରାତି ଦୁଇଟାରେ ଉଠିବା ବିଷୟରେ ଏଠାରେ ପଦଟିଏ ସୂଚନା ଦେଲେ ଠିକ୍ ହେବ । ରାତିରେ କରିଥିବା ମାଗଣା ଦର୍ଶନ ଟିକଟର ଅବଧି ୬ଘଣ୍ଟା, ତେଣୁ ସକାଳ ୫ଘଣ୍ଟା ପୂର୍ବରୁ ମାତା ବୈଷ୍ଣୋଦେବୀ ପ୍ରବେଶ ଦ୍ୱାର ପାର ନ ହେଲେ ଟିକଟ ମୂଲ୍ୟହୀନ ହୋଇଯିବ ପୁଣି ସକାଳ ୮ଘଣ୍ଟାରେ କାଉଣ୍ଟର ଖୋଲିବ । ମୋବାଇଲ୍ ଫୋନ୍‌ରେ ଆଲରାମ ଦେଇ କଥାବାର୍ତ୍ତାରେ ପୂର୍ଣ୍ଣଚ୍ଛେଦ ପକାଇ ଶୋଇବାକୁ ଗଲୁ ।

### ତା. ୨୩.୦୯.୨୦୧୦, ଗୁରୁବାର

ରାତି ୩ଟାରେନିତ୍ୟକର୍ମ ସାରି ୧କିମି ଦୂରରେ ଅବସ୍ଥିତ ମା'ଙ୍କର ପ୍ରବେଶ ଦ୍ୱାର ନିକଟରେ ୪ଘ. ୩୦ମି.ରେ ପହଞ୍ଚିଲୁ । ଅଟୋରେ ବସିବା ସମୟରେ ପୁଷ୍ପ ବୃଷ୍ଟି ଭଳି ବୁନ୍ଦା ବୁନ୍ଦା ଜଳ ବୃଷ୍ଟି ଆକାରରେ ପଡୁଥିଲା । ଓହ୍ଲାଇବା ପରେ ପ୍ରବଳ ବର୍ଷା । ପୂର୍ବଦିନ ଟ. ୧୦.୦୦ ମୂଲ୍ୟ ବିନିମୟରେ ବର୍ଷାରୁ ରକ୍ଷା ପାଇବା ପାଇଁ ଜରି ଖୋଳ ଗୋଟିଏ ଗୋଟିଏ କିଣିଥିଲୁ । ତାକୁ ବାହାର କରି ପିନ୍ଧିଲୁ । ପ୍ରବଳ ବର୍ଷା ସତ୍ତ୍ୱେ ପାହାଡ଼ ଚଢ଼ା ଅଭିଯାନ ଆରମ୍ଭ କଲୁ । ମା'ଙ୍କ ଦର୍ଶନର ପ୍ରବଳ ଆକାଂକ୍ଷା, ଇନ୍ଦ୍ରଦେବଙ୍କ ପରୀକ୍ଷା, ସାହସ ଓ ହତାଶ ମନୋଭାବରେ ଦୋଳାୟିତ ହୋଇ କାଳେ ଯାଇ ନ ପାରିଲେ ବସାକୁ ଫେରିଯିବାକୁ ହେବ ସେହି ଉଦ୍ଦେଶ୍ୟରେ ଶ୍ରୀ ପଢ଼ିଆଳି ବାବୁଙ୍କ ଠାରୁ ରୁମ୍ ଚାବି ସଂଗ୍ରହ କଲୁ, କିନ୍ତୁ ସେନାପତି ଦମ୍ପତି ଆମ ମନରେ ସାହସ ବଢ଼ାଉଥିଲେ, ନ ଫେରିବା ପାଇଁ ଏକ ରକମ ବାଧ୍ୟକଲେ । ଦର୍ଶନ ସାରି ଫେରୁଥିବା ଦୁଇଜଣ ଯାତ୍ରୀ ମୋତେ ଓ ଶକୁନ୍ତଳା ଭଉଣୀଙ୍କୁ ଦୁଇଟି ବାଡ଼ି ଯାଚିକରି ଦେଇଥିଲେ । ପାଦରେ ତ୍ରିକୂଟ ପର୍ବତର ପଥର ଉପରୁ ଗଡ଼ି ଆସୁଥିବା ଥଣ୍ଡାପାଣି, ହାତରେ ବାଡ଼ି, ମନରେ ମା'ଙ୍କ ଦର୍ଶନ ଅଭିଳାଷ ଏକ ଅବର୍ଣ୍ଣନୀୟ ଅନୁଭୂତି ଥିଲା । ରାସ୍ତା ସାରା ଆମଠାରୁ ବୟସ୍କ, ପୃଥୁଳ ଶରୀରଧାରୀ ଏପରିକି ଅକର୍ମଣ୍ୟ ଯାତ୍ରୀଙ୍କ ପଦଯାତ୍ରା ଆମକୁ ଉତ୍ସାହିତ କରୁଥିଲା । ସର୍ବୋପରି ଶ୍ରୀ ସେନାପତି ବାବୁଙ୍କର ପ୍ରେରଣା

ଆମ ଦୁର୍ବଳ ଶରୀରର ସବଳ ମନରେ ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିବା ପାଇଁ ଆଶା ସଂଚାର କରିଥିଲା । ଉପରକୁ ଉପରକୁ ଉଠିଲାବେଳକୁ ଦେହ ଅବଶ ହୋଇପଡୁଥାଏ । ଶ୍ରୀ ସେନାପତି ବାବୁଙ୍କର ମଧ୍ୟ ନିକଟ ଅତୀତରେ ଅଣ୍ଟା ବ୍ୟଥା ଉତ୍କଟ ହୋଇଥିବା କଥା ସେ ପ୍ରକାଶ କରୁଥାନ୍ତି । ଅଭିମାନ କରି ମାଙ୍କ ଉଦ୍ଦେଶ୍ୟରେ କହୁଥାନ୍ତି - ''ମା ! ହେ ମା ! ତୁମେ କେତେ ଉଚ୍ଚରେ ରହିଛ ମା । ବାଇଶିଟା ପାହାଚ ଚଢ଼ି ଚଢ଼ି ଗଡ଼ି ଗଡ଼ି ଗଲେ ତ ଆମେ ଜଗନ୍ନାଥଙ୍କ ପାଖରେ ପହଞ୍ଚି ପାରୁଛୁ ହେଲେ ଏଇଠି ରାସ୍ତା ସରୁ ନାହିଁ । ବାଟ ସରି ଆସିଲାବେଳକୁ ସେ ମା'ଙ୍କ ଭବନର ପତାକାକୁ ଖୋଜୁଥାନ୍ତି । ମୁଁ ତାଙ୍କ ବ୍ୟସ୍ତତା ଦେଖି କହିଲି - ସେନାପତି ବାବୁ ! ଇଏ ଆମ ନୀଳଚକ୍ରର ପତିତପାବନ ବାନା ନୁହେଁ କୋଶେ ଦୂରରୁ ଫରଫର ହୋଇ ଉଡୁଥିବାର ଦେଖାଯିବ । ମା ପରା ତ୍ରିକୂଟ ପର୍ବତ, ଗୁମ୍ଫାରେ ଲୁକ୍କାୟିତ ଅବସ୍ଥାରେ ଭକ୍ତଙ୍କ ଦର୍ଶନ ପାଇଁ ଅବସ୍ଥାନ କରିଛନ୍ତି, ଆପଣ ଭବନ ସାମନାରେ ବି ପତାକାର ଦର୍ଶନ ପାଇ ପାରିବେନି'' । ବାଟରେ ରହି ରହି ଚା ପାନ କରି ୫ଘ. ୩୦ମି ରୁ ଆରମ୍ଭ ହୋଇଥିବା ଯାତ୍ରା ୧୧ଘ. ୩୦ମି.ରେ ଶେଷ ହେଲା । ପହଞ୍ଚିବାପରେ ଏକ ହତାଶମୟ ପରିସ୍ଥିତି ସୃଷ୍ଟି ହୋଇଥିଲା । ଆମ ୯ ଜଣଙ୍କ ଟିକଟ ଶ୍ରୀ ପଢ଼ିଆଳି ବାବୁଙ୍କ ପାଖରେ (ଗୋଟିଏ ଜଣକିଆ ଟିକଟ ଓ ନଅ ସମୂହ ଟିକଟ) ରହିଯାଇଥିଲା । ସେହି ବାବୁ ଜଣକ ଅଶ୍ୱାରୋହୀ, ଆମେ ୫ ଜଣ ପଦଚାରୀ, ତେଣୁ ପରସ୍ପର ସାକ୍ଷାତ ଅସମ୍ଭବ ହୋଇପଡ଼ିଲା । ପରେ ଦୋହରା ଟିକଟ (Duplicate) ସଂଗ୍ରହ କରି ଟିକଟ ଉପରେ ମୋହର ମାରି ଆଣିବା ପାଇଁ ଥରକୁ ଥର କାଉଣ୍ଟରକୁ ଯାଇ ସେନାପତି ବାବୁ ବେଶ୍ ହଇରାଣ ହୋଇପଡ଼ିଲେ । ପରିଶେଷରେ ବାଡ଼ି, ବ୍ୟାଗ୍ ଓ ଜୋତା ରଖି ଭୋଗ ସାମଗ୍ରୀ ନେଇ ଦର୍ଶନ ପାଇଁ ଗଲୁ । ୨୦୦୪ରେ ଯିବା ପାଇଁ ଯେଉଁ ରାସ୍ତାର ବ୍ୟବସ୍ଥା ଥିଲା, ତାହା ବର୍ତ୍ତମାନ ବନ୍ଦ କରି ଦିଆଯାଉଛି । ପ୍ରାକୃତିକ ଗୁମ୍ଫାର କାନ୍ଥ ଗୁଡ଼ିକୁ ମାର୍ବଲ ପ୍ରସ୍ତରରେ ଆବୃତକରାଯାଇଛି । ସେତେବେଳେ ବୋତଲ ଭରି କରି ଆଣିଥିବା ଗଂଗା ଜଳର ପ୍ରାକୃତିକ ଉତ୍ସ ଖୋଜାଖୋଜି କରି ପାଇ ପାରିଲୁ ନାହିଁ । ଶେଷରେ ଭାବି ନେଲୁ Shower ଭଳି ପଡୁଥିବ' ନାଡର ପାଣି ସବୁ ସେହି ପ୍ରାକୃତିକ ଝରଣାର ପୂର୍ବରୂପ ହୋଇଥିବ । କମ୍ ସମୟ ମଧ୍ୟରେ ମାଙ୍କ ଦର୍ଶନ ସାରି ଦାତବ୍ୟ ଚିକିତ୍ସାଳୟ ଅଭିମୁଖେ ଯାତ୍ରାକଲୁ । ଶ୍ରୀ ସେନାପତି ବାବୁଙ୍କର ଗୋଡ଼ର ଆଘାତ ଓ ମୋର ଆଣ୍ଠୁ ବ୍ୟଥା ପାଇଁ ଔଷଧ ନେଇ ଭୋଜନାଳୟରେ ପ୍ରବେଶ କଲୁ । ନିକଟରେ ବ୍ୟାଟେରୀ ଅଟୋର କାଉଣ୍ଟର ଥିଲା । ଦିନ ୨ଟାରେ କାଉଣ୍ଟର ଖୋଲିବା ପରେ ଟ. ୧୦୦.୦୦ ଦେଇ ଧାଡ଼ିରେ ଠିଆହୋଇ ଟିକଟ ସଂଗ୍ରହ

କଲୁ । ଅଟୋରେ ବସି ଅର୍ଦ୍ଧ କୁମାରୀ ପର୍ଯ୍ୟନ୍ତ ୭ କି.ମି ରାସ୍ତା ଆରାମରେ ପାରହେଲୁ । ତା'ପରେ ବାଡ଼ି ଧରି ଚାଲିବା ଆରମ୍ଭ କଲୁ । ସଂଧ୍ୟା ୫ଟାରେ ମା'ଙ୍କ ଚରଣପାଦୁକା ନିକଟରେ ପହଞ୍ଚି ପେ-ଫୋନରୁ ଘର/ପରିବାର ସହିତ ସମ୍ବନ୍ଧ ଯୋଡ଼ିଲୁ । ଜାମ୍ମୁରେ ପ୍ରି-ପେଡ୍ ମୋବାଇଲ ସେବା ନିଷିଦ୍ଧ ହୋଇଥିବା ଯୋଗୁଁ ବିଗତ ଦୁଇଦିନ ହେଲା ସଂପର୍କ ଏକ ପ୍ରକାରଛିନ୍ନ ହୋଇଥିଲା । ସମସ୍ତଙ୍କୁ ସୁବିଧାରେ ପହଞ୍ଚିବା ବିଷୟ ଫୋନ୍‌ରେ ଜଣାଇ ଅଟୋରେ ତ୍ରି-କୂଟ ଭବନକୁ ଯାତ୍ରାକଲୁ । ସଂଧ୍ୟା ୫ ଘ.୩୦ ମି.ରେ ବସାରେ ପହଞ୍ଚିଲା ବେଳକୁ ମା'ଙ୍କର ଅପାର କରୁଣାରୁ ଆମେ କିଛି ବ୍ୟଥା, କଷ୍ଟ ଅନୁଭବ କରୁନଥିଲୁ । ସଂଧ୍ୟାରେ ଚା' ପାନ ଉଦ୍ଦେଶ୍ୟରେ ବଜାରକୁ ବାହାରିଲୁ । ଆମର କ୍ୟାମେରା ଅକାମୀ ହୋଇଯାଇଥିବାରୁ ଏକ କ୍ୟାମେରା କିଣିବାର ଜରୁରୀ ଆବଶ୍ୟକତା ଥିଲା । କିଛି ଉପହାର ସାମଗ୍ରୀ ନିକଟସ୍ଥ କଟରା ବଜାରରୁ କିଣାକିଣି କରି ରାତି ୧୦ ଟାରେ ପ୍ରସାଦ ସେବନ କରି ବିଶ୍ରାମ ନେଲୁ ।

### ତା. ୨୪.୦୯.୨୦୧୦, ଶୁକ୍ରବାର

ସକାଳ ୧୧ ଘଣ୍ଟା ସମୟରେ ମଧ୍ୟାହ୍ନ ପ୍ରସାଦ ସେବନ କରି ଜମ୍ମୁ ଷ୍ଟେସନ ଅଭିମୁଖେ ନିର୍ଦ୍ଧାରିତ ବସ୍ ଯୋଗେ ବାହାରି ପଡ଼ିଲୁ । ଦିନ ୨ଘ. ୩୦ମି. ସମୟରେ ମୁରୀ ଏକ୍ସପ୍ରେସ୍‌ରେ ଅମୃତସର ଯାତ୍ରା ଆରମ୍ଭ କଲୁ । ଅମୃତସରରେ ପହଞ୍ଚିଲା ବେଳକୁ ରାତି ୭ଘ ୩୦ମି. ଷ୍ଟେସନରୁ କୃଷ୍ଣ ବଳରାମ ବସ୍‌ରେ ଶିୱାଲ ରୋଡ଼ର ରୋୟାଲ ପ୍ୟାଲେସ୍ ଗେଷ୍ଟ ହାଉସ୍‌ରେ ପହଞ୍ଚିଲୁ । ସେଠାରେ ପ୍ରତ୍ୟେକ ଯାତ୍ରୀଙ୍କ ପାଇଁ ଅଲଗା କୋଠରୀର ବ୍ୟବସ୍ଥା ହୋଇଥାଏ । ଆମର କୋଠରୀ ଦ୍ୱିତୀୟ ମହଲାରେ । ଏଠାରେ ପାଣି ଓ ଧୋଇବା, ଶୁଖାଇବା ପାଇଁ ସମସ୍ତ ସୁବିଧା ଥିବାଯୋଗୁଁ ରାତ୍ରି ପ୍ରସାଦ ପ୍ରସ୍ତୁତ ପର୍ଯ୍ୟନ୍ତ ସବୁ ଯାତ୍ରୀ ଲୁଗାପଟା ସଫା କରିବାରେ ଲାଗିପଡ଼ିଲୁ । ରାତ୍ରି ପ୍ରସାଦ ସେବନପରେ ଆରାମରେ ବିଶ୍ରାମ ନେଲୁ । ଦୂରଦର୍ଶନର ମନୋରଂଜନ ବ୍ୟବସ୍ଥା ଓ ସମ୍ବାଦ ପରିବେଷଣ ଆମ ମନରେ ଗଭୀର ଆନନ୍ଦ ସୃଷ୍ଟି କରିଥିଲା । ଆୟୋଜକ ଇସ୍କନ ପ୍ରଭୁଙ୍କୁ କୃତଜ୍ଞତା ଜଣାଇ ତାଙ୍କର ସୁସ୍ଥ ନିରାମୟ ଜୀବନ କାମନା କରି ଶୟନ କଲୁ ।

### ତା. ୨୫.୦୯.୨୦୧୦, ଶନିବାର

ସକାଳ ୭ଟାରେ ନିର୍ଦ୍ଧାରିତ ବସ୍ ଯୋଗେ ସ୍ୱର୍ଣ୍ଣ ମନ୍ଦିର ଦର୍ଶନ ନିମନ୍ତେ ବାହାରି ପଡ଼ିଲୁ । ଗୋଟିଏ ନିର୍ଦ୍ଦିଷ୍ଟ ଛକରେ ଓହ୍ଲାଇ ଟାଙ୍ଗା/ଅଟୋ ଧରି ଅମୃତସର ମନ୍ଦିର, ଜାଲିଆନାୱାଲା ବାଗ୍, ଶନିଶ୍ଚର ମନ୍ଦିର, ହନୁମାନ ମନ୍ଦିର ଇତ୍ୟାଦି ଦର୍ଶନୀୟ

ସ୍ଥାନ ବୁଲି ଆସିଲୁ । ସ୍ୱର୍ଣ୍ଣ ମନ୍ଦିରର ପବିତ୍ରତା, ଚତୁର୍ଦ୍ଦିଗରେ ଫଟୋଚିତ୍ରରେ ସାହସୀ ବୀର ଶିଖ ଧର୍ମ ଧ୍ୱଜାଧାରୀଙ୍କର ଅଙ୍କିତ ଛବି, ଶ୍ରଦ୍ଧାଳୁ ଭକ୍ତଗଣଙ୍କର କର ସେବା ଓ ସ୍ୱାଦିଷ୍ଟ ହାଲୁଆ - ମନଭରି ଉପଭୋଗ କଲୁ । ଧର୍ମାନୁଷ୍ଠାନରୁ ଫେରି ନିର୍ଦ୍ଦୟତାର ସ୍ମାରକୀ ଶହୀଦ ସମାଧି ସ୍ଥଳ ଜାଲିଆନାୱାଲା ବାଗ୍‌ରେ ପ୍ରବେଶ କଲୁ । ଦେହ ଓ ମନରେ ଏକ ଅପୂର୍ବ ରୋମାଞ୍ଚ ସୃଷ୍ଟି ହେଲା ସେହି ପରିବେଶରେ । ତୃତୀୟ ଶ୍ରେଣୀରୁ ଆଜି ପର୍ଯ୍ୟନ୍ତ ଇତିହାସରେ ପଢ଼ି ଆସିଥିବା ଜାଲିଆନାୱାଲା ବାଗ୍ କିଛି ସମୟ ପାଇଁ ଆମକୁ ଅତୀତକୁ ଫେରାଇ ନେଇଥିଲା । ଅମରଜ୍ୟୋତିରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଟାଙ୍ଗା ଧରିଲୁ ବସ୍ ରହିବା ସ୍ଥାନକୁ ଫେରିବା ପାଇଁ । ଦିନ ୧୨ଟାରେ ବସାରେ ପହଞ୍ଚି ମଧ୍ୟାହ୍ନ ପ୍ରସାଦ ସେବନ କରି ୨ଘ. ୩୦ମି. ସମୟରେ ଅନ୍ୟ ଦର୍ଶନୀୟ ସ୍ଥାନ ଦର୍ଶନ ଉଦ୍ଦେଶ୍ୟରେ ବାହାରି ପଡ଼ିଲୁ । ଲବକୁଶ ଜନ୍ମସ୍ଥାନ ଓ ଅନ୍ୟ କେତୋଟି ମନ୍ଦିର ଦର୍ଶନ କରି ୱାଘା ସୀମାରେ ପହଞ୍ଚିଲୁ । ଭଗବଦ୍ ଭକ୍ତିରୁ କିଛି ସମୟ ପାଇଁ ଦେଶ ଭକ୍ତିରେ ତଲ୍ଲୀନ ହୋଇଗଲୁ । ସେଠାରେ ସଂଧ୍ୟା ୬ଘଣ୍ଟା ସମୟରେ ଜାତୀୟ ପତାକା ଅବତରଣ ଉତ୍ସବ (ଭାରତ ଓ ପାକିସ୍ଥାନ) ଦେଖିବା ଆଶାରେ ପ୍ରବଳ ଜନ ସମାଗମ ମଧ୍ୟରେ ଦର୍ଶକଙ୍କ ପାଇଁ ଉଦ୍ଦିଷ୍ଟ ଗ୍ୟାଲେରୀରେ ବସି ରହିଲୁ । ଅବତରଣ ଉତ୍ସବର ନିର୍ଦ୍ଧାରିତ ସମୟ ପୂର୍ବରୁ ସ୍କୁଲ ଛାତ୍ର ଛାତ୍ରୀଙ୍କର (ଉଭୟ ଦେଶର) ଚିତ୍ତାକର୍ଷକ ପ୍ୟାରେଡ୍, ପୁରାତନ ଓ ନୂତନ ଦେଶାତ୍ମବୋଧକ ସଂଗୀତ ବାତାବରଣକୁ ସରଗରମ କରୁଥିଲା । ସ୍ୱାଦିଷ୍ଟ ଜଳଖିଆ ଓ ଚା'ପାନ ପରେ ବସ୍‌ରେ ଉଠିଲୁ । ସେହିଦିନର ଗୋଟିଏ ଘଟଣା ବେଶ୍ କୌତୁହଳପ୍ରଦ ଥିଲା । ପୂର୍ବରୁ କିମ୍ୱା ପରେ ଏହି ଭଳି ଘଟଣା ସମଗ୍ର ତୀର୍ଥଯାତ୍ରା ସମୟରେ କେଉଁଠାରେ ଘଟି ନ ଥିଲା । ଝଙ୍କଡ଼ରୁ ଆସିଥିବା ଜଣେ ୭୪ ବର୍ଷୀୟ ତୀର୍ଥଯାତ୍ରୀ ସଂଧ୍ୟା ୭ଟା ପର୍ଯ୍ୟନ୍ତ ବସ୍‌କୁ ଫେରି ନ ଥିଲେ । ତାଙ୍କ ସ୍ତ୍ରୀ କାନ୍ଦି କାନ୍ଦି ବେଦମ୍ । ରାତି ମାଡ଼ି ଆସୁଥାଏ, ପୁଣି ଭାରତ-ପାକିସ୍ଥାନ ସୀମା । ସେଠାରେ ଖୋଜିବା କଷ୍ଟକର ବ୍ୟାପାର । କିଏ କହିଲେ ମୁଁ ଏଇଠି ଦେଖିଥିଲି, କିଏ କହିଲେ ସେଇଠି ଠିଆ ହୋଇଥିଲେ । କିନ୍ତୁ ସେ ଫେରି ନ ଥାନ୍ତି । ପ୍ରଭୁ ପଦ୍ମଧର ନିଜ ଖାତାରୁ ଫୋନ୍ ନମ୍ୱର ଦେଖି ଫୋନ୍ କଲେ । ଫୋନ୍ ରିଙ୍ଗ୍ ହେଉଛି କିଏ ଉଠାଉ ନାହାଁନ୍ତି ବୋଲି କହିଲେ । ସମସ୍ତଙ୍କ ମନରେ ଛନକା ପଶି ଯାଇଥାଏ । ଏହିଭଳି ଘଡ଼ି ସନ୍ଧି ମୁହୂର୍ତ୍ତରେ ଆମ ବସ୍ ଭିତରୁ ଜଣେ ପାଟି କଲେ - "ହେଇ ମଉସା ଆସୁଛନ୍ତି" । ମଉସା ମନ ଖୁସିରେ ୱାଘା ବୋର୍ଡ଼ର C.D ଟିଏ ଧରି ବସକୁ ଫେରିଲେ । ତାଙ୍କୁ କେହି କିଛି ପଚାରିବା ପୂର୍ବରୁ ସେ ସମସ୍ତଙ୍କୁ ଦଫେ ପାଟିକଲେ, "ମୁଁ କ'ଣ ହଜି ଯାଉଥିଲି କି" ? ହଜିବା ଲୋକର ପାଟିରେ ଖୋଜିବା ଲୋକ ସବୁ

ଚୁପ୍ । ବସ୍ ଛାଡ଼ିଲା, ପ୍ୟାକେଟ୍ ପ୍ରସାଦର ବ୍ୟବସ୍ଥା ହୋଇଥିଲା । ଷ୍ଟେସନରେ ଗ୍ରହଣ କଲୁ, ପରବର୍ତ୍ତୀ ଦିନମାନଙ୍କରେ ସେହି ତୀର୍ଥଯାତ୍ରୀ ମହୋଦୟଙ୍କୁ ମୁଁ ୱାଘା ବୋର୍ଡ଼ର ମଉସା ବୋଲି ଡ଼ାକୁଥିଲି ଓ ସେ ଖରାପ ମନେକରୁଛନ୍ତି କି ବୋଲି ପଚାରି ସେ ଖୁସି ହେଉଥିବା ବିଷୟ ଜାଣି ଆଶ୍ୱସ୍ତ ହେଲି । ଅମୃତସର ଷ୍ଟେସନରୁ ଅମୃତସର ଡ଼େରିଡ଼ମ୍ ଏକ୍ସପ୍ରେସ୍‌ରେ ରାତି ୯ଘ. ୧୫ମି.ରେ ଫେରିବା ଯାତ୍ରା ଆରମ୍ଭ କଲୁ । ଗାଡ଼ି ଭିତରେ ଶୟନ ପାଇଁ ସୁବ୍ୟବସ୍ଥା ହୋଇଥିବାରୁ ଆରାମରେ ରାତ୍ରି ବିଶ୍ରାମ ନେଇ ସକାଳ ୭ଘ. ୩୦ମିରେ ହରିଦ୍ୱାର ଷ୍ଟେସନରେ ପହଞ୍ଚିଲୁ ।

### *ତା. ୨୬.୦୯.୨୦୧୦, ରବିବାର*

ନିର୍ଦ୍ଧାରିତ ବସ୍ ଯୋଗେ ପ୍ରେମ ନଗର ଆଶ୍ରାମରେ ସକାଳୁ ୮ଘ. ୩୦ମି.ରେ ପହଞ୍ଚିଲୁ । ଆଶ୍ରମ ନିକଟସ୍ଥ କୋମଳ ଘାଟରେ ଗଂଗା ସ୍ନାନ ପାଇଁ କାର୍ଯ୍ୟକ୍ରମ ସ୍ଥିର କରାଯାଇଥିଲା, କିନ୍ତୁ ଗଂଗା ନଦୀର ପ୍ରବଳ ବନ୍ୟା ଯୋଗୁଁ ସେଦିନ ଗଂଗା ସ୍ନାନ ନିଷେଧ ବୋଲି ସରକାରୀ ନିର୍ଦ୍ଦେଶ ଜାଣିବା ପରେ ଆଶ୍ରମର ସମୂହ ସ୍ନାନାଗାରରେ ନିତ୍ୟକର୍ମ ସମାପନ କରି ମଧ୍ୟାହ୍ନ ପ୍ରସାଦ ଗ୍ରହଣ କଲୁ । ସେଠାରୁ ବଦ୍ରିନାଥ ଯାତ୍ରା ପାଇଁ ସ୍ୱତନ୍ତ୍ର ବସ୍‌ର ଆୟୋଜନ କରାଯାଇଥିଲା, କିନ୍ତୁ ଇସ୍କନ କର୍ତ୍ତୃପକ୍ଷ ଓ ବସ୍ ଡ୍ରାଇଭର୍‌ମାନଙ୍କର ମନାନ୍ତର ଓ ମତାନ୍ତର ହୋଇ ସମାଧାନ ହେଲା ବେଳକୁ ସାଢ଼େ ତିନି ବାଜିଲା । ରାତିରେ ବଦ୍ରିନାଥ ଯାତ୍ରା ସମ୍ଭବପର ହୋଇ ନଥିବାରୁ ହରିଦ୍ୱାରର ଅନ୍ୟ ଏକ ଆଶ୍ରାମ ଜୟରାମ ଆଶ୍ରମ (୪) କୁ (ଗଂଗା ସ୍ୱରୂପ ଆଶ୍ରମ) ସ୍ଥାନାନ୍ତର ହେଲୁ । ସେ ଦିନ ଆମ ଦୁହିଁଙ୍କର ଆଖି ଧରା ପ୍ରବଳ । ତେଣୁ ସଂଧ୍ୟାରେ ଆମ ଯାତ୍ରୀମାନଙ୍କ ଭିତରୁ କେତେ ଜଣ ଗଂଗା ଆଳତୀ, ଅନ୍ୟାନ୍ୟ ମନ୍ଦିର ଦର୍ଶନ ଯିବା ଖବର ଜାଣି ମଧ୍ୟ ନୀରବ ରହିଲୁ । ଆଶ୍ରମର ଦ୍ୱାରଦେଶରୁ କିଛି ପଶମ ବସ୍ତ୍ର କିଣାକିଣି କଲୁ । ଲୁଗାପଟା ସଫା କଲୁ ଓ ରାତ୍ରି ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ । ଆଶ୍ରମର ତୃତୀୟ ମହଲାରେ ସେ ଦିନ ଆମ ରହିବା ବ୍ୟବସ୍ଥା ହୋଇଥିଲା ।

### *ତା ୨୭.୦୯.୨୦୧୦, ସୋମବାର*

ବଦ୍ରିନାଥ ଯାତ୍ରା ପାଇଁ ୬ଟି PUSH BACK ଓ ୩ଟି ସାଧାରଣ ବସ୍‌ର ବ୍ୟବସ୍ଥା ହୋଇଥିଲା । ଆମ PUSH BACK ବସ୍‌ର ନାଁ ଥିଲା 'ସୁଦର୍ଶନ' । ଭୋର୍ ୫ଟାରେ ବଦ୍ରି ବିଶାଳଙ୍କୁ ସ୍ମରଣ କରି ଦୁଃସାହସିକ ଅଭିଯାନ ଆରମ୍ଭ କଲୁ । ଦିନ ୧୧ଟା ସମୟରେ ପୂର୍ବ ରାତିରୁ ପ୍ରସ୍ତୁତ ହୋଇଥିବା ପ୍ରସାଦ 'ନଅର କଟା ପୋର୍ଲ  ନିକଟରେ ସେବନ କଲୁ । କେତେଜଣ ଝରଣା ଜଳରେ ନିତ୍ୟକର୍ମ ସମାପନ

କଲେ । ବସ୍‌ରେ ଚଢ଼ିଲୁ । ବସ୍ ଉଠିଲା ଉପରକୁ ଉପରକୁ । ବସ୍ କ୍ରମଶଃ ଉପରକୁ ଉଠିବା ସମୟରେ ବସ୍‌ର ଝରକା ଦେଇ ଅପୂର୍ବ ଶୋଭା ଉପଭୋଗ କରୁଥିଲୁ । ଗୋଟିଏ ପାର୍ଶ୍ୱରେ ଉତ୍ତୁଙ୍ଗ ପାହାଡ଼, ଅନ୍ୟ ପାର୍ଶ୍ୱରେ ବେଗଗାମୀ ସ୍ରୋତସ୍ୱିନୀ ଅଳକାନନ୍ଦା । ସ୍ଥାନେ ସ୍ଥାନେ ଭୂସ୍ଖଳନ ଯୋଗୁଁ ରାସ୍ତା ବନ୍ଦ । କିଛି ସମୟ ଅପେକ୍ଷା କଲା ପରେ ରାସ୍ତା ସଫା ହେଲେ ପୁଣି ଯାତ୍ରା ଆରମ୍ଭ । ଡ୍ରାଇଭରମାନଙ୍କର ସୁଦକ୍ଷ ଗାଡ଼ିଚାଳନାକୁ ପ୍ରଶଂସା କରି ଇଷ୍ଟଦେବୀଙ୍କୁ ସ୍ମରଣ କରି ଶଙ୍କିତ ମନରେ ଯାତ୍ରାକାଳୀନ ସୁଖ ଅନୁଭବ କରୁଥିଲୁ । ଦିନ ୪ଟା ବେଳେ ଗୋଟିଏ ସ୍ଥାନରେ ଚା' ପାନ ପାଇଁ ଗାଡ଼ି ଅଟକିଲା । ଚା' ପାନ ପରେ ଡ୍ରାଇଭରଙ୍କ ଠାରୁ ଜାଣିବାକୁ ପାଇଲୁ, ସଂଧ୍ୟା ପୂର୍ବରୁ ବଦ୍ରିନାଥରେ ପହଞ୍ଚିବା କଷ୍ଟକର ତେଣୁ ବର୍ତ୍ତମାନ ସୀତାପୁର ନାମକ ସ୍ଥାନରେ ରାତ୍ରିଯାପନ ପାଇଁ ପ୍ରଭୁ ନିର୍ଦ୍ଦେଶ ଦେଇଛନ୍ତି । ସଂଧ୍ୟା ୫ଘ. ୩୦ମି.ରେ ସୀତାପୁରରେ ପହଞ୍ଚିଲୁ । ସୀତାପୁର ଗୋଟିଏ ଛୋଟ ସହର । ସେଠାରେ ୪/୫ଟି ଅତିଥି ଭବନ ଓ ୨/୪ଟି ଧର୍ମଶାଳା ରହିଛି । ଛୋଟ ବଜାରଟିଏ ମଧ୍ୟ ରହିଛି । ବୋଧହୁଏ କେଦାରନାଥ ଯାତ୍ରୀଙ୍କର ରହଣି ପାଇଁ ଏଠାରେ ଏଭଳି ବ୍ୟବସ୍ଥା କରାଯାଇଛି । ସେତେବେଳକୁ ହିମାଳୟର ଥଣ୍ଡାପାଗରେ ଆମ ଦୁହିଁଙ୍କର ଆଖିଧରା ଭୀଷଣ କଷ୍ଟ ଦାୟକ ଥିଲା । ଆଖିଧରା ଯୋଗୁଁ କେବଳ ଆଖି ନୁହେଁ ସମଗ୍ର ମୁହଁ ମଧ୍ୟ ଫୁଲିଯାଇଥିଲା । ସେଦିନ Guest House ଅତିଥି ଭବନର ୩ୟ ମହଲାରେ ଆମ କୋଠରୀ ସାଥୀ ଥିଲେ ଶ୍ରୀମତୀ ଓ ଶ୍ରୀ ପଢ଼ିଆଳି । ବସ୍‌ରୁ ଓହ୍ଲାଇବା ପରେ ପରେ ରାଜା ନାମରେ ଏକ ଘୋଡ଼ା ରଖିବା ପିଲା ଆମର ପିଛା ଧରି ଆମର ସମସ୍ତ ଜିନିଷ ଉପର ମହଲାକୁ ଉଠେଇ ନେଲା । ସକାଳ ୫ଟାରେ ମୋ ଘୋଡ଼ାରେ ଆରାମରେ କେଦାରନାଥଙ୍କ ଦର୍ଶନ କରେଇଦେବି ବୋଲି ନିର୍ଭର ପ୍ରତିଶ୍ରୁତି ଦେଇ ଫେରିଲା । ରାତ୍ରି ପ୍ରସାଦ ସେବନ ପରେ ରାତି ଦଶଟାରେ ବିଶ୍ରାମ ନେଲୁ ।

### ତା. ୨୮.୦୯.୨୦୧୦, ମଙ୍ଗଳବାର

ଭୋର୍ ୫ଟାରେ ବସ୍‌ରେ ସୀତାପୁର ଠାରୁ ୨୦କି.ମି ଦୂରରେ ଅବସ୍ଥିତ ଗୌରୀକୁଣ୍ଡ ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ଗୌରୀ କୁଣ୍ଡରେ ବସ୍ ଅଟକିଲା । ଆମ ଘୋଡ଼ା ପିଲା 'ରାଜା' ଆମ ପଛରେ ପଛରେ ହେଉଥିଲା । ତା' ସାହାଯ୍ୟରେ ସରକାରୀ କାଉଣ୍ଟରରୁ ଘୋଡ଼ା ପାଇଁ ଟିକଟ କଲୁ । ଟିକଟର ମୂଲ୍ୟ ଘୋଡ଼ା ପ୍ରତି ଟ. ୧୧୦୦.୦୦ ମାତ୍ର । ଇନ୍‌ସୁରାନ୍‌ସର ମଧ୍ୟ ବ୍ୟବସ୍ଥା ଅଛି । ଟିକଟ ହୋଇ ସାରିବା ପରେ ରାଜା କହିଲା - ଦୁଇଟି ଘୋଡ଼ା ପାଇଁ ଗୋଟିଏ ପିଲା । ସେମାନେ ଆପଣଙ୍କୁ

ସୁବିଧାରେ ନେଇ ଫେରାଇ ଆଣିବେ । ସେମାନଙ୍କ ସହ ଏହି ବିଷୟ ନେଇ ଅଧିକ ପାଟି ତୁଣ୍ଡ କରିବାକୁ ଉଚିତ ମନେ କଲୁ ନାହିଁ । କେଦାରନାଥ ଜୀଙ୍କ ନାମ ନେଇ ଉଦାସ ମନରେ ଘୋଡ଼ା ଚଢ଼ିଲୁ । ଘୋଡ଼ାରେ ବସିବା ପୂର୍ବରୁ ସେଠାରେ ଥିବା ତପ୍ତକୁଣ୍ଡ ଗୌରୀକୁଣ୍ଡର ଉତ୍ତପ୍ତ ପାଣିରେ ହାତ ମୁହଁ ଧୋଇ ମଥାରେ ପାଣି ସିଞ୍ଚନ କରିଥିଲୁ । ଆମ ଦୁହିଁଙ୍କର ଘୋଡ଼ା ପିଲାର ନାଁ ଗଣେଶ ଓ ଘୋଡ଼ା ଦୁଇଟି ନାଁ ଅଞ୍ଜୁ ଓ ମଞ୍ଜୁ । ଜୀବନରେ ପ୍ରଥମ ଥର ପାଇଁ ବସିଥିବା ଘୋଡ଼ା ଚଢ଼ା ପ୍ରଥମେ ପ୍ରଥମେ କିଛି କଷ୍ଟକର ମନେହେଉ ନ ଥିଲା । ଏଠାରେ କହି ରଖେ କେଦାରନାଥ ରାସ୍ତାରେ ଚଢ଼ିବା ପାଇଁ ବହୁତ ଜାଗାରେ ପାହାଚ ପାହାଚ ହୋଇଛି, ଅଙ୍କା ବଙ୍କା ରାସ୍ତା, ପୁଣି ସମତଳ ରାସ୍ତା ମଧ୍ୟ ସରକାରୀ/ବେସରକାରୀ ରକ୍ଷଣା ବେକ୍ଷଣ ଅଭାବରୁ ଖାଲ ଢ଼ିପ ହୋଇଛି । ତାଲିମ ପ୍ରାପ୍ତ ଅଭ୍ୟସ୍ତ ଘୋଡ଼ା ସବାର, ଅନଭିଜ୍ଞ  ଯାତ୍ରୀ ଆମେ, ତେଣୁ ଅଡୁଆ ଅଡୁଆ ଲାଗୁଥାଏ, ତଥାପି ଯିବା ସମୟରେ ସକାଳ ସୂର୍ଯ୍ୟ କିରଣରେ ବରଫାବୃତ ପାହାଡ଼ ଉପରେ ପ୍ରତିଫଳନର ଶୋଭା କଥାବାର୍ତ୍ତା ହୋଇ ଉପଭୋଗ କରୁଥିଲୁ । ମହାକବି କାଳିଦାସଙ୍କ ଲିଖିତ - ''ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା ହିମାଳୟୋ ନାମ ନଗାଧିରାଜଙ୍କୁ ହାତ ଯୋଡ଼ି ନ ପାରି (ଘୋଡ଼ାର ଲୁହାକୁ ପଡ଼ିଯିବା ଭୟରେ ଜାବୁଡ଼ି ଧରିଥିବାରୁ) ମନେ ମନେ ସ୍ମରଣ କରୁଥିଲୁ । ଗୌରୀକୁଣ୍ଡରୁ କେଦାରନାଥ ମନ୍ଦିରର ଦୂରତା ୧୪କି.ମି । ସୁଉଚ୍ଚ ହିମାଳୟ ପର୍ବତର ପ୍ରାକୃତିକ ଶୋଭା ଦେଖି ଦେଖି ଗଲା ବେଳେ ୭କି.ମି ପାର ହୋଇଯିବା ବିଷୟ ଜାଣିପାରିଲୁ ନାହୁଁ । ଘୋଡ଼ାମାନଙ୍କୁ ଦାନା ଦେବା ପାଇଁ ଓ ଆମେ ମଧ୍ୟ କିଛି ଜଳଖିଆ ସେବନ ପାଇଁ ସେଠାରେ ଘୋଡ଼ାରୁ ଓହ୍ଲାଇଲୁ, ତା' ପରେ ଦ୍ୱିତୀୟାର୍ଦ୍ଧ ଯାତ୍ରା ଆରମ୍ଭ ହେଲା । କଷ୍ଟେମଷ୍ଟେ ପହଞ୍ଚିଲୁ  କେଦାରନାଥଜୀଙ୍କ ସମ୍ମୁଖରେ । ଭୋଗ ନୈବେଦ୍ୟ କିଣି ପୁରୋହିତ ଠିକ୍ କରି ପ୍ରବେଶ ହେଲୁ ମନ୍ଦିର ଭିତରେ । ପ୍ରାଚୀନ ମନ୍ଦୀର, ମାନଚିତ୍ର ପଢ଼ି ଜାଣିଲୁ ମେରୁ, ସୁମେରୁ ଦୁଇଟି ପର୍ବତ ଉପରେ ମନ୍ଦିର ଅବସ୍ଥିତ । ମନ୍ଦିର ପଛରେ ତୁଷାର ବୃତ୍ତ କୈଳାସ ପର୍ବତକୁ ସେଠାକାର ଫଟୋବାଲା ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଉଥାନ୍ତି । ମନ୍ଦିର ଭିତରେ ପ୍ରବେଶ କଲୁ ପୂଜା ପାଇଁ । ଜ୍ୟୋର୍ତିଲିଙ୍ଗ କେଦାରନାଥ, କେବଳ ଏକ ପ୍ରାଚୀନ ପ୍ରସ୍ତର ଖଣ୍ଡ । ଲିଙ୍ଗ, ଶକ୍ତି କିଛି ନାହାନ୍ତି । ପ୍ରାକୃତିକ ଜ୍ୟୋର୍ତିଲିଙ୍ଗ ଉଦ୍ଦେଶ୍ୟରେ ପ୍ରଣିପାତ ହୋଇ ପ୍ରତ୍ୟେକଙ୍କ ପାଇଁ ଅଲଗା ଅଲଗା ପୂଜାର ବ୍ୟବସ୍ଥା ଯୋଗୁଁ ସନ୍ତୋଷ ଲାଭ କଲୁ । ତା ପରେ ଆରମ୍ଭ ହେଲା ଫେରିବା ଯାତ୍ରା । ଫେରିବାବେଳେ ଘୋଡ଼ା ଘର ମୁହାଁ ହୋଇ ଅଣଆୟତ୍ତ ହୁଅନ୍ତି ବୋଲି ଶୁଣିଥିଲୁ । ଆମ ଭାଗ୍ୟରେ ମଧ୍ୟ ସେଇଆ ଘଟିଲା । ମୋ ସ୍ୱାମୀଙ୍କର

ଘୋଡ଼ାଟି ବେଶ୍ ଚଳଚଞ୍ଚଳ ଥିବାରୁ ସବୁଠାରୁ ଆଗରେ କାହାର ବୋଲ ନ ମାନି ପାର୍ଶ୍ୱରେ ଥିବା ପଥର, ଲାଇଟ୍ ଖମ୍ବକୁ ଖାତିର ନ କରି ଦୌଡୁଥାଏ ଓ ଘୋଡ଼ାର ଦୌଡ଼ିବା ବେଗ ସହ ସମାନ ଗତିରେ ଆମ ହୃତ୍‌ସ୍ପନ୍ଦନ ମଧ୍ୟ ବଢୁଥାଏ । ସମୟେ ସମୟେ ପ୍ରାଣ ବାହାରିଗଲା ଭଳି ମନେହେଉଥାଏ । ଏକମାତ୍ର ସାହା ଭରସା ''କର୍ପୁର ଗୌରଂ, କରୁଣାବତାରଂ, ସଂସାରସାରଂ ଭୁଜଗେନ୍ଦ୍ର ହାରଂକୁ'' ସ୍ମରଣ କରୁଥାଉ । ପ୍ରବଳ ଗଂଜେଇ ଚାଷ ଓ ବରଫାବୃତ ଉଚ୍ଚ ପର୍ବତ ଯୋଗୁଁ ସେଠାରେ ବେଳେ ବେଳେ ଅମ୍ଳଜାନ ଅଭାବ ପରିଲକ୍ଷିତ ହୋଇଥାଏ । ତଳକୁ ଓହ୍ଲାଇଲା ପରେ ଆମେ ଶୁଣିଲୁ ଆମର ଜଣେ, ଦୁଇଜଣ ଯାତ୍ରୀ ମଧ୍ୟ ସେଠାରେ ଅଚେତ ହୋଇ ପଡ଼ିଥିଲେ । କେଦାରନାଥଜୀଙ୍କୁ ସ୍ମରଣ କରି ପରିଶେଷରେ ଅପରାହ୍ନ ୪ଟା ସମୟରେ ପୈତୃକ ପ୍ରାଣ ନେଇ ଗୌରୀକୁଣ୍ଡ ନିକଟରେ ପହଞ୍ଚିଲୁ । ପହଞ୍ଚିବା ପରେ ନିଜକୁ ଶେର୍‌ପା ଟେନଜିଂ ନର୍ଗେ ଓ ଏଡ଼ମଣ୍ଡ ହିଲାରୀ ଭଳି ମନେକଲୁ । ଆଖିଧରା ଉପଶମ ପାଇଁ ଔଷଧ ଦୋକାନରୁ ଔଷଧ କିଣିଲୁ । ସେହି ଔଷଧ ଦୋକାନୀ ଯୁବକର ମିଠା କଥା ସବୁ ଦିନ ପାଇଁ ଅଭୁଲା ହୋଇ ମାନସପଟରେ ଲାଗି ରହିଲା । ବସ୍ ରହିବା ସ୍ଥାନରେ ଚା' ପାନ କରି ବସ୍‌ରେ ଉଠିବାକୁ ଗଲୁ । ଆମ ନିର୍ଦ୍ଧାରିତ ବସ୍‌ର ଲୋକ ଜମା ହୋଇ ନ ଥିବାରୁ ଅନ୍ୟ ଏକ ବସ୍‌ରେ ବସିଲୁ । ଇସ୍କନ ପ୍ରଭୁ ନିର୍ଦ୍ଦେଶ ଦେଲେ ନିର୍ଦ୍ଦିଷ୍ଟ ବସ୍‌କୁ ଅପେକ୍ଷା ନକରି ଏକାଠି ହୋଇଥିବା ଯାତ୍ରୀଙ୍କୁ ନେଇ ବସ ସୀତାପୁର ଅଭିମୁଖେ ଯିବା ପାଇଁ, ସେଠାରେ ରାତ୍ରି ୭ଘ. ପରେ ବସ୍ ଚଳାଚଳ ବନ୍ଦ । ପରଦିନ ଭୋର ୫ଟାରେ ରାସ୍ତା ଖୋଲା ହେବ । ତେଣୁ ଅନିଚ୍ଛା ସତ୍ତ୍ୱେ ଆମ ରୁମ୍ ସାଥୀ ଶ୍ରୀମତୀ ପଢ଼ିଆଳୀ ଆମ ସହିତ ଫେରିଲେ, ଶ୍ରୀ ପଢ଼ିଆଳୀ ବାବୁ ଘଣ୍ଟା ମରାମତି ପାଇଁ ସେଠାରେ ପରବର୍ତ୍ତୀ ବସ୍‌ରେ ଫେରିବା ପାଇଁ ରହିଗଲେ । ଆମ ବସ୍ ଛାଡ଼ିବାର ୧୦ ମିନିଟ ପରେ ରାସ୍ତା ଖୋଲା କାମ ଆରମ୍ଭ ହୋଇଗଲା ଓ ପରବର୍ତ୍ତୀ ବସ୍ ଠିକ୍ ଏକ ଘଣ୍ଟା ବିଳମ୍ବରେ ସେଠାରୁ ଛାଡ଼ିଲା । ବିଧିର ବିଧାନକୁ ସ୍ମରଣ କରି ପ୍ରଣିପାତ ହୋଇ ବିଶ୍ରାମ ନେବା ପାଇଁ ସ୍ଥିର କଲୁ । ଅଣ୍ଟାପାଗ ଆଖିଧରା କଷ୍ଟ ଓ ଘୋଡ଼ା ଚଢ଼ାର କ୍ଳାନ୍ତି ଏତେ ବଢ଼ିଯାଇଥିଲା ଯେ ରାତ୍ରି ପ୍ରସାଦ ଏପରିକି ପୂର୍ବରୁ କିଣି ଆଣିଥିବା ପାଉରୁଟି ଖଣ୍ଡିକ ମଧ୍ୟ ଗ୍ରହଣ ନ କରି ରାତ୍ରି ଶୟନ କଲୁ ।

***ତା. ୨୯.୦୯.୨୦୧୦, ବୁଧବାର***

ରାତି ୪ଟାରୁ ବଦ୍ରିନାଥ ଯାତ୍ରାରମ୍ଭ ରାସ୍ତାରେ ରୁଟି ଓ କାବୁଲି ବୁଟ ତରକାରୀ ଭୋଜନ । ମଝିରେ ମଝିରେ ଭୂ-ସ୍ଖଳନ ଯୋଗୁଁ ରାସ୍ତା ବନ୍ଦ ରାସ୍ତା ସଫା ପରେ



ଶ୍ରୀ କେଦାରନାଥ (ଉତ୍ତରାଖଣ୍ଡ) ତା. ୧୯.୦୯.୨୦୧୦



ଶ୍ରୀ କେଦାରନାଥ (ଉତ୍ତରାଖଣ୍ଡ) ତା. ୧୯.୦୯.୨୦୧୦

ଯାତ୍ରା ପଥରେ ଅଗ୍ରସର କାର୍ଯ୍ୟକ୍ରମ ଲାଗି ରହିଥିଲା । ହିମାଳୟର ଔଷଧୀୟ ବୃକ୍ଷର ସୁଗନ୍ଧ, ଅଳକାନନ୍ଦାଙ୍କର କଳକଳ ନାଦ ଓ ପିଚ୍ଛିଳ ପାହାଡ଼ ଚଢ଼ାରେ ବସ୍‌ର ସର୍ପିଳ ଗତି ମନରେ ଏକ ଅପୂର୍ବ ଉନ୍ମାଦନା ସୃଷ୍ଟି କରୁଥିଲା । ବସ୍ ଭିତରେ ଇସ୍କନ ବାବାଙ୍କ ଠାରୁ ପୁରାଣ ଚର୍ଚ୍ଚାରେ ଯାତ୍ରୀଗଣ ମଜ୍ଜି ଯାଉଥିଲୁ । ଅପରାହ୍ନ ୫ଟାରେ ବସ୍ ବଦ୍ରିନାଥ ଧାମରେ ଉପସ୍ଥିତ ହେଲା । ସମଗ୍ର ଯାତ୍ରା ରହଣି ସମୟରେ ପ୍ରଥମ ଥର ପାଇଁ 'ହଂସ ଉତ୍ତରାଖଣ୍ଡ ଆଶ୍ରମ'ରେ ପ୍ରଥମ ମହଲାରେ ଆମ ପାଇଁ ସ୍ଥାନ ନିର୍ଦ୍ଧାରିତ ହୋଇଥିଲା । ସେହିଦିନ ଆମ ବଖରାର ସାଥୀ ଥିଲେ ଶ୍ରୀମତୀ ଓ ଶ୍ରୀ ପଡ଼ିଆଳୀ ବାବୁ । ଆଖିଧରାର ପ୍ରବଳ ପୀଡ଼ା ସତ୍ତ୍ୱେ ବଦ୍ରି ବିଶାଲଙ୍କ ଦର୍ଶନ, ବେଢ଼ା ପରିକ୍ରମା ଓ ପ୍ରସାଦ କିଣା ପରେ ଦକ୍ଷିଣ ଭାରତୀୟ ଭୋଜନାଳୟରେ ବିନା ପିଆଜ ରସୁଣର ଜଳଖିଆ ଖାଇ ବସାକୁ ଆଗମନ କଲୁ ଓ ରାତ୍ରି ପ୍ରସାଦ ସେବନ ବିନା ରାତ୍ରି ବିଶ୍ରାମ ନେଲୁ ।

### *ତା. ୩୦.୦୯.୨୦୧୦, ଗୁରୁବାର*

ସକାଳ ୬ଘ ୩୦ମି. ତପ୍ତକୁଣ୍ଡର ଉତ୍ତପ୍ତ ଜଳରେ ସ୍ନାନ କରି ଶ୍ରାଦ୍ଧ କର୍ମ ପାଇଁ ପ୍ରସ୍ତୁତ ହେଲୁ । ଓଡ଼ିଶା ପଣ୍ଡାଙ୍କ ଦ୍ୱାରା ସେଠାରେ ସମୂହ ଶ୍ରାଦ୍ଧ କାର୍ଯ୍ୟ ସମାପନ କଲୁ । ରାତିରେ ଆଖିଧରା ଯୋଗୁଁ ଭଲ ଭାବେ ବଦ୍ରି ବିଶାଲଙ୍କ ଦର୍ଶନ ପାଇପାରି ନ ଥିବାରୁ ମନ ବିଶେଷ ଦୁଃଖିତ ଥିଲା ତେଣୁ ପୁଣି ଥରେ ଗଲୁ ଦର୍ଶନ ଉଦ୍ଦେଶ୍ୟରେ । ମନ୍ଦିର ବିଶେଷ ଭିଡ଼ ନ ଥିଲା, ତୃପ୍ତିଦାୟକ ଦର୍ଶନ ଓ ପୂଜକଙ୍କ ସହ ଆଲୋଚନା କରି ଦିନ ୧୧ଘ. ବେଳକୁ ବସାକୁ ଫେରିଲା ବେଳକୁ ବସାରୁ ଅଧିକାଂଶ ଯାତ୍ରୀଙ୍କର ଜିନିଷ ବସ୍‌ରେ ଚଢ଼ା ସରିଥିବାର ଦେଖିଲୁ। ଖୁବ୍ ତରବରରେ (ଓଦା ହୋଇ ଶୁଖୁଥିବା ରୁମାଲ ଭୁଲି) ଜିନିଷ ବନ୍ଧା ବନ୍ଧି କରି ବସ୍‌ରେ ସ୍ଥାନ ସଂରକ୍ଷଣ କଲୁ । ସେ ଦିନ ଆମ ସହଯାତ୍ରୀ  ଶ୍ରୀମତୀ ପଡ଼ିଆଳିଙ୍କ ଦେହ ଭୀଷଣ ଖରାପ ହୋଇଥିବାରୁ ଆମ ମନ ମଧ୍ୟ ଦୁଃଖିତ ଥିଲା । ଚୁଲିରେ ବସିଥିବା ତରକାରୀ ଓହ୍ଲାଇବା ସମୟ ପର୍ଯ୍ୟନ୍ତ ଅପେକ୍ଷା ନକରି ଭାତ, ଡ଼ାଲି, ଆଚାର ଖାଉଥିବାର ଦେଖିଲୁ । ଆମେ ମଧ୍ୟ ଟ୍ରେ ଧରିଲୁ । ଗରମ ଭାତ ଓ ଡ଼ାଲି ଟ୍ରେରେ ଧରି ହାତରେ ଟେକି ଠିଆହୋଇ ଖାଇବା ବ୍ୟବସ୍ଥା ହୋଇଥିଲା । ସେଠାରେ ଏକ ଉଲ୍ଲେଖନୀୟ ଘଟଣା ଘଟିଥିଲା । ମୋ ସ୍ୱାମୀଙ୍କର ଟ୍ରେରେ ଏକ କାଳୀ ଗାଈ ଆସି ମୁହଁ ଲଗାଇ ଖାଇବା ଆରମ୍ଭ କଲା, ଏହି ଘଟଣା ପରେ ତଳେ ଟ୍ରେଟିକୁ ଥୋଇ ଦେବାରୁ ଗାଈଟି ସମସ୍ତ ଖାଦ୍ୟ ଗ୍ରହଣ କରି ଚାଲିଗଲା । ଏହି ବିରଳ ଦୃଶ୍ୟକୁ ଆମ କ୍ୟାମେରାମ୍ୟାନ୍ କୁନା ଭାଇ ଉତ୍ତୋଳିତ



ଶ୍ରୀ ବଦ୍ରିନାଥ (ଉତ୍ତରାଖଣ୍ଡ) ତା. ୩୦.୦୯.୨୦୧୦

କରି ରଖିଲେ । ସମବେତ ଯାତ୍ରୀମାନଙ୍କ ମଧ୍ୟରୁ କିଏ କିଏ କହିଲେ - ''ଆପଣ ପିଣ୍ଡଦାନ ସମୟରେ କାହାକୁ ଭୁଲି ଯାଇଛନ୍ତି, ଆପଣଙ୍କର ପିତୃପୁରୁଷ କିଏ ଜଣେ ଭାଗ୍ୟବାନ୍ ଥିବେ, ସେ ଗାଈ ଜନ୍ମ ବୋଧହୁଏ ପାଇଛନ୍ତି ତେଣୁ ଶ୍ରଦ୍ଧାରେ ଆପଣଙ୍କ ହାତରୁ ଭୋଜନ ନେଇଗଲେ'' । ଏସବୁ ମନ ବୁଝେଇବା ପାଇଁ ଖୋରାକ୍ ଯୋଗାଇବା ଭଳି ମନେ ହେଉଥିଲା । କିନ୍ତୁ କାଳୀ ଗାଈଟିଏ ହାତରୁ ଆହାର ନେଇଯିବା ପରେ ମୋର ସ୍ୱାମୀଙ୍କର ପୂର୍ବ ରାତିରେ ଦେଖିଥିବା ସ୍ୱପ୍ନ ବୃତ୍ତାନ୍ତ ମନେପଡ଼ିଗଲା । ସ୍ୱପ୍ନଟି ଏହିପରି ଥିଲା - କେତେ ଜଣ ଯାତ୍ରୀଙ୍କ ସହ ଆମେ ବିଶ୍ରାମ ନେଉଥିବା ସମୟରେ ହଠାତ୍ କାଳୀ ଗାଈଟିଏ ଘର ଭିତରକୁ ପଶି ଆସିଲା, 'ଆରେ ଆରେ ଗାଈ ପଶିଗଲା', ବୋଲି ପାଟି କରିବା ସହିତ ନିଦ ଭାଙ୍ଗିଗଲା । ବୋଧହୁଏ କିଏ ଆମକୁ ମନେପକାଇବା

ପାଇଁ ଆସିଥିଲେ, ଅଥଚ ଆମେ ଅଧମ ଇସାରା ବୁଝି ପାରିଲୁ ନାହିଁ । ପ୍ରକାଶ ଥାଉ କି ଆମେ ଆଜି ପର୍ଯ୍ୟନ୍ତ ଯେତେ ଜଣଙ୍କ ସଂସ୍ପର୍ଶରେ ଆସିଅଛୁ ସେମାନଙ୍କ ସ୍ୱର୍ଗବାସୀ ସ୍ୱଜନ ଓ ବନ୍ଧୁ ବାନ୍ଧବ, ଚାକର ଚାକରାଣୀଙ୍କର ନାମ ଟିପା ଖାତାରେ ଟିପି ନେଇଥିଲୁ । ତଥାପି ଏହି ଅକ୍ଷମଣୀୟ ଅପରାଧ କରିଥିବାରୁ ସ୍ୱର୍ଗତ ଆତ୍ମାଙ୍କ ଉଦ୍ଦେଶ୍ୟରେ କ୍ଷମା ପାର୍ଥନା କଲୁ । ବିଷର୍ଣ୍ଣ ମନରେ ବସ୍ ନିକଟରେ ପହଞ୍ଚିଲୁ । ହୁଏତ ଜୀବନରେ ପୁନର୍ବାର ସମ୍ଭବ ହୋଇ ନ ପାରେ । ତେଣୁ ଶେଷଥର ପାଇଁ "ନମୋ ଦେବାତ୍ମନେ ଶ୍ରୀ ଗୌରୀ ଗୁରବେ, ହିମାଳୟଙ୍କୁ" ପ୍ରଣତି ଜଣାଇ ବସ୍‌ରେ ଚଢ଼ିଲୁ । ସମସ୍ତ ଯାତ୍ରୀ ବସ୍‌ରେ ଉପସ୍ଥିତ ହୋଇପାରି ନ ଥିବାରୁ ବସ୍ ଚାଲିଲା ନାହିଁ । ଏଠାରେ ଆମ ଯାତ୍ରୀମାନଙ୍କର ବସ୍ ଚଢ଼ା ବିଷୟରେ ପଦେ ଲେଖିଲେ ଠିକ୍ ହେବ । ଦଳେ ଯାତ୍ରୀ ନିର୍ଦ୍ଧାରିତ ସମୟର ଢ଼େର ପୂର୍ବରୁ ଏପରିକି ୧ଘଣ୍ଟା ଆଗରୁ ବସ୍‌ରେ ଜଣେ ଜଣେ ବସନ୍ତି ଅଥବା ଛତା, ଯୋତା ଇତ୍ୟାଦି ରଖି ସ୍ଥାନ ସଂରକ୍ଷଣ କରନ୍ତି । ଦଳେ ଯାତ୍ରୀ ଆମ ଭଳି ତରବରରେ କୌଣସି ସ୍ଥାନରେ ବେଶି ସମୟ ନ ଅଟକି ଇଂଲଣ୍ଡ ସମୟାନୁବର୍ତ୍ତିତାକୁ ଆଦର୍ଶ ମନେକରି ବସ୍‌କୁ ଆସନ୍ତି ଓ ଅନ୍ୟ ଦଳେ ଅପେକ୍ଷା କରିବାପରେ ଆସନ୍ତି । ବେଶି ହଇରାଣ ନ କଲେ ମଧ୍ୟ ତୃତୀୟ ଦଳ ଯାତ୍ରୀଙ୍କ ଯୋଗୁଁ ସ୍ଥାନେ ସ୍ଥାନେ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । ବଦ୍ରିନାଥ ବସ୍‌ଗୁଡ଼ିକର ରାସ୍ତା ଦିନ ୧୨ଟାରୁ ୨ଟା ପର୍ଯ୍ୟନ୍ତ ବନ୍ଦ । ସମୟ ଅତିକ୍ରମ ହୋଇଯାଇଥିବାରୁ ବାଧ୍ୟ ହୋଇ ବସ୍‌ରେ ୨ଟା ପର୍ଯ୍ୟନ୍ତ ଅପେକ୍ଷା କଲୁ । ଦିନ ୨ଟାରେ ଦ୍ୱାର ଖୋଲା ହେବା ପରେ ଫେରିବା ଯାତ୍ରା ଆରମ୍ଭ ହେଲା । ରାସ୍ତାରେ ଗାଡ଼ି ଭିଡ଼ ଓ ଭୂ-ସ୍ଖଳନ ଯୋଗୁଁ ଅଟକି ଅଟକି ବେଳେ ବେଳେ ତଳକୁ ଓହ୍ଲାଇ ହିମାଳୟ ଓ ଅଳକାନନ୍ଦାଙ୍କ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରି ମନ୍ଥର ଗତିରେ ଯାତ୍ରା ସୁଖ ଅନୁଭବ କରୁଥିଲୁ । ଘାଟି ରାସ୍ତାରେ ଯାତ୍ରା । ସମସ୍ତ ଯାତ୍ରୀଙ୍କ ଆଣ୍ଠୁ , ଅଣ୍ଟା ବ୍ୟଥା କାହାର ଆଣ୍ଠୁରେ ବେଲଟ୍, କାହାର ଅଣ୍ଟାରେ ବେଲଟ୍, ଜଣ ଜଣକର ହାତରେ ମଧ୍ୟ ବେଲଟ୍ । ଅଧିକ ପଇସା ନେଇଥିବା PUSH BACK BUS ର PUSH BACK ଟି ଅଚଳ । ତେଣୁ ଆମ ଭିତରେ ନିଷ୍ପତ୍ତି ନେଲୁ ୪ ଘଣ୍ଟା ପରେ ଯାତ୍ରୀମାନଙ୍କର ସ୍ଥାନ ପରିବର୍ତ୍ତନ କରାଯିବ । ସମସ୍ତେ ତ ପୁରୁଣା ମଡ଼େଲ ଗାଡ଼ି । ନିୟମାନୁସାରେ ୪ ଘଣ୍ଟା ପରେ ପଛ ଲୋକ ଆଗକୁ ଆସିବା ପାଇଁ ଆତୁର, ଆଗ ଲୋକ ପଛକୁ ଯିବାକୁ ନାରାଜ୍ । ପ୍ରତି ୪ ଘଣ୍ଟା ପରେ ଏକ ଅଶୋଭନୀୟ ଗଣ୍ଡଗୋଳ ସୃଷ୍ଟି ହେଉଥାଏ । ଅବଶ୍ୟ ୪/୬ ଜଣକୁ ବାଦ୍ ଦେଲେ ଅନ୍ୟମାନେ ସମସ୍ତେ ନିୟମାନୁବର୍ତ୍ତୀ ଥିଲେ । ଗାଡ଼ି ପାହାଡ଼ିଆ ରାସ୍ତାରେ ଗଡ଼ି ଗଡ଼ି ଆସୁଥିବାର ଜାଣି ମନ ମଧ୍ୟରେ ଅହେତୁକ ଭୟ ଓ ସ୍ଥାନ ଅଦଳ ବଦଳ

ପାଇଁ ପାଟି ତୁଣ୍ଡ ମଧ୍ୟରେ ଗାଡ଼ିଗୁଡ଼ିକ ପହଞ୍ଚିଲା ସଂଧ୍ୟା ୬ଘ ୩୦ ମି.ରେ ଏକ ଧର୍ମଶାଳା ନିକଟରେ । ସେଠାରୁ ଆମ ଲକ୍ଷ୍ୟସ୍ଥଳ ପିପ୍‌ଲକୋଟିର ଦୂରତା ୧୨୦ କି.ମି । ବସ୍ ଡ୍ରାଇଭରମାନେ ସମସ୍ତେ ଏକ ହୋଇ ରାତିରେ ଗାଡ଼ି ନ ଚଲାଇ ସେହିଠାରେ ରାତ୍ରି ଯାପନ ପାଇଁ ଏକ ରକମ ଜିଦ୍ ଧରି ବସିଲେ । ବାଧ୍ୟ ହୋଇ ସେହି ସ୍ଥାନରେ ଓହ୍ଲାଇଲୁ । ଧର୍ମଶାଳାର ସାଇନ୍ ବୋର୍ଡ଼ ପଢ଼ିଲୁ । 'ସମଭାବ ଆଶ୍ରମ' । ଏଠାରେ ରହିବା ମାଗଣା, ସବୁ ଯାତ୍ରୀଙ୍କ ମନରେ ସଂଦେହ, ନିକଟରେ ଅନ୍ୟ କୌଣସି ବ୍ୟବସ୍ଥା ନାହିଁ ଆମେ ୩୦୦ ଲୋକ ଏଠାରେ କିପରି ରହିବୁ ? ଧର୍ମଶାଳା ମାଲିକ୍ କହିଲେ- ଆମର ଏଠାରେ ୧୫୦୦ ଲୋକ ରହିବା ପାଇଁ ବ୍ୟବସ୍ଥା ଅଛି । ପ୍ରକୃତରେ ସେଠାରେ କିଛି ଯାତ୍ରୀ ଆଗରୁ ଥିଲେ । ଆମେ ପହଞ୍ଚିବା ପରେ ପଞ୍ଜାବରୁ ୨ଟି ଓ ଓଡ଼ିଶାରୁ ୨ଟି ଗାଡ଼ି ଲାଗିଲା । ସମସ୍ତେ ଆଶ୍ରୟ ନେଲୁ । ଏଠାରେ ସମଭାବ ଧର୍ମଶାଳାରେ ବିଷମ ଭାବ ସବୁ ଦେଖାଦେଇଥିଲା । ଜୋର୍ ଜବରଦସ୍ତି କରିପାରୁଥିବା ଲୋକ ଓ ଅସହାୟ ମନେ ହେଉଥିବା କେତେ ଜଣଙ୍କୁ ଏକୁଟିଆ ବଖରା ଓ ଦୁଇଜଣିଆ ବଖରା ବ୍ୟବସ୍ଥା କରାଗଲା । ଅନ୍ୟମାନଙ୍କ ଭାଗ୍ୟରେ Dormitory, ଆମେ ଜିନିଷ ନେଇ ଗଲାବେଳେ ସେହି ସ୍ଥାନ ଭର୍ତ୍ତି । ତା' ପରେ ବାରଣ୍ଡାକୁ ଗଲୁ ସେଠାରେ ମଧ୍ୟ ଆମ ସାମନାରେ ଯାତ୍ରୀମାନେ ବଳପୂର୍ବକ ପଶି ବିଛଣା ପାରିଦେଲେ । ହତାଶ ହୋଇ ଚାହିଁ ରହିଥିବା ସମୟରେ ଦେଖିଲୁ ଜଣେ ମୋଟା ବାବା ଜଣ ଜଣକୁ ଡ଼ାକି ୨ଜଣିଆ, ୪ଜଣିଆ ଓ ୬ଜଣିଆ ବଖରା ସବୁ ଦେଇଛନ୍ତି । ତାଙ୍କର ପିଛା ଧରିଲୁ । ବହୁ କଷ୍ଟରେ ଗୋଟିଏ ଦଶ ଜଣିଆ ରୁମ୍‌ର ଚାବି ପାଇଲୁ । ସାଧାରଣ ଶୌଚାଳୟରୁ ଗୋଟିକରେ ତାଲା ପକାଇ ରଖିଲୁ । ଟ୧୫.୦୦ + ୧୫.୦୦ = ଟ ୩୦.୦୦ ଦେଇ ଦରି, ତକିଆ ଭଡ଼ାରେ ଆଣିଲୁ । ମନ ଆଶ୍ୱସ୍ତି ବୋଧ ହେଲା । ସେ ଦିନ ଆମର ସାଥୀମାନେ ଥିଲେ ଶ୍ରୀ ଓ ଶ୍ରୀମତୀ ପଢ଼ିଆରି, ଶ୍ରୀମତୀ ଓ ଶ୍ରୀ ସେନାପତି, ଶ୍ରୀମତୀ ଓ ଶ୍ରୀ ସ୍ୱାଇଁ ଏବଂ ପଛରେ ଆମ ରୁମ୍‌ରେ ବଳ ପୂର୍ବକ ପଶି ଆସିଥିବା ଶ୍ରୀ ରାଉଳ ଦମ୍ପତି । ଆମମାନଙ୍କ ଭିତରେ ଠିକ୍ କଲୁ ଆମେ ୪ ଜଣ ମହିଳା ଗୋଟିଏ ସ୍ଥାନରେ ଦରିରେ ଆଉ ୪ ଜଣ ପୁରୁଷ ଗୋଟିଏ ସ୍ଥାନରେ ଦରିରେ ବିଶ୍ରାମ ନେବା, କିନ୍ତୁ ଆଗନ୍ତୁକ ୨ ଜଣଙ୍କର ଅଲଗା ବିଚାର । ସେମାନଙ୍କ ନିଷ୍ପତ୍ତି - "ଆମେ କିଏ କୁଆଡ଼େ ଯିବୁନି, ଏଇଠି ଏକାଠି ରହିବୁ, ଆମକୁ ଆମ ଦରି ଦେଇଦିଅ", ଆମେ କହିଲୁ - "ଦରି କୋଉଠୁ ଆଣିବୁ ? ଟ ୩୦.୦୦ ଦେଲେ ଦରି ତକିଆ ମିଳୁଛି, ଯାଉନ ଆଣିବ" । ସେମାନେ ମଧ୍ୟ ଯାଇ ଦରି ତକିଆ ସଂଗ୍ରହ କଲେ । ବୃଦ୍ଧ ଜଣକ Retd. C R P F ଯବାନ୍ । କିନ୍ତୁ ଭାରି କର୍ମଠ ଜଣାପଡୁଥିଲେ । ତାଙ୍କ ସହିତ ଆମର

ଘନିଷ୍ଠ ପରିଚୟ ହୋଇ ନ ଥିଲା । ସେମାନଙ୍କ ସହ ଗପସପ ହେଲା ପରେ ଜାଣିଲୁ ଆମ ଇଷ୍ଟ ଦେବୀ କୁଠାରୀ ଚଣ୍ଡୀଙ୍କ ଗ୍ରାମରେ ମା'ଙ୍କ ପୂଜକଙ୍କ ଘରେ ସେ ଝିଅ ଦେଇଛନ୍ତି । ପରିଚୟ ପାଇଲେ ମଧ୍ୟ ସେମାନଙ୍କର ହାସ୍ୟୋଦ୍ଦୀପକ ବ୍ୟବହାର (ଗୋଟିଏ ସ୍ଥାନରେ ବିଛଣା ସଜାଡ଼ିବା) ବିଷୟରେ ଆଲୋଚନା କରି ଖାଲି ସେହି ରାତିରେ ନୁହେଁ ବାରମ୍ବାର ମନେପକାଇ ହସୁଥିଲୁ । ପ୍ରସଙ୍ଗ କ୍ରମେ ଘଟଣାଟି ସ୍କୁଲରେ କହିବାରୁ ଆମ ବିଜ୍ଞାନ ଶିକ୍ଷୟିତ୍ରୀ ଶ୍ରୀମତୀ ରଶ୍ମିତା ମହାପାତ୍ରଙ୍କ ଠାରୁ ଜାଣିବାକୁ ପାଇଲି ଯେ ଶ୍ରୀମତୀ ରାଉଳ ତାଙ୍କ ବୋଉଙ୍କ ବଡ଼ ବାପା ଝିଅ ଭଉଣୀ ଓ ସେହି ଦୁଇଜଣଙ୍କ ସେହିଭଳି ପ୍ରକୃତି ଯୋଗୁଁ କାହା ଘରକୁ ଯାଉ ନାହାଁନ୍ତି ଏପରିକି ତାଙ୍କ ବାହାଘରକୁ ଯାଇଥିବା ବେଳେ ମଧ୍ୟ ଭୋଜି ଘରେ ରାତି ନ ରହି ମେହି ସାହିରେ ଥିବା ନିଜ ଘରକୁ ଚାଲି ଯାଇଥିଲେ । ସାମାନ୍ୟ ଘଟଣାକୁ ଏତେ ବିସ୍ତୃତ କରି ବର୍ଣ୍ଣନା କରିବା ଉଦ୍ଦେଶ୍ୟ ଏହି ଯେ ଏତେ ବଡ଼ ଦୁନିଆରେ କିଏ କେତେବେଳେ କେଉଁଠି କାହା ସହିତ ମିଶିଲେ ମଧ୍ୟ ବନ୍ଧୁ ଖୋଜିଲେ ଆପେ ଆପେ ସଂପର୍କ ବାହାରିଥାଏ । ମନେକଲୁ - ''ବଂଧୁତାର ଅନ୍ୟ ନାମ ଜୀବନ'' । ଆମ ବ୍ୟବହାର ପାଇଁ ଶୌଚାଳୟଟି ଚାବି ପକାଇ ରଖିଥିଲେ ମଧ୍ୟ ୫୦୦ ଯାତ୍ରୀଙ୍କ ପାଇଁ ୧୫/୨୦ଟି ଶୌଚାଳୟ, ପୁଣି ସ୍ତ୍ରୀ ପୁରୁଷ ଏକାଠି । ସେହି ସ୍ଥାନର ଦୃଶ୍ୟ ଦେଖି ହେଉ ନଥିଲା । ଅତଏବ ଅତି କଷ୍ଟରେ କେବଳ ଦାନ୍ତ ଘଷି ୪ଘ. ୩୦ମି.ରେ ଗାଡ଼ିରେ ବସିଲୁ । କିନ୍ତୁ ବରାଦ ଦିଆଯାଇଥିବା ଦହି ପାଇଁ ଅପେକ୍ଷା କଲୁ । ଦେଢ଼ ଘଣ୍ଟା ଅପେକ୍ଷା ପରେ ସକାଳ ୬ଟାରେ ହରିଦ୍ୱାର ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ସମଭାବ ଆଶ୍ରମର ବିଷମ ବ୍ୟବସ୍ଥା ବିଷୟରେ ଦୁଇଧାଡ଼ିରେ ସୂଚିତ କଲେ ଉଚିତ ହେବ । ଇସ୍କନ ତରଫରୁ ରୁଟି ପ୍ରସ୍ତୁତ କରି ଭାତ ଓ ତରକାରୀ ଚୁଲିରେ ବସାଇବା ସମୟରେ ଆଶ୍ରମ ମାଲିକ ଆସି ଦାବି କଲେ, ଆମ ଆଶ୍ରମର ନିୟମ ଏଠାରେ ରହିଲେ ଆମ ପ୍ରସ୍ତୁତ ଭୋଜନ ଗ୍ରହଣ କରିବାକୁ ବାଧ୍ୟ । ସମସ୍ତେ ଭାବିଲେ କିଏ ଦାତା ଏହି ବ୍ୟବସ୍ଥା ଖଞ୍ଜି ଥିବେ । କିନ୍ତୁ ସମସ୍ତେ ଖାଇସାରି ଫେରିଲା ପରେ ଜଣ ପିଛା ଟ. ୩୦.୦୦ ହିସାବରେ ମୋଟ ୨୧୦୦.୦୦ ଟଙ୍କାର ଏକ ରସିଦ ପ୍ରଭୁ ପଦ୍ମଧରଙ୍କ ହାତରେ ଧରାଇ ଦେଲେ । ସକାଳ ଶ୍ରାଦ୍ଧ ଯୋଗୁଁ ଆମେ ଭୋଜନ ଗ୍ରହଣ କରି ନ ଥିଲୁ ମାତ୍ର ଅନ୍ୟମାନଙ୍କ ଠାରୁ ଶୁଣିବାକୁ ପାଇଲୁ ଖାଦ୍ୟ ଉତ୍ତମମାନର ନ ଥିଲା । ଅଗନା ଅଗନି ବନସ୍ତରେ, ହିମାଳୟ ପାର୍ଶ୍ୱରେ ଏହିଭଳି ଅବ୍ୟବସ୍ଥା ବିଷୟରେ ଅଧିକ ଆଲୋଚନା ନ କରି ଶୀଘ୍ର ସେହି ସ୍ଥାନ ଛାଡ଼ିବାକୁ ଠିକ୍ ମନେ କଲୁ ।

### ତା. ୦୧.୧୦.୨୦୧୦, ଶୁକ୍ରବାର

ବର୍ତ୍ତମାନ ସେତେ ବୁଲା ବଙ୍କା ରାସ୍ତା ନ ଥିଲା, ପ୍ରାୟ ଅର୍ଦ୍ଧ ସମତଳ କହିଲେ ଚଳିବ । ରାସ୍ତାରେ ସେହି 'ନରକଟା ପୋଲ' ନିକଟରେ ମଧ୍ୟାହ୍ନ ପ୍ରସାଦ ସେବନ । ନିକଟସ୍ଥ ଝରଣାରେ ନିତ୍ୟକର୍ମ ସମାପନ ପରେ ବସ୍ ଯାତ୍ରା ଆରମ୍ଭ । ରାସ୍ତାରେ ଗେଟ୍ ପାର ହେବା ସମୟ ଅପରାହ୍ନ ୨ଟା ପରେ ଥିବାରୁ କିଛି ସମୟ ପାଇଁ ଅଟକିବାକୁ ହେଲା । ହିମାଳୟର ପ୍ରାକୃତିକ ସୌନ୍ଦର୍ଯ୍ୟ, ଭାଗୀରଥୀଙ୍କର ଅପେକ୍ଷାକୃତ ଶିଥିଳ ସ୍ରୋତ ପ୍ରବାହ, ସ୍ଥାନେ ସ୍ଥାନେ ଦୁର୍ଘଟଣାଗ୍ରସ୍ତ ଯାନବାହନର ବିକଟାଳ କରୁଣ ଦୃଶ୍ୟ, ଆଗପଛ ସିଟ୍ ପାଇଁ ତୀର୍ଥଯାତ୍ରୀଙ୍କର ପାଟିତୁଣ୍ଡ ଉପଭୋଗ କରି କରି ସଂଧ୍ୟା ୫ଘ. ୩୦ମିରେ ଗାଡ଼ି ଅଟକିଲା ଋଷିକେଶ ବଜାରରେ । ବସ୍ ରହିବା ସ୍ଥାନରୁ ୧କି.ମି ଗଲେ ଗୀତାଭବନ । ଗୀତାଭବନ ଠାରୁ ୧କି.ମି. ଗଲେ ଲଛମନ ଝୁଲା । ଅବସନ୍ନ ଶରୀରରେ ମନର ଆଗ୍ରହରେ ବାହାରି ପଡ଼ିଲୁ । ସମୟ ଦିଆଯାଇଥିଲା ୧ଘ. ୩୦ମି. । ଲଛମନ ଝୁଲା ଅତିକ୍ରମ କରି ସେ ପାରିରେ ଥିବା ପ୍ରାଚୀନ ରଘୁନାଥ ମନ୍ଦିରରେ ସଂଧ୍ୟା ଆରତୀ ଦର୍ଶନ କଲୁ । ଋଷିକେଶର ଆକର୍ଷଣୀୟ ବଜାରରେ ନ ଅଟକି ଶୀଘ୍ର ଫେରିବା ପାଇଁ କର୍ତ୍ତୃପକ୍ଷଙ୍କ କଡ଼ା ନିର୍ଦ୍ଦେଶ ଥିଲା । ତଥାପି ନିର୍ଦ୍ଧାରିତ ସମୟର ୧/୨ ଘଣ୍ଟା ପରେ ସମସ୍ତ ଯାତ୍ରୀଙ୍କ ପ୍ରତ୍ୟାବର୍ତ୍ତନ ପରେ ବସ୍ ଚାଲିଲା ହରିଦ୍ୱାର ଅଭିମୁଖେ । ହରିଦ୍ୱାରରେ ପହଞ୍ଚିଲା ବେଳକୁ ରାତି ୮ ଘଣ୍ଟା । ପୂର୍ବଦିନର ରୁମ୍ ଦେବା ପାଇଁ ଠିକ୍ ହୋଇଥିଲେ ମଧ୍ୟ ସେହି ଧର୍ମଶାଳାର ମାଲିକଙ୍କ ଦ୍ୱାରା କିଛି ବ୍ୟତିକ୍ରମ ଘଟିଲା । ଯାହାହେଉ ତିନି ମହଲା ଉପରେ ପୁଣି ରୁମ୍ ମିଳିଲା । ସେଠାକାର ରୁମ୍ ବ୍ୟବସ୍ଥାରେ ଦୁଇଟି ଅଲଗା ଅଲଗା ରୁମ୍ ଦୁଇଟି ପରିବାର ପାଇଁ ଗୋଟିଏ ଟଏଲଟ୍ ଗଲାବେଳେ ଓ ଫେରିଲା ବେଳର ରୁମ୍‌ରେ ଦୁଇଟି ଦୁଇଟି ରୁମ୍, ମୁଖ୍ୟ ଫାଟକ ଗୋଟିଏ ଶୌଚାଳୟ ଦୁଇଟି । ପୂର୍ବ ସାଥୀ ଶ୍ରୀ ପଢ଼ିଆଳୀ ଦମ୍ପତି ମଧ୍ୟ ସେ ଦିନ ଆମ ସହିତ ରହିଥିଲେ । ଦ୍ୱାରଦେଶରେ ଚା' ପାନ ଓ ବଂଧୁ ଶଙ୍ଖୋଳା (ଆମ ଗାଁ ପାଖର) ପରେ କିଛି ମଇଳା ଲୁଗାପଟା ସଫା ପରେ ରାତ୍ରି ପ୍ରସାଦ ସେବନ ଓ ବିଶ୍ରାମ ।

### ତା. ୦୨.୧୦.୨୦୧୦, ଶନିବାର

ସକାଳ ୬ଟାରେ ଅଟୋ ଦ୍ୱାରା ଗଂଗା ସ୍ନାନ ପାଇଁ ବାହାରି ପଡ଼ିଲୁ । ସେଠାକାର ବଡ଼ ଅଟୋରେ ସେ ଦିନ ଆମ ସାଥୀ ଥିଲେ ଖଲ୍ଲିକୋଟର ଅବସରପ୍ରାପ୍ତ ଶିକ୍ଷକ ଶ୍ରୀ ନାରସୁ ବେହେରା ଓ ତାଙ୍କ ଧର୍ମପତ୍ନୀ (ସେ ଆମ ପ୍ରଧାନ ଶିକ୍ଷକ

ଶ୍ରୀ ସୂର୍ଯ୍ୟକାନ୍ତ ଷଡ଼ଙ୍ଗୀଙ୍କର ପରିଚିତ) ବେହେରା ସାର୍‌ଙ୍କ ସମୁଦି, ସମୁଦୁଣୀ, ଶ୍ରୀମତୀ ଓ ଶ୍ରୀ ସେନାପତି, ଭଂଜନଗର ନିବାସୀ ବର୍ତ୍ତମାନ ଭୁବନେଶ୍ୱରରେ ରହୁଥିବା ଶ୍ରୀମତୀ ଓ ଶ୍ରୀ ସ୍ୱାଇଁ ବାବୁ । "ହରକି ପେଢ଼ୀ" ନିକଟରେ ପହଞ୍ଚି ଗଙ୍ଗା ସ୍ନାନ, ସୂର୍ଯ୍ୟଙ୍କୁ ଜଳଦାନ କରି ମଜା ମଜଲିସ୍‌ରେ ବାହାରି ପଡ଼ିଲୁ ମନସା ଦେବୀ ମନ୍ଦିର ଦର୍ଶନରେ । ବୈଦ୍ୟୁତିକ ଚେୟାର୍ ସାହାଯ୍ୟରେ ମା ମନସା ଦେବୀ ମନ୍ଦିର ଦର୍ଶନ କଲୁ । ବେଢ଼ା ପରିକ୍ରମା କଲୁ । ସୁରକ୍ଷା ଦାୟିତ୍ୱରେ ରହିଥିବା ଓଡ଼ିଆ ଯୁବକଙ୍କ ସହ ବାର୍ତ୍ତାଳାପ କଲୁ ଓ ତଳକୁ ଓହ୍ଲାଇଲୁ । ବେହେରା ସାର୍ ଘର କିଣାକିଣିରେ ବ୍ୟସ୍ତ ରହିବାରୁ ସେମାନଙ୍କୁ ଅଧଘଣ୍ଟା ଅପେକ୍ଷା କଲୁ । କିଣା କିଣିରେ ବେହେରା ସାର୍‌ଙ୍କ ସଉକ ଓ ସକ୍ଷମ ବିଷୟରେ ପଦେ କହିଲେ ଠିକ୍ ହେବ । ସେମାନେ ବଂଧୁ ବଂାଧବଙ୍କ ପାଇଁ ମୋଟ ୩୨ ଗୋଟି କମ୍ବଳ, ତା' ତୁଳନାରେ ହାର, ଲକେଟ୍, ମୁଦି, କିଣିଥିଲେ । ଏସବୁ ଶୁଣି ଆମକୁ ଇଚ୍ଛା ହେଉଥିଲେ ମଧ୍ୟ କିଣି ବୋହିବା କଥା ମନେପକାଇ ନିଜକୁ ଅସହାୟ ମନେକରୁଥିଲୁ । ବସାରେ ଦିନ ୧୧ଘ.ରେ ପହଞ୍ଚିଲୁ । ସେ ଦିନର ପ୍ରସାଦ ପ୍ରସ୍ତୁତି ସ୍ୱତନ୍ତ୍ର ଥିଲା । ପରିବା ବିରିଆନୀ, ସନ୍ତୁଳା, ସାଲାଡ୍ ଇତ୍ୟାଦି ନୂଆ ନୂଆ ବ୍ୟଞ୍ଜନ ପ୍ରସ୍ତୁତ ହୋଇଥିଲା । ପ୍ରସାଦ ସେବନର ଏକ ଘଣ୍ଟା ପରେ ହରିଦ୍ୱାର ଦର୍ଶନରେ ନିର୍ଦ୍ଧାରିତ ବସ୍‌ରେ ବାହାରିଲୁ । ପ୍ରଥମେ ପହଞ୍ଚିଲୁ ବାବା ରାମଦେବଙ୍କ ଆଶ୍ରମ - "ପାତଞ୍ଜଳି ଯୋଗ ପୀଠ" । ଆଶ୍ରମର ସୁଉଚ୍ଚ ଅଟ୍ଟାଳିକା, ପ୍ରାକୃତିକ ଔଷଧୀୟ ବୃକ୍ଷ ଉଦ୍ୟାନ, ଚରକ, ସୁଶ୍ରୁତଙ୍କ ଭଳି ଆୟୁର୍ବେଦ ଶାସ୍ତ୍ରୀଙ୍କର ପ୍ରସ୍ତର ନିର୍ମିତ ମୂର୍ତ୍ତି ସର୍ବୋପରି ଅନୁଷ୍ଠାନର କର୍ମଚାରୀଙ୍କର ଭଦ୍ର ବ୍ୟବହାର ମନଲୋଭା ଥିଲା । ପ୍ରତ୍ୟେକ ଭାଷାରେ ଲିଖିତ ବାବା ରାମଦେବଙ୍କ ଲିଖିତ ଛୋଟ ଛୋଟ ପତ୍ରିକା ଭରପୁର ହୋଇ ରହିଛି ସେଠାରେ । ଯିଏ ଯେତେ ନେଇପାରିଲେ ହେଲା । ଯୋଗ ଶିକ୍ଷକ ଓ ଛାତ୍ରୀମାନଙ୍କୁ ବାଣ୍ଟିବା ଉଦ୍ଦେଶ୍ୟରେ କେତେ ଖଣ୍ଡ ଆଣିବାକୁ ଇଚ୍ଛା ହେଉଥିଲେ ମଧ୍ୟ OTV Oriya Channel "The great Orissa Political Circus"ର ସଂଗ୍ରାମ ବାବୁଙ୍କ ଉକ୍ତି ଅନୁଯାୟୀ 'B' - 'B' ମାନେ Bohiba Bhaya (ବୋହିବା ଭୟ) ଥିଲା । ବଡ଼ କଷ୍ଟରେ ମନକୁ ବୁଝାଇ ୨/୪ ଖଣ୍ଡ ଧରି ଗାଡ଼ି ଚଢ଼ିଲୁ । ଦ୍ୱିତୀୟରେ ଆସିଲା ସୋମେଶ୍ୱର ଧାମ । ଦକ୍ଷ ପ୍ରଜାପତିଙ୍କର ଯଜ୍ଞକୁଣ୍ଡରେ ସତୀ ଦେବୀ ଦେହତ୍ୟାଗ କରିଥିବା ଧାମ । ବଳୀୟାନ୍ କେତେଜଣ ଯାତ୍ରୀ ସପ୍ତ ମହଲା ବିଶିଷ୍ଟ ଏହି ତୀର୍ଥସ୍ଥଳକୁ ଯିବା ପାଇଁ ବାହାରିଲେ, ଆମ ଭଳି କେତେଜଣ ବସ୍‌ରେ ଥାଇ ପ୍ରଣାମ ଜଣାଇଲୁ । ତୃତୀୟରେ "ଗଂଗାଜୀଙ୍କ ଆରତୀ" । ବସ୍ ପାର୍କିଙ୍ଗ ସ୍ଥାନରୁ ଗଂଗା କୂଳେ କୂଳେ (ସିମେଣ୍ଟ ଚଟାଣ) ୧.୧/୨ କି.ମି ଗଲେ ଓ ଅନ୍ୟୁନ

୫୦ ଗୋଟି ପାହାଚ ଚଢ଼ି ପୁଣି ଓହ୍ଲାଇଲେ "ହର କୀ ପେଡ଼ି" ନିକଟରେ ପହଞ୍ଚିବାକୁ ହେବ, ଯେଉଁଠି ଗଂଗା ମାତାଙ୍କର ଆରତୀ ନିକଟରୁ ଦେଖି ହେବ । ଆମର ତ ସବୁଠାରେ C.C (Chadhiba Chinta) କ'ଣ କରିବୁ, କିଛି ଭାବିପାରିଲୁ ନାହିଁ । ଇତ୍ୟବସରରେ ଆମର ସାଥୀ ହେଲେ ବ୍ରହ୍ମପୁର ରାମକୃଷ୍ଣ ନଗରର ଶ୍ରୀମତୀ ଓ ଶ୍ରୀ ସାହୁ ବାବୁ । ଆମେ ଦୁଇ ପରିବାର ଦୂରରୁ ଗଙ୍ଗା ଆରତୀ ଦର୍ଶନ କରିବା ପାଇଁ ଠିକ୍ କଲୁ । ଫୁଲ, ଧୂପ ଓ ଦୀପରେ ଗଙ୍ଗାମାତାଙ୍କର ସଂଧ୍ୟା ଆରତୀ କଲୁ । ସାହୁ ଦମ୍ପତିଙ୍କର ସହ କଥାବାର୍ତ୍ତା ହେଲା ବେଳକୁ ଜାଣିବାକୁ ପାଇଲୁ ସେ ଆମ ପ୍ରଭାତୀର ୰ସତ୍ୟ ସାହୁ ମାମୁଁଙ୍କର ଶାଳକ । ଆମ ଭିତରେ ଏତେ ନିକଟ ସଂପର୍କ, ଡ଼େରିରେ ପରିଚୟ ମିଳୁଛି । ପୁଣି ଆଶ୍ରମକୁ ଫେରି ରାତ୍ରି ପ୍ରସାଦ ସେବନ କରି ଷ୍ଟେସନ ଅଭିମୁଖେ ଯାତ୍ରା କଲୁ । ରାତି ୮ଘ. ୨୫ ମି.ରେ ଆମେ ବସିଥିବା ଡୁନ୍ ଏକ୍ସପ୍ରେସ୍ ଅଯୋଧ୍ୟା ଅଭିମୁଖେ ଗତି କଲା । ଭଗବାନଙ୍କର ଅପାର କରୁଣାରୁ ହିମାଳୟରୁ ଖସିବା ପରେ ଆମ ଆଖିଧରା କମିଯାଇଥିଲା ।

### ତା. ୦୩. ୧୦. ୨୦୧୦, ରବିବାର

ଅଯୋଧ୍ୟା ଷ୍ଟେସନରେ ଦିନ ୧୧ଘ. ୪୦ମି.ରେ ପହଞ୍ଚିଲୁ । ରାମ-ଜନ୍ମଭୂମି-ବାବ୍‌ରୀ ମସ୍‌ଜିଦ୍ ପ୍ରସଙ୍ଗରେ ସୁପ୍ରିମ କୋର୍ଟର ଶୁଣାଣି ୩୦.୦୯.୨୦୧୦ରେ ଥିଲା । ତେଣୁ ସୁରକ୍ଷା ଦୃଷ୍ଟିରୁ ଅଯୋଧ୍ୟାରେ ୧୪ ହଜାର ପୁଲିସ୍‌ଙ୍କର ଛାଉଣୀ ପଡ଼ିଥାଏ । ଅଯୋଧ୍ୟାର ଗଳି କନ୍ଦି ଭିତରେ ଥିବା ଧର୍ମଶାଳାରେ ବସ୍‌ରେ ପହଞ୍ଚିବା ସୁବିଧା ନ ଥିବାରୁ ଷ୍ଟେସନରୁ ଅଟୋରେ ଯିବା ବ୍ୟବସ୍ଥା କରାଗଲା । ଆମ ପାଇଁ ଅଯୋଧ୍ୟାରେ "ହନୁମାନ ବାଗ" ନାମକ ଏକ ବିରାଟ ଧର୍ମଶାଳା ବ୍ୟବସ୍ଥା ହୋଇଥିଲା । ସେଠାରେ ଥିବା ସାଧାରଣ ସଭା ଗୃହରେ ପୁରୁଷମାନଙ୍କ ପାଇଁ ଓ ଦୁଇ ଜଣିଆ ରୁମ୍‌ରେ ୩ଜଣ ମହିଳା ମାନଙ୍କ ରହିବା ପାଇଁ ସୁବିଧା କରାଗଲା, ସେଦିନ ମୋର ରୁମ୍ ସାଥି ଥିଲେ ନିରାକାରପୁରର ୨ଜଣ ଧର୍ମ ପରାୟଣା ମହିଳା । ସେମାନେ ୨ଭଉଣୀ ଓ ୨ ସମୁଦୁଣୀ ମଧ୍ୟ । କଥା ପ୍ରସଙ୍ଗରେ ସେମାନେ ଜରଡ଼ା-ପାତ୍ରପୁରରେ ଚାକିରୀ ଆଳରେ କିଛି ଦିନ ରହିଥିଲେ ବୋଲି ଜାଣିବାକୁ ପାଇଲି । ବନ୍ଧୁ ପରିଚୟ ମିଳିଗଲା । ସ୍ନାନାଦି ନିତ୍ୟକର୍ମ ସମାପନ ପରେ ମଧ୍ୟାହ୍ନ ପ୍ରସାଦ ସେବନ କରି ନଗର ପରିକ୍ରମା ପାଇଁ ବାହାରି ପଡ଼ିଲୁ । କୀର୍ତ୍ତନ ମଣ୍ଡଳୀ ସହ ଦର୍ଶନର ବ୍ୟବସ୍ଥା କରାଯାଇଥିଲେ ମଧ୍ୟ ନିରାପତ୍ତା ଦୃଷ୍ଟିରୁ ପାଦରେ ଚାଲି ଚାଲି ନ ଯାଇ ଅଟୋରେ ଯିବା ପାଇଁ ଇସ୍କନ ପ୍ରଭୁ ନିର୍ଦ୍ଦେଶ ଦେଲେ । ଦିନ ୩ଘ. ୩୦ମି.ରେ ସ୍ୱାଇଁ ବାବୁଙ୍କର

ଦୁଇଜଣ, ବେହେରା ବାବୁଙ୍କର ୪ ଜଣ ଓ ଆମେ ଦୁଇଜଣ ମିଶି ଗୋଟିଏ ଅଟୋରେ ବାହାରି ପଡ଼ିଲୁ । ପ୍ରଥମ ଲକ୍ଷ୍ୟ ସ୍ଥଳ ରାମ ଜନ୍ମଭୂମି ରାମଲାଲାଙ୍କ ମନ୍ଦିର । ଆଶ୍ରମରୁ ଅଟୋରେ ଯେତେ ବାଟ ଯାଇଥିଲୁ (ପ୍ରାୟ ୪କି.ମି) ସେତିକି ବାଟ ୬ ଥର ପୁଲିସ୍‌ର ଜେରା ପରେ (ପୁରୁଷ ଓ ମହିଳା ରାସ୍ତା ଅଲଗା ଅଲଗା) ଯାତ୍ରୀମାନଙ୍କରଛୁଞ୍ଚ୍ ମାଛି ପରୀକ୍ଷା ପରେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ଯାହା ଦେଖିଲୁ ଛାତି ଫାଟିଲା ପରି ଲାଗିଲା । ଆଗରୁ ଶୁଣିଥିଲୁ, ଟି.ଭିରେ ଦେଖିଥିଲୁ - ଆମ ରାମଲାଲା ତ୍ରିପାଲରେ ଅଛନ୍ତି - ଏବେ ଆଖିରେ ତାହା ଦେଖିଲୁ । ରାମଲାଲାଙ୍କ ଆସ୍ଥାନ ଓ ଯାତ୍ରୀ ଦର୍ଶନ ସ୍ଥାନ ଭିତରେ ଏତେ ବ୍ୟବଧାନ ଥିଲା ଯେ ଆମେ ସିଂହାସନରେ କି ବେଶରେ ଆମ ଠାକୁର ଅଛନ୍ତି ଭଲକରି ଜାଣିପାରିଲୁ ନାହିଁ । ସେଠାକାର ଚେନାଏ ମାଟି ଶ୍ରୀମତୀ ସ୍ୱାଇଁ ରୁମାଲ୍‌ରେ ପୁରାଇଲା ବେଳେ ହଠାତ୍ ଜଣେ ମହିଳା ପୁଲିସ୍ ଫୋପାଡ଼ିଦେବା ପାଇଁ କଡ଼ା ନିର୍ଦ୍ଦେଶ ଦେଲେ । ପର୍ବତ ଆକାରରେ ମନ୍ଦିର ତିଆରି ସାମଗ୍ରୀ ସଜା ହୋଇ ରଖାଯାଇଛି, ଅନୁମାନ କଲୁ ସୁପ୍ରିମକୋର୍ଟର ଆଦେଶ ପାଇବା ମାତ୍ରେ ବୋଧହୁଏ ରାତାରାତି ମନ୍ଦିର ଠିଆ ହୋଇଯିବ । ମାତ୍ର ବର୍ତ୍ତମାନ ଠାରୁ ୩ ମାସ ଅପେକ୍ଷା କରିବାକୁ ହେବ । ସେହି ସମୟ ପରେ କ'ଣହେବ ସେହି ରାମଲାଲା ହିଁ ଜାଣନ୍ତି । ନିକଟରେ ଥିବା ଭଙ୍ଗା ବାବ୍ରି ମସଜିଦ୍‌କୁ ଆବୃତ କରାଯାଇଛି । ସ୍ପଷ୍ଟ ଭାବରେ ଦେଖିପାରିଲୁ ନାହିଁ । କଡ଼ା ସୁରକ୍ଷା ପାରହୋଇ ଫେରିଲା ବେଳେ ରାମଚନ୍ଦ୍ରଙ୍କର ଓ ଭାଇ ମାନଙ୍କର ସ୍ୱତନ୍ତ୍ର ଭବନ, ଦଶରଥ ଭବନ, ତିନିରାଣୀଙ୍କର ଅନ୍ତଃପୁର, କୈକେୟୀ କୋପ ଭବନ, ସୀତା ରୋଷେଇଶାଳ, ଲବକୁଶ ଭବନ, ଦଶରଥଙ୍କ ଦରବାର ଇତ୍ୟାଦି ପ୍ରାଚୀନ କୀର୍ତ୍ତି କେତୋଟି କେଉଁଠି ବାହାରୁ କେଉଁଠି ଭିତରକୁ ଯାଇ ଦେଖିଲୁ, ତା' ପରେ ପହଞ୍ଚିଲୁ "ବଡ଼ା ହନୁମାନ ମନ୍ଦିର" ଅଯୋଧାରେ ଅଗଣିତ ହନୁମାନ ମନ୍ଦିର କିନ୍ତୁ ଏହି ମନ୍ଦରଟି ସବୁଠାରୁ ବଡ଼ । "ତୁଳସୀ ମାନସ ମନ୍ଦିର" - ଯେଉଁଠାରେ ଗୋସ୍ୱାମୀ ରାମ ଚରିତ ମାନସ ରଚନା କରିଥିଲେ ବୁଲି ଦେଖିଲୁ । ଅନ୍ୟ କେତୋଟି ଛୋଟ ବଡ଼ ରଘୁନାଥ ଓ ହନୁମାନ ମନ୍ଦିର ଯାଇ ସଂଧ୍ୟାରେ ହନୁମାନ ବାଗ୍ ଫେରିଲୁ । ସେହି ଧର୍ମଶାଳାର ମନ୍ଦିରରେ ସଂଧ୍ୟ ଆଳତୀ ଦର୍ଶନ କଲୁ । କୀର୍ତ୍ତନରେ ଭାଗ ନେଲୁ, ପରେ ଜାଣିଲୁ, ସରଜୁ ନଦୀ ଅତି ପାଖରେ ମାତ୍ର ସରଜୁ ସ୍ନାନରୁ ବଞ୍ଚିତ ହୋଇଥିବାରୁ ଭାଗ୍ୟକୁ ଦୋଷ ଦେଇ ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ ।

## ତା. ୪.୧୦.୨୦୧୦, ସୋମବାର

ନିତ୍ୟକର୍ମ ଶେଷ କରି ଧର୍ମଶାଳାର ଦ୍ୱାରଦେଶର ଥିବା ଚା' ଦୋକାନରୁ ସ୍ୱାଦିଷ୍ଟ ଚା' ପାନ ପରେ ଅଟୋ ଯୋଗେ ସକାଳ ୭ଘ.ରେ ଷ୍ଟେସନରେ ପହଞ୍ଚିଲୁ । ଅନ୍ୟ ଏକ ରହିବା ସ୍ଥାନ ବିଡ଼ାଳ ଧର୍ମଶାଳାରେ ଆମ ଭିତରୁ ରହିଥିବା ଯାତ୍ରୀମାନଙ୍କ ସହ ଗତରାତିର ଅନୁଭୂତି ବିଷୟ ଆଲୋଚନା କରିବା ସମୟରେ ଦିନ ୯ଘ. ୧୦ମି.ରେ ରେଳ ଆସି ପହଞ୍ଚିଯାଇଥିଲା । ମଥୁରା ଏକ୍ସପ୍ରେସ୍ ନିର୍ଦ୍ଧାରିତ ସମୟରେ ବାରାଣସୀ ଅଭିମୁଖେ ଯାତ୍ରା କଲା । ବନାରସରେ ପହଞ୍ଚିଲା ବେଳକୁ ସମୟ ୧୨ଘ. ୪୦ମି. ହୋଇଥିଲା । "ହନୁମାନ ବାଗ୍" ରେ ପ୍ରସ୍ତୁତ ହୋଇଥିବା ପ୍ରସାଦ ଟ୍ରେନ୍‌ରେ ଗ୍ରହଣ କଲୁ । କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶକ୍ରମେ ଷ୍ଟେସନରୁ ଅଟୋରେ ଖଣ୍ଡେଲୱାଲଙ୍କ ମୁମକ୍ଷୁ ଧର୍ମଶାଳାରେ ପହଞ୍ଚିଲୁ । ସେଠାରେ ଆମ ପାଇଁ ଦୁଇଟି ଏକୁଟିଆ କୋଠରୀ ଓ ଗୋଟିଏ ଶୌଚାଳୟର ବ୍ୟବସ୍ଥା ହୋଇଥିଲା । ସେ ଦିନ ଆମର ରୁମ୍ ସାଥୀ ଥିଲେ ସେନାପତି ଦମ୍ପତି, ଷ୍ଟେସନରୁ ଆସିଥିବା ଅଟୋ ସହ 'ବନାରସ' ଦର୍ଶନ କରିବା ପାଇଁ ଠିକ୍ କରିଥିଲୁ । ବସାରେ ଜିନିଷପତ୍ର ରଖି ମୁହଁ ହାତ ଧୋଇ ସଂଗେ ସଂଗେ ବାହାରିପଡ଼ିଲୁ । ପ୍ରଥମେ ପହଞ୍ଚିଲୁ ଭାରତ ବିଖ୍ୟାତ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ । ପ୍ରାତଃ ସ୍ମରଣୀୟ ମଦନମୋହନ ମାଲବ୍ୟଙ୍କ ବିଷୟରେ ଆଲୋଚନା କରି କରି ଅଟୋରେ ବସି ବିଶ୍ୱବିଦ୍ୟାଳୟ ପରିକ୍ରମା କଲୁ । ବିରାଟ ଆୟତନ ମଧ୍ୟରେ ଅବସ୍ଥିତ BHU । ପ୍ରଥମ ଶ୍ରେଣୀ ଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଶିକ୍ଷା ବ୍ୟବସ୍ଥା ଓ ସମସ୍ତ ପ୍ରକାର ବୃତ୍ତି ଓ ଧନ୍ଦାମୂଳକ ଶିକ୍ଷା କେନ୍ଦ୍ରର ଏକତ୍ର ସମାହାର ସେଠାରେ ଲକ୍ଷ୍ୟ କଲୁ । ସୁନ୍ଦର ଶ୍ରେଣୀ ଗୃହ, ପକ୍‌କା ରାସ୍ତା, ସୁରମ୍ୟ ଉଦ୍ୟାନ, ରାସ୍ତାର ଉଭୟ ପାର୍ଶ୍ୱରେ ଛାୟା ପ୍ରଦାନକାରୀ ବୃକ୍ଷର ନୈସ୍ୱର୍ଗିକ ଶୋଭା, ସର୍ବୋପରି ବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ଛାତ୍ର ଛାତ୍ରୀମାନଙ୍କର ମୁକ୍ତ ଆକାଶର ବିହଙ୍ଗ ପରି ବିଚରଣ, ଆମକୁ ଛାତ୍ରଟିଏ ହୋଇଯିବା ପାଇଁ ଇଚ୍ଛା ପୋଷଣ କରୁଥିଲା । ଛାତ୍ର ଛାତ୍ରୀମାନଙ୍କର ହସକୌତୁକ, ଖେଳକୁଦ ପଣ୍ଡିତ ନୀଳକଣ୍ଠଙ୍କର ଉକ୍ତିକୁ ମନେ ପକାଇ ଦେଉଥିଲା । ମନେ ମନେ ଭାବୁଥିଲୁ "ବୁଝାଇ ଦେବ କି ବାଳକେ ! ଆଜି ବୁଝିବି ମୁହିଁ, ଶିଖାଉଛି ନିତି ଶିଖିବି ଆଜି ପରାଣ ଦେଇ" । ତା'ପରେ ନୂତନ ବିଶ୍ୱନାଥ ମନ୍ଦିର । ମାର୍ବଲ ନିର୍ମିତ ମନ୍ଦିର ପ୍ରବେଶ ଦ୍ୱାର ମନୋରମ । ସମଗ୍ର ଗୀତାର ଶ୍ଳୋକ କାନ୍ଥ ଦେହରେ ମାର୍ବଲ ପ୍ରସ୍ତରରେ ଲିଖିତ । ଆଧୁନିକ କାରୁକାର୍ଯ୍ୟ ଶୈଳୀରେ ନିର୍ମିତ ମନ୍ଦିର । ପାର୍ଶ୍ୱ ଦେବ ଦେବୀ ଶ୍ରୀ ଲକ୍ଷ୍ମୀ, ସରସ୍ୱତୀ, ଗଣେଶ ଓ ପାର୍ବତୀ ପ୍ରତିମା ଚମତ୍କାର । ସେଠାରେ ପୂଜା ଅର୍ଚ୍ଚନା ପରେ ଫାଟକ ସମ୍ମୁଖୀନ ଦକ୍ଷିଣ ଭାରତୀୟ ହୋଟେଲରେ

ଜଳଖିଆ ଖାଇ ଯାତ୍ରାରମ୍ଭ କଲୁ । ତା'ପରେ ପହଞ୍ଚିଲୁ ମଣିକର୍ଣ୍ଣିକା ଘାଟରେ । ଛୋଟ ଛୋଟ ଗଳିର ସହର ବାରାଣାସୀ । ଏପରିକି ଅଟୋରେ ଯିବା ମଧ୍ୟ କଷ୍ଟକର । ରାସ୍ତାରେ ଦୁଇକଡ଼ରେ ସୁସଜ୍ଜିତ ଶବ ମାନଙ୍କର ଲମ୍ବା ଧାଡ଼ି । ପବନରେ ଭାସି ଆସୁଥାଏ ଶବ ଦାହର ଉତ୍କଟ ଗନ୍ଧ । ଗନ୍ଧରୁ ମୁକ୍ତି ପାଇଁ ସୁବାସିତ ଅଗରବତୀର ମହକ ଭାସି ଆସୁଥାଏ । ଦେଖିବାକୁ ଇଚ୍ଛା ହୋଇଥିଲେ ମଧ୍ୟ ଅଜଣା ଶିହରଣରେ ଶବ ଗୁଡ଼ିକ ଉପରୁ ବାଧ୍ୟ ହୋଇ ଆଖି ଯୋଡ଼ିକ ଫେରି ଆସୁଥିଲା । ମଣି କର୍ଣ୍ଣିକା ଘାଟର ପାଣି ମୁନ୍ଦାଏ ମଥାରେ ସିଞ୍ଚି ବାହାରିଲୁ ଗଙ୍ଗା ଘାଟକୁ । ସେଠାରୁ ଡ଼ଙ୍ଗାରେ ଯାଇ କାଶୀ ବିଶ୍ୱନାଥଙ୍କ ଦର୍ଶନ କରିବାକୁ ଅଟୋବାଲା ଜଣାଇଲେ । ସେଠାରେ ଆମର ଅନ୍ୟଯାତ୍ରୀମାନଙ୍କ ସହ ମିଶିଲୁ । ବାର ଜଣ ଯାତ୍ରୀ, ମୁଣ୍ଡପିଛା ଏକ ଶହ ଟଙ୍କା ଲେଖାଏଁ ଦେଇ ଅଧ ଘଣ୍ଟାଏ ଗଂଗା ନଦୀରେ ନୌ-ବିହାର କଲୁ, ନୌ-ବିହାର ସମୟରେ ଅହଲ୍ୟାବାଇ ଘାଟ, ଶୈବ୍ୟାଘାଟ, ହରିଶ୍ଚନ୍ଦ୍ର ଘାଟ, (୩/୪ଟି ଶବ ଦାହର ଦୃଶ୍ୟ) କେତେ ଜଣ ମାରଓ୍ୱାଡ଼ିଙ୍କ ନାମରେ ଥିବା ଘାଟ ଇତ୍ୟାଦି ଦର୍ଶନ କଲୁ । ହିମାଳୟର ଉପର ମୁଣ୍ଡରେ ପ୍ରବଳ ବର୍ଷା ହୋଇଥିବାରୁ ଜଳ ସ୍ରୋତରେ ଛୋଟ ବଡ଼ ଗଛ ଭାସି ଆସୁଥିବାର ଦେଖିଲୁ । ଡ଼ଙ୍ଗାରୁ ଓହ୍ଲାଇ ବିନା ଚପଲରେ ବାହାରି ପଡ଼ିଲୁ ଜ୍ୟୋତିର୍ଲିଙ୍ଗ ବାବା କାଶୀ ବିଶ୍ୱନାଥଙ୍କ ଦର୍ଶନରେ । ଗଳି କନ୍ଦି, ସୁଡ଼ଙ୍ଗ, କୁକୁର ବସ୍ତି ପାର ହୋଇ, ଉତ୍ତର-ପ୍ରଦେଶ ସରକାରଙ୍କ ଅବହେଳାକୁ ଗାଳି କରି କରି ମନ୍ଦିର ସାମନା ବଜାରରେ ପ୍ରବେଶ କଲୁ । ପୂଜା ସାମଗ୍ରୀ କିଣି ଲମ୍ବା ଧାଡ଼ିରେ ଦର୍ଶନ ପାଇଁ ଅପେକ୍ଷା କଲୁ । ମାତ୍ର କେତେ ସେକେଣ୍ଡ ଭିତରେ ଠାକୁରଙ୍କୁ ଦର୍ଶନ କରି ପୁଲିସର କଡ଼ା ନିର୍ଦ୍ଦେଶରେ ବାହାରକୁ ବାହାରି ଆସିଲୁ । ବାହାରେ ଆସି ପୁଲିସଙ୍କ ଠାରୁ ଶୁଣିଲୁ ମନ୍ଦିର ଶୋଧନ ପରେ 'ସପ୍ତର୍ଷି ପୂଜା' ଅନୁଷ୍ଠିତ ହେବ । 'ସପ୍ତର୍ଷି ପୂଜା' ସମ୍ବନ୍ଧରେ ଜାଣିବାକୁ ପ୍ରବଳ ଇଚ୍ଛା ଥିଲେ ମଧ୍ୟ ରାତି ବଢୁଥିବାରୁ ଓ ଡ଼ଙ୍ଗାକୁ ଶୀଘ୍ର ଫେରିବାର କଡ଼ା ଆଦେଶ ଡ଼ଙ୍ଗା ବାଲାଠାରୁ ପାଇଥିବାରୁ ସନ୍ଦେହୀ ମନ ନେଇ ଡ଼ଙ୍ଗାରେ ବସିଲୁ । କିନ୍ତୁ ଡ଼ଙ୍ଗା ଛାଡ଼ିବାକୁ ହେଲା ନାହିଁ । ଆମ ସହଯାତ୍ରୀ ବାଣପୁରର ଗୋଦାବରୀଶ ବିଦ୍ୟାପୀଠର ଅବସର ପ୍ରାପ୍ତ ଶିକ୍ଷକ ଶ୍ରୀଯୁକ୍ତ ମହାପାତ୍ର ଓ ତାଙ୍କ ସହଧର୍ମିଣୀଙ୍କ ଅପେକ୍ଷାରେ ରହି ଗଙ୍ଗାମାତାଙ୍କର ସୂର୍ଯ୍ୟାସ୍ତକାଳୀନ ଶୋଭା ଦର୍ଶନ କଲୁ । ଅଧ ଘଣ୍ଟା ଅପେକ୍ଷା କଲାପରେ ଶେଷରେ ଡ଼ଙ୍ଗା ପିଲା ଯାଇ ସେହି ଦୁଇ ଜଣଙ୍କୁ ଧରି ଆଣିବାରୁ ନୌ-ଯାତ୍ରା ଆରମ୍ଭ ହେଲା । ସେହି 'ସପ୍ତର୍ଷି ପୂଜା'ର ସନ୍ଦେହ ତା'ପରଦିନ ଦୂର ହୋଇଥିଲା - ବନାରସ ଷ୍ଟେସନରେ ଆମେ ଟ୍ରେନ୍ ଅପେକ୍ଷାରେ ଥିବାବେଳେ ଦୁଇ ଜଣ ଅଣ-ଓଡ଼ିଆ ନବଦମ୍ପତିଙ୍କ ସହ ସାକ୍ଷାତ

ହେଲା । କିଛି ସମୟ ସେମାନଙ୍କର ଉଦ୍ରେଚିତ ଚାଲିଚଳନ ଅନୁଧ୍ୟାନ କଲାପରେ ସେମାନଙ୍କର ଆସିବା ଓ ଯିବା ସ୍ଥାନ ବିଷୟରେ ପଚାରିବାରୁ ଜଣାଗଲା ଯେ ସେମାନେ ବାଙ୍ଗାଲୋରରେ ରହନ୍ତି । ଉଭୟ IT Company ରେ ଚାକିରୀ କରନ୍ତି । ବିବାହ ପରେ ପ୍ରଥମ ଥର ପାଇଁ ତୀର୍ଥ ଭ୍ରମଣରେ ବାହାରିଛନ୍ତି । ଏଠାରୁ ଗୟା, ଗୟା ପରେ ହରିଦ୍ୱାର ଓ ତା' ପରେ ଦିଲ୍ଲୀ ଯାଇ ସ୍ୱସ୍ଥାନ ଫେରିବେ । ସମୟର ସ୍ୱଳ୍ପତା ଯୋଗୁଁ ଯେଉଁଠି ସମ୍ଭବ ଆକାଶ ପଥରେ ନଚେତ୍ ରେଳପଥରେ ଯାତ୍ରା କରୁଛନ୍ତି । ଗତକାଲି ସେମାନେ ବାବା କାଶୀବିଶ୍ୱନାଥ ମନ୍ଦିରର 'ସପ୍ତର୍ଷି ପୂଜା' ଦେଖିଛନ୍ତି । ସେମାନେ କହିଲେ 'ସପ୍ତର୍ଷି ପୂଜା' ରେ ସାତଜଣ ପୂଜକ ବସି ରୁଦ୍ରାଷ୍ଟକ, ଶିବପଞ୍ଚାକ୍ଷର ସ୍ତୋତ୍ର ଆଦି ମନ୍ତ୍ର ପାଠ କରୁଛନ୍ତି ଓ ପରେ ହୋମ ପୂଜା ଅନୁଷ୍ଠିତ ହୋଇଛି । ସ୍ଥାନ ଅଭାବରୁ ସୀମିତ ସଂଖ୍ୟକ ଯାତ୍ରୀଙ୍କ ପାଇଁ ମୁଣ୍ଡ ପିଛା ଏକ ଶତ ଟଙ୍କା ହିସାବରେ ଟିକଟ ଦର୍ଶନ ବ୍ୟବସ୍ଥା କରାଯାଇଥିଲା । ମନରୁ ସନ୍ଦେହ ଦୂର ହୋଇଥିବାରୁ ଦୂରରୁ ଦେବ ଦେବ ମହାଦେବଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ପ୍ରଣତି ଜଣାଇଲି । ସମସ୍ତ ଯାତ୍ରୀ ଫେରିବା ପରେ ଡ଼ଙ୍ଗା ଛାଡ଼ିଲା, ନିର୍ଦ୍ଦିଷ୍ଟ ଘାଟରେ ଲାଗିବା ପରେ ପୂର୍ବରୁ ଅପେକ୍ଷା କରିଥିବା ଆମ ଅଟୋ ଡ୍ରାଇଭର ସାହାଯ୍ୟରେ ଗଳି କନ୍ଦି ପାରହୋଇ ଅଟୋରେ ବସିଲୁ । ଅଟୋ ଚାଲିଲା ବନାରସ ବଜାର ଦର୍ଶନ ପାଇଁ । ବାଟରେ ବଡ଼ ବଡ଼ ବଜାର ଦେଖିଲୁ । ଅଟୋ ଠିଆ କଲା ବଜାରର ବିରାଟ ବନାରସୀ ଶାଢ଼ୀର ହୋଲସେଲ୍ ଦୋକାନ ନିକଟରେ । ସେଠାରେ ଉଭୟ ପରିବାର (ସେନାପତି ଦମ୍ପତି) ଗଦାଏ ଲୁଗା ପସନ୍ଦ କଲୁ । ଉଭୟଙ୍କର ଅଣ୍ଟା ବ୍ୟଥା ଯୋଗୁଁ ଖଣ୍ଡେ/ଦୁଇଖଣ୍ଡରେ ମନତୃପ୍ତ କରି ଗାଡ଼ି ଚଢ଼ିଲୁ । ତା' ପରେ ଅଟୋବାଲା ନେଇ ପହଞ୍ଚିଲା ପିତ୍ତଳ ଦୋକାନରେ । ସେଠାରେ ମଧ୍ୟ ଆମ ରାଜ୍ୟରେ ମିଳୁ ନଥିବା ଲୋଭନୀୟ ସମାଗ୍ରୀ ଦେଖିଲୁ । ଶାରୀରିକ ଦୁର୍ବଳତା ଆର୍ଥିକ ସ୍ୱଚ୍ଛଳତାକୁ ପରିହାସ କରୁଥିଲା । କିଛିକ୍ଷଣ ପାଇଁ ଏହି ଉଭୟଙ୍କର ଲଢେଇ ଚାଲିଲା କିନ୍ତୁ ଶେଷରେ ମନ ସହିତ ସନ୍ଧି କରି ବସାକୁ ଫେରିଲୁ । ମୁମୁକ୍ଷୁ ଧର୍ମଶାଳାର ନାମକରଣ ସହ ଅବସ୍ଥାର ମଧ୍ୟ ଢ଼େର୍ ସାମଞ୍ଜସ୍ୟ ରହିଥିଲା ପରି ମନେହୁଏ । ନିକଟରେ ଦୋକାନ ବଜାର ନଥିବା ଲକ୍ଷ୍ୟ କରିଥିଲୁ । ତେଣୁ ରାସ୍ତାରେ ଚା'ପାନ କରି ଅନ୍ୟ ଧର୍ମଶାଳାରେ ବିଶ୍ରାମ ନେଇଥିବା ପ୍ରଭୁ ପଦ୍ମଧର ବାବାଙ୍କଠାରୁ ଆସନ୍ତା ରେଳବଗି ନମ୍ବର ସଂଗ୍ରହ କରି ଫେରିଲୁ । ଧର୍ମଶାଳାରେ ପହଞ୍ଚି ତୀର୍ଥଯାତ୍ରୀଙ୍କ ସହ ବାବାଙ୍କ ଦର୍ଶନ ଓ ବଜାର ଭ୍ରମଣ ବିଷୟରେ ଆଲୋଚନା କଲୁ । ଅନ୍ୟ ଧର୍ମଶାଳାରେ ପ୍ରସ୍ତୁତ ହୋଇଥିବା କ୍ଷୀରି ସହ ସ୍ୱାଦିଷ୍ଟ ପ୍ରସାଦ ଗ୍ରହଣ କରି ରାତ୍ରି ବିଶ୍ରାମ ନେଲୁ ।

**୦୫.୧୦.୨୦୧୦, ମଙ୍ଗଳବାର**

ମୁମୁକ୍ଷୁ ଧର୍ମଶାଳା ରହଣିର ଏକ ସ୍ୱତନ୍ତ୍ର ଅନୁଭୂତି ରହିଥିଲା । ଜନ କୋଳାହଳଠାରୁ ଦୂରରେ ବିରାଟ ବିରାଟ ପୁରାତନ ବୃକ୍ଷ ଓ ସୁରମ୍ୟ ଉଦ୍ୟାନର ମନୋହର ପରିବେଶ ମଧ୍ୟରେ କୋଠରୀଗୁଡ଼ିକ ପରସ୍ପର ଠାରୁ ସଂପୂର୍ଣ୍ଣ ଅଲଗା ଅଲଗା ରହିଥିଲା । ଆମେ ସେଠାରେ ୭୦/୮୦ ଜଣ ଯାତ୍ରୀ ରହିଥିଲୁ । ଏକାଠି ନ ହେବା ପର୍ଯ୍ୟନ୍ତ କିଏ କେଉଁ ବ୍ଲକ୍‌ରେ ବା କେଉଁ ବଖରାରେ ରହିଛନ୍ତି ଜାଣି ହେଉନଥିଲା । ସେହିଭଳି ପ୍ରାକୃତିକ ପରିବେଶରୁ ବିଦାୟ ନେଇ ଭୋର ୪ଟାରେ ନିର୍ଦ୍ଧାରିତ ବସ୍ ଯୋଗେ ବନାରସ ଷ୍ଟେସନ୍ ଅଭିମୁଖେ ବାହାରିଲୁ । ବନାରସ ଷ୍ଟେସନରେ ସକାଳ ୬ଘ. ୩୦ମି.ରେ ପୂର୍ବା ଏକ୍ସପ୍ରେସ୍‌ରେ ଚଢ଼ି ଆମର ଲକ୍ଷ୍ୟସ୍ଥଳ ଗୟାରେ ଦିନ ୧୦ଘ. ୩୦ମି.ରେ ପହଞ୍ଚିଲୁ । ଶ୍ରାଦ୍ଧ ଉଦ୍ଦେଶ୍ୟରେ ନିର୍ଦ୍ଧାରିତ ବସ୍ ଯୋଗେ ଫଲ୍‌ଗୁ ନଦୀକୂଳ ଷ୍ଟେସନଠାରୁ ପ୍ରାୟ ୧୦କି.ମି. ହେବ । ବସ୍ ନଦୀ କୂଳରେ ଥିବା ଏକ ପୋଲ ନିକଟରେ ଅଟକିଲା । ବାଟ ପଚାରି ପଚାରି ଆମେ ପାଦ ଚଲା ରାସ୍ତାରେ ଗଳି କନ୍ଦି, କାହା ଘର ବାଡ଼ି ବଗିଚା, ଖଳା ଇତ୍ୟାଦି ୨ କି.ମି ପାର ହୋଇ ଘାଟ ନିକଟରେ ପହଞ୍ଚିଲୁ । ତା'ପରେ ଖୋଜା ଚାଲିଲା "ଓଡ଼ିଶା ଭବନ" । ସମୟ ମଧ୍ୟାହ୍ନ ୧୨ଟା ହୋଇଯାଉଥିଲା । ସେ ଦିନ ସୂର୍ଯ୍ୟଦେବଙ୍କ କିରଣ ଅତି ପ୍ରଖର ଥିଲା । ଶ୍ରାଦ୍ଧକର୍ମ ପାଇଁ ଖାଦ୍ୟ ପାନୀୟ ବନ୍ଦ । ମନୋବଳ ଦୃଢ଼ କରି ସାମ୍ନା ଯାତ୍ରୀଙ୍କୁ ଦେଖି ଦେଖି ଚାଲୁ ଚାଲୁ ଗୋଟିଏ ସ୍ଥାନରେ ପିଣ୍ଡରେ ପକାଇବା ପାଇଁ ପାଚିଲାଫଳ କିଛି କିଣିବା ପାଇଁ ମିନିଟ୍‌ଟିଏ ଅଟକି ଯିବାରୁ ସାଥୀଛଡ଼ା ହୋଇଗଲୁ । ସେଠାରେ ପହଞ୍ଚିବା ପରେ ଶ୍ରାଦ୍ଧ ପଣ୍ଡିତ ମହାଶୟଙ୍କ ତରଫରୁ (କଂସା ପିତ୍ତଳ ବାସନ, ଗାମୁଛା, ଧୋତି, ପାଚିଲା ଫଳ) ସବୁ ବ୍ୟବସ୍ଥା ଦେଖି ବୃଥା ପରିଶ୍ରମ ପାଇଁ ଅନୁତାପ କଲୁ । ଆମ ସାଥି ଯାତ୍ରୀମାନଙ୍କୁ ଦେଖିବାକୁ ନ ପାଇ ରାସ୍ତା କଡ଼ର ଦୋକାନୀମାନଙ୍କୁ "ଓଡ଼ିଶା ଭବନ" ଠିକଣା ପଚାରି ପଚାରି ପ୍ରାୟ ୧.୧/୨ କ.ମି. ଚାଲିବା ପରେ ବୁଲି ବୁଲି ଆମେ ଏକା ଭଳି ଦେଖାଯାଉଥିବା ଗଳି ଗଳି ଭିତରେ ଚକ୍‌କର ମାରିଲୁ । ପରେ ଜଣେ ସହୃଦୟ ବ୍ୟକ୍ତିଙ୍କଠାରୁ ସଠିକ୍ ଠିକଣା ପାଇ ଫେରିଆସି ଦେଖିଲାବେଳକୁ ଆମେ ଯେଉଁଠି କଦଳୀ କିଣୁଥିଲୁ ତା'ର ସାମ୍ନାରେ "ଓଡ଼ିଶା ଭବନ" । ଭଗବାନ ବାଟ ଭୁଲେଇ ଭୋକ ପେଟରେ "ଗୟା ତୀର୍ଥ" ରେ ଏଭଳି ଲୀଳା ଦେଖାଇଲେ ବୋଲି ଭାବି "ଓଡ଼ିଶା ଭବନ" ରେ ପ୍ରବେଶ କଲୁ । ମୁଖ୍ୟ ପୁରୋହିତଙ୍କ ନିକଟରେ ନାମ ପଞ୍ଜୀକରଣ କଲୁ । ମୁଁ ଟ୍ରେନ୍‌ରେ ସ୍ନାନକର୍ମ ଶେଷ କରି ଦେଇଥିଲି । ସେ ଫଲ୍‌ଗୁ ନଦୀର ଜଳ ପାଇପ୍ ଯୋଗେ ପହଞ୍ଚିବା ଶୌଚାଳୟରେ ସ୍ନାନ ସମାପନ

କରି ଉପର ମହଲାର ମଣ୍ଡପରେ ଶ୍ରାଦ୍ଧ କର୍ମ ପାଇଁ ସଂକଳ୍ପ କରିବାକୁ ବସିଲୁ । ଡ଼ାକ ବାଜି ଯନ୍ତ୍ର ସାହାଯ୍ୟରେ ଶ୍ରାଦ୍ଧ କର୍ମ ବିଷୟରେ ପଣ୍ଡିତଜୀ ଓଡ଼ିଆ ଭାଷାରେ ବୁଝାଉଥିଲେ । ପ୍ରାୟ ୨୦୦ ଜଣ ଯାତ୍ରୀ ସମବେତ ଶ୍ରାଦ୍ଧ ବିଧାନ ପାଇଁ ଫଲ୍‌ଗୁ ନଦୀ କୂଳରେ ଏକ ବଟ ବୃକ୍ଷ ମୂଳେ ସିମେଣ୍ଟ ଚଟାଣରେ ଉପବେଶନ କଲୁ । ସମଗ୍ର ତୀର୍ଥଯାତ୍ରା ସମୟରେ ଆହ୍ଲାବାଦ, ବଦ୍ରିନାଥ ଓ ଗୟାରେ ପିଣ୍ଡଦାନର ବ୍ୟବସ୍ଥା ଥିଲା, କିନ୍ତୁ "ଗୟା ଶ୍ରାଦ୍ଧ ପଦ୍ଧତି" ଆମ ଭଳି କର୍ମକାଣ୍ଡ ଅଜ୍ଞ ଅଧମ ଯାତ୍ରୀଙ୍କୁ ଅତ୍ୟନ୍ତ ସନ୍ତୋଷଜନକ ମନେହେଉଥିଲା । ତଥାପି କେତେଜଣ ଅଧୈର୍ଯ୍ୟ, ଅସହିଷ୍ଣୁ, ଯାତ୍ରୀ, 'ଚଞ୍ଚଳ ସାର, ଭୋକ ହେଲାଣି, ଖରା ପ୍ରବଳ ହେଉଛି' । ଇତ୍ୟାଦି ଇତ୍ୟାଦି କହି ପାଟି କରୁଥାଆନ୍ତି । ସେମାନଙ୍କ ଭିତରୁ ମାତ୍ର କେତେଜଣ ଆମ ଚିହ୍ନା ପରିଚୟ ଥିଲେ । ଶାନ୍ତ ପରିବେଶରେ ଏହିଭଳି ଚାପା ଗୁଞ୍ଜରଣ କିଛି ସମୟ ପାଇଁ କୋଳାହଳ ସୃଷ୍ଟି କରୁଥିଲା । ଭାବିଲି - ବୋଧହୁଏ ବିରୋଧୀ ଦଳ ନ ଥିଲେ ପୃଥିବୀର ଗତିଟା ମଧ୍ୟ ବନ୍ଦ ହୋଇ ଯାଇଥାଆନ୍ତା ଏମାନଙ୍କର ଚିରନ୍ତନ ସତ୍ୟ ଉପରେ ମଧ୍ୟ ବିରୋଧ ସୃଷ୍ଟି କରିବା ଅଭ୍ୟାସ । ପଣ୍ଡିତ ମହାଶୟ ସଂକଳ୍ପ ସମୟରେ କହିଥିଲେ ପ୍ରକୃତରେ ୩ଟି ସ୍ଥାନରେ ଗୟା କ୍ଷେତ୍ରରେ ପିଣ୍ଡଦାନ ବିଧାନ ଅଛି । ପ୍ରଥମେ ଅକ୍ଷୟ ବାଟ, ଦ୍ୱିତୀୟରେ ଫଲ୍‌ଗୁ ନଦୀ କୂଳ ଓ ତୃତୀୟରେ ବିଷ୍ଣୁପାଦ ମନ୍ଦିର ବେଢ଼ା ଭିତରେ ଫଲଗୁ ନଦୀ ଶୁଖିଲା, ପ୍ରବଳ ଖରା, ସେଠାରେ ବାଲିଶଯ୍ୟାରେ କରିବା କଷ୍ଟକର । ବିଷ୍ଣୁପାଦ ମନ୍ଦିରରେ ପ୍ରବଳ ଭିଡ଼, ସେଠାରେ ମଧ୍ୟ ଅସମ୍ଭବ ତେଣୁ ଆମେ ଗୋଟିଏ ସ୍ଥାନରେ ପିଣ୍ଡଦାନ କାର୍ଯ୍ୟକ୍ରମ ଶେଷ କରି ପିଣ୍ଡ ବିସର୍ଜନ ପାଇଁ ତିନୋଟି ସ୍ଥାନକୁ ଯିବା, କେତେ ଯାତ୍ରୀଙ୍କ ହଁ/ନା ଭିତରେ ପଣ୍ଡିତଜୀଙ୍କ କଥା ହିଁ କାମ ଦେଲା । ଭାବିଲୁ ଟି.ଭି ର "ସଂକ୍ଷେପରେ ଦୁନିଆ" ଓ ଆମ ବୋର୍ଡ଼ ପରୀକ୍ଷାରେ "କଣ୍ଡେନସଡ୍ କୋର୍ସ" ଭଳି ଏହା ଗୋଟିଏ କାର୍ଯ୍ୟକ୍ରମ ହେଉ । ମହାଭାରତର ଯକ୍ଷ - ଯୁଧିଷ୍ଠିର ସମ୍ବାଦର "ମହାଜନ ଯେନ ଗତ ଗତଃ ସଃ ପନ୍ଥା" ମନେପକାଇ ଶ୍ରାଦ୍ଧ ଶେଷ କଲୁ । ବିଷ୍ଣୁପାଦ ଦର୍ଶନ କରି ଫଳରସ ଗ୍ଲାସେ ଗ୍ଲାସେ ପାନକରି ବସ୍‌ରେ ବସିଲୁ । ବସ୍‌ରେ ସମସ୍ତ ଯାତ୍ରୀ ଏକାଠି ହେବାରେ ଢ଼େର୍ ବିଳମ୍ବ ହୋଇଯାଇଥିଲା । ଆମ ଭଳି କେତେ ଯାତ୍ରୀ ରାସ୍ତା ଭୁଲି ଅନ୍ୟ ପଣ୍ଡାମାନଙ୍କ ଦ୍ୱାରା ଶ୍ରାଦ୍ଧ କରି ଠକାମିର ଶିକାର ହୋଇଥିଲେ ତେଣୁ ସେମାନଙ୍କୁ ଅପେକ୍ଷା କରିବା ଭିତରେ ବସକୁ ଆଣି ବିକୁଥିବା ଶାଲ୍ କିଣି "ଉରୁବେଲା ଇଣ୍ଟରନ୍ୟାସନାଲ ଗେଷ୍ଟହାଉସ୍" ରେ ସଂଧ୍ୟା ୫ଟାରେ ପହଞ୍ଚିଲୁ । ସେଠାରେ ପ୍ରସାଦ ସେବନ କରି ନିର୍ଦ୍ଧାରିତ ବସ୍‌ରେ ଚଢ଼ିଲୁ । ବସ୍ ଡ୍ରାଇଭର୍ ବସ୍ ଷ୍ଟାର୍ଟ କଲାବେଳକୁ ଆରମ୍ଭ ହୋଇଗଲା P.P ମାନେ ପ୍ରବଳ ପାଟି । ଘଟଣା କ'ଣ

ବୋଲି ବୁଝିବା ପରେ ଜଣାଗଲା ଯାତ୍ରୀମାନଙ୍କ ପାଇଁ ସେଦିନ ୪ଗୋଟି ରହିବା ସ୍ଥାନର ବ୍ୟବସ୍ଥା ହୋଇଥିଲା । (୧) ଇକବାଲ (୨) ଶାନ୍ତି (୩) ବିଉଟି ଓ (୪) ଉରୁବେଲା ଇଣ୍ଟର ନ୍ୟାସନାଲ । ଉରୁବେଲା ଇଣ୍ଟରନ୍ୟାସନାଲ୍ ତୃତୀୟ ତାରକା (3 Star) ବିଶିଷ୍ଟ ହୋଟେଲ୍ ଓ ଅନ୍ୟ ତିନୋଟି ସମସ୍ତ ସୁବିଧା ଉପଲବ୍ଧ ଥିବା ଜନବସତି ଠାରୁ କିଛି ଦୂରରେ ହୋଟେଲ୍ । ତେଣୁ ଯାତ୍ରୀମାନଙ୍କର ମଧ୍ୟରେ ଏଭଳି ପାତରଅନ୍ତର ନୀତି ପାଇଁ ପ୍ରତିବାଦ ଚାଲିଥିଲା । ୧ ଘଣ୍ଟା ପରେ କ'ଣ ଠିକ୍ ହେଲା କେଜାଣି ଗାଡ଼ି ଛାଡ଼ିଲା । ଆମେ ପହଞ୍ଚିଲୁ ଆମ୍ ପାଇଁ ନିର୍ଦ୍ଧାରିତ 'ଇକବାଲ୍' ଗେଷ୍ଟହାଉସ୍‌ରେ । ମାଟି ରାସ୍ତା, ରାସ୍ତା ଆଲୁଅ ନାହିଁ ତେଣୁ ଗାଡ଼ି ଡ୍ରାଇଭର୍ ଜିନିଷ ଧରି ଗାଡ଼ିରୁ ଓହ୍ଲାଇବାକୁ ନିର୍ଦ୍ଦେଶ ଦେଲେ । ଆମ ଯାତ୍ରୀମାନଙ୍କରଅଭିଯୋଗ - ଅନ୍ଧାର ରାତିରେ, ଅଜଣା ରାସ୍ତାରେ (କର୍ତ୍ତୃପକ୍ଷଙ୍କ ତରଫରୁ କେହି ନ ଥିଲେ) ଜିନିଷ ବୋହି ଆମେ ଯିବୁ ନାହିଁ, ଆମ ଇସ୍କନ ପ୍ରଭୁ ଆସିବା ଯାଏଁ ଆମେ ଗାଡ଼ି ଭିତରେ ବସି ରହିଥିବୁ । ପାଟିତୁଣ୍ଡ ଶୁଣି ଗେଷ୍ଟହାଉସ୍‌ର ମାଲିକମାନେ ଦୌଡ଼ି ଆସିଲେ । ବସ୍‌ର ଡ୍ରାଇଭର୍‌ମାନଙ୍କୁ କି କଡ଼ା ନିର୍ଦ୍ଦେଶ ଦେଲେ କେଜାଣି, ସେମାନେ ସମସ୍ତେ ଗେଷ୍ଟହାଉସ୍‌ର ଦ୍ୱାର ମୁହଁରେ ଗାଡ଼ି ରଖିଲେ । ବିପଦ ଟଳିଲା, ଆମେ ଆଶ୍ୱସ୍ତ ହେଲୁ । ଗେଷ୍ଟହାଉସ୍‌ର ଦ୍ୱାରଦେଶରେ ବିଡ଼ି ବଳୁଥିବା ପିଲାମାନଙ୍କ ସାହାଯ୍ୟରେ ଦ୍ୱିତୀୟ ମହଲାକୁ ଜିନିଷ ଉଠାଇଲୁ । ଆମେ ପିଲା ଠିକ୍ କରି ଜିନିଷ ନେଲାବେଳକୁ 'ଶାନ୍ତି' ଗେଷ୍ଟ ହାଉସ୍‌ରେ ରହୁଥିବା ଆମର ତୀର୍ଥ ବନ୍ଧୁ ସେନାପତି ବାବୁ ଆମର ସବୁଠାରୁ ଓଜନିଆ ବ୍ୟାଗ୍‌ଟିକୁ ନେଇ ଉପର ମହଲାରେ ହାଜର । ସେନାପତି ବାବୁ ଭାରି ତରବରିଆ ଓ ସାହାଯ୍ୟ ମନୋଭାବ ଥିବା ଜଣେ ଅମାୟିକ ବ୍ୟକ୍ତି । ସେମାନଙ୍କର ଶ୍ରାଦ୍ଧ ନ ଥିଲା । ଆମର ଖରା ଓ ଉପବାସର ଦୟନୀୟ ଅବସ୍ଥା ଦେଖି ନିଜେ ଅସୁସ୍ଥ ଥିଲେ ମଧ୍ୟ ଏ ଭଳି ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ । ସେଦିନ ଆମ ପାଇଁ ସ୍ୱତନ୍ତ୍ର କୋଠରୀର ବ୍ୟବସ୍ଥା ହୋଇଥିଲା । (ଗୋଟିଏ ପରିବାର ପାଇଁ ଗୋଟିଏ) ବନ୍ଧୁ ବାନ୍ଧବ, ସାଙ୍ଗ ସାଥୀ, ପିଲାମାନଙ୍କ ସହ ପଦେ/ଦୁଇପଦ ଫୋନ୍‌ରେ କଥା ହେବା ପରେ ଚା', ପାନ, ରାତ୍ରି ଭୋଜନ ପାଇଁ ଫଳ ଓ ପାନୀୟ କିଣିବା ପାଇଁ ବାହାରି ପଡ଼ିଲୁ । ଘରୁ ଗୋଡ଼ ବାହାର କରିବା ମାତ୍ରକେ ବିଜୁଳି ଗାଏବ୍ । ଛୋଟ ଟର୍ଚ୍ଚର ସାହାଯ୍ୟରେ ପାଖରେ ଚା ଦୋକାନରେ ପହଞ୍ଚିଲୁ । ଚା' ପାନ କଲୁ । ଫଳ ସନ୍ଧାନରେ ବାହାରି ଗୋଟିଏ ଚାରି ଛକ ହୋଇଥିବା ରାସ୍ତାରେ ପହଞ୍ଚିଲୁ । ସେଠାରେ ପଚାରି ବୁଝିଲୁ ଅଳ୍ପ ବାଟ ଗଲା ପରେ ଆଉ ଏକ ଚାରି ଛକ ରହିଚି ସେଇଠି ଫଳ ମିଳିବ ଓ ସେହି ସ୍ଥାନରେ ବିଖ୍ୟାତ ବୋଧଗୟା ମନ୍ଦିର । ବୋଧଗୟା ମନ୍ଦିରର ନାଁ ଶୁଣିବା ମାତ୍ରେ

ବୋଧହୁଏ ବୁଦ୍ଧଦେବ ମନରେ ବୁଦ୍ଧି ଆଉ ଶରୀରରେ ବଳ ସଂଚାର କରିଦେଲେ ତାଙ୍କ ନିକଟକୁ ଯିବା ପାଇଁ । ବାହାରି ପଡ଼ିଲୁ ବୋଧଗୟା ମନ୍ଦିରର ଆଲୋକ ସଜ୍ଜାରେ ଆକର୍ଷିତ ହୋଇ । ସଂଧ୍ୟା ସମୟ । ଦେଶ ବିଦେଶର ଅସଂଖ୍ୟ ଯାତ୍ରୀଙ୍କ ଭିଡ଼ ଜମିଥାଏ ସେଠାରେ । ମୁଖ୍ୟ ମନ୍ଦିରରେ ବିଶାଳକାୟ ଧଳା ମାର୍ବଲ ପ୍ରସ୍ତରର ବୁଦ୍ଧଦେବଙ୍କ ପ୍ରତିମୂର୍ତ୍ତି । ଏକ ପ୍ରକାର ସ୍ୱତନ୍ତ୍ର ସୁବାସିତ ଧୂପକାଠିର ମହକ ଓ ୧୦/୧୫ ବର୍ଷର ବାଳକ ବାଳିକାଙ୍କ ଠାରୁ ଆରମ୍ଭ କରି ବୃଦ୍ଧ ବୃଦ୍ଧା ପର୍ଯ୍ୟନ୍ତ ବହି ଖଣ୍ଡିଏ ଖଣ୍ଡିଏ ଧରି ନୀରବରେ ପଠନ କରୁଥିବା ଦୃଶ୍ୟ ଏକ ପବିତ୍ର ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରୁଥିଲା । ସୁଉଚ୍ଚ ପାହାଚ ଥିବା କେତୋଟି ମନ୍ଦିର ଦର୍ଶନରୁ (ଦେହର ଅବସନ୍ନତା ଯୋଗୁଁ ) ବଞ୍ଚିତ ହେଲୁ । ଶେଷରେ ପହଞ୍ଚିଲୁ "ବୋଧିଦ୍ରୁମ" ନିକଟରେ । ଶାନ୍ତ, ସୁଶୀତଳ, ସ୍ନିଗ୍ଧ ଅଶ୍ୱତଥ୍ ବୃକ୍ଷ ଉରୁବିଲ୍ୱର ଛାୟା ତଳେ କିଛି ସମୟ ଧ୍ୟାନରେ ବସିଲୁ । ସେଠାରେ କଥାବାର୍ତ୍ତା ମନା । ତେଣୁ କିଛି ଦର୍ଶନ କଲୁ । ଐତିହାସିକ ଘଟଣାବଳୀ ଲେଖାଥିବା ଫଳକ ଗୁଡ଼ିକୁ ପଢ଼ିଲୁ । କଳା ମାର୍ବଲ ପଥରର ବୌଦ୍ଧ ପାଦଦ୍ୱୟ ମୁଣ୍ଡରେ ଲଗାଇଲୁ । ଫେରିଲାବେଳେ ବୌଦ୍ଧଧର୍ମ ପୁସ୍ତକ ଦୋକାନରୁ ଆମେ ବୁଝିପାରିଲା ଭଳି ବହି ଗଣ୍ଡାଏ କିଣିଲୁ । ପଚାରି ବୁଝିଲୁ ବୌଦ୍ଧଧର୍ମ ଗ୍ରନ୍ଥ "ତ୍ରିପିଟକ"ର ମୂଲ୍ୟ ଟ୬୦,୦୦୦.୦୦ଟଙ୍କା ଓ ତାହା ଭାରତ ବାହାରେ ମିଳୁଛି । ଗୋଡ଼େଇ ଗୋଡ଼େଇ ବିକ୍ରି ପାଇଁ ଆସୁଥିବା ପିଲାଠାରୁ C.D ଟିଏ କିଣିଲୁ । ଲେମ୍ବୁ ଚା' କପେ କପେ ଖାଇଲୁ । ମନ୍ଦିରର ସୁଉଚ୍ଚ ମୁଖ୍ୟ ତୋରଣ ନିକଟରେ ପହଞ୍ଚିଲା ବେଳକୁ ରାତି ସାଢ଼େ ୭ । ଇନ୍ଦ୍ରଦେବ ବିନ୍ଦୁଏ ବିନ୍ଦୁଏ ଜଳ ବୃଷ୍ଟି କରୁଥାଆନ୍ତି । ଫଳ ଓ ଜଳ କିଣି ଫେରିଲା ସମୟରେ ବର୍ଷା ଜୋର୍ ଧରିଲା । ତରବରରେ ଆମେ ବାଟ ଭୁଲି ଅନ୍ୟ ଏକ ଚାରି ଛକରେ ପହଞ୍ଚିଲୁ । ଆମେ ଗଲାବେଳେ ରାସ୍ତା ଆଲୁଅ ନଥିଲା, ସେଥିପାଇଁ କିଛି ଚିହ୍ନ ରଖିପାରି ନଥିଲୁ । ସବୁ ଛକ ଏକାଭଳି, ଭାବିଲୁ ରିକ୍ସାବାଲାକୁ ପଚାରି ପହଞ୍ଚିଯିବୁ । ରିକ୍ସାବାଲା ଆମ କଥାରେ ହଁ ଭରିଲା, ନେଇ ଠିଆ, କଲା - ଅନ୍‌ମୋଲ୍ ଗେଷ୍ଟ ହାଉସ୍ ପାଖରେ । ସେହି ରାସ୍ତାରେ ବୌଦ୍ଧ ଧର୍ମାବଲମ୍ବୀ ଦେଶ ମାନଙ୍କର ବଡ଼ ବଡ଼ ହୋଟେଲ ଓ ଭାରତର ସବୁ ପ୍ରକାର ବ୍ୟାଙ୍କର ଧାଡ଼ି ଜମିଥାଏ । ବର୍ତ୍ତମାନ ଆମେ ଜାଣିଲୁ, ଏହି ରାସ୍ତା ଆମର ନୁହେଁ, 'ଅନ୍‌ମୋଲ୍' ବାଲା ମଧ୍ୟ 'ଇକବାଲ୍' ଠିକଣା ଜାଣି ନ ଥାନ୍ତି, କିନ୍ତୁ ସେମାନେ ଆମ ରୁମ୍ ଚାବି ଦେଖି ରିକ୍ସାବାଲାକୁ ରାସ୍ତା ବୁଝାଇ ଦେଲେ ଓ ଆମକୁ ଆଶ୍ୱାସନା ଦେଇ କହିଲେ - 'ଆପଣ ନିଶ୍ଚିନ୍ତ ରହନ୍ତୁ । ଏହି ରିକ୍ସାବାଲା ଆପଣଙ୍କୁ ଠିକ୍ ସ୍ଥାନରେ ପହଞ୍ଚାଇ ଦେବେ' । 'ଗୟା ଚୋର' ବୋଲି ପୂର୍ବରୁ ଯେଉଁ ଅପବାଦ ଶୁଣୁଥିଲୁ ତାହା ବର୍ତ୍ତମାନ ଆମ

ପାଇଁ ମିଥ୍ୟା ପ୍ରମାଣିତ ହେଲା । ଆମ ଭଳି ଅଜଣା, ଅପରିଚିତ ଯାତ୍ରୀଦ୍ୱୟଙ୍କୁ ବିନା ସ୍ୱାର୍ଥରେ ଅନ୍ଧାର ବର୍ଷା ରାତିରେ ସାହାଯ୍ୟ କରିଥିବାରୁ ସେମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଇ ରିକ୍ସାରେ ବସିଲୁ । ମାତ୍ର ୫୦ ମିଟର ବାଟ ଗଲା ପରେ ଆମ ରାସ୍ତା ଆମକୁ ମିଳିଗଲା, ଆରାମରେ ବସାକୁ ଫେରିଲୁ । ସେଦିନ ରାତିରେ ପୁରୀ, ଡ଼ାଲମା ଓ କ୍ଷୀରି (ଶ୍ରାଦ୍ଧ ପାଇଁ ବିଶେଷ ବ୍ୟବସ୍ଥା) ପ୍ରସାଦ ଅଟୋରେ ଆଣି ପହଞ୍ଚାଇ ଦିଆଗଲା । ରାତି ୧୦ଘ. ୩୦ମି.ରେ ପ୍ରସାଦସେବନ କରି ବିଶ୍ରାମ ନେଲୁ ।

*ତା. ୦୬.୧୦.୨୦୧୦, ବୁଧବାର*

ନିର୍ଦ୍ଧାରିତ ବସ୍‌ରେ ବସି ସକାଳ ୭ଘଣ୍ଟାରେ ପରମ କାରୁଣିକ ତଥାଗତ ବୁଦ୍ଧଦେବ ଓ ବୌଦ୍ଧଧର୍ମର ଜ୍ଞାନପୀଠ ବୋଧିଦ୍ରୁମ ଓ ବୋଧଗୟା ମନ୍ଦିରକୁ ଦୂରରୁ ହାତ ଟେକି ଷ୍ଟେସନ ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ଯାତ୍ରାର ଅଧଘଣ୍ଟାଏ ପରେ ପ୍ରଭୁ ପଦ୍ମଧର ବାବା (ଆମ ବସ୍‌ରେ ଥିଲେ) ଫୋନ୍ ପାଇଲେ ଦିନ ୯ଟାର ରେଳଗାଡ଼ି ୯ଘଣ୍ଟା ବିଳମ୍ବରେ ପହଞ୍ଚିବ । ଆମେ ସେହି ବିଷୟ ଉପରେ ଗୁରୁତ୍ୱ ଦେଇ ନ ଥିଲୁ, କିନ୍ତୁ ଷ୍ଟେସନରେ ପହଞ୍ଚିବା ପରେ ପାଇଥିବା ଖବରର ସତ୍ୟତା ବିଷୟରେ ଜାଣିପାରିଲୁ, ଘଣ୍ଟାଏ, ଘଣ୍ଟାଏ ପରେ ଘୋଷଣା ଶୁଣୁଥିଲୁ । ଦିନ ଏଗାରଟା ସମୟରେ ଘୋଷଣା ଶୁଣିଲୁ ସଂଧ୍ୟା ୬ଟାରେ ଗାଡ଼ି ପହଞ୍ଚିବ । ସମସ୍ତେ ଏହି ଖବର ପାଇ ସ୍ଥାଣୁ ପାଲଟି ଯାଇଥିଲୁ । "ହର୍ କୀ ପେଡ଼ି" ରୁ କିଣିଥିବା ଜରି ଆସନ ବାହାର କଲୁ, ବିନା ଦ୍ୱିଧାରେ ୨ନଂ ପ୍ଲାଟଫର୍ମରେ ବସି ପଡ଼ିଲୁ । ୧ନଂ ପ୍ଲାଟଫର୍ମରେ ଶୌଚାଳୟ, ସିଡ଼ି ଚଢ଼ିବା ଓ ଓହ୍ଲିବା ସମର୍ଥ ଯାତ୍ରୀ ସେଠାକୁ ଗଲେ ଅନ୍ୟମାନେ ୨ନଂରେ ନିତ୍ୟକର୍ମ ଶେଷ ପାଇଁ ବାଧ୍ୟ ହେଲେ । IRCTC ଫଳ ଦୋକାନର ପାଣି ବୋତଲ ଆସିଥିବା ମଲାଟ ପେଡ଼ି ଖୋଲି କେତେ ଯାତ୍ରୀ ସ୍ଥାନ ସଂରକ୍ଷଣ କଲେ ଷ୍ଟେସନରେ । ଏହାପରେ ପୂର୍ବରୁ ପ୍ରସ୍ତୁତ ହୋଇ ଆସିଥିବା ବଙ୍ଗାଳି ଖେଚୁଡ଼ି ଓ ଛଣା ଭଜା ପ୍ରସାଦ ରୂପେ ଦିଆଗଲା । ଜରି ଆସନ ଓ ମଲାଟ ଆସନ ଉପରେ ବସି ପୁରୀ ଦକ୍ଷିଣ ଦ୍ୱାରରେ ପେଜ ନଳା ନିକଟରେ ଯାଜପୁରିଆ ବଂଧୁ ମହାନ୍ତିଙ୍କର ପରିବାର ରନ୍ଧାଳିରେ ସ୍ୱାଦିଷ୍ଟ ମହାପ୍ରସାଦ ସେବନ ପ୍ରସଙ୍ଗ ମନେପକାଇ ଯାଜପୁରିଆ ବଂଧୁଙ୍କର ବଂଧୁଙ୍କ ଗୁଣ କୀର୍ତ୍ତନ କଲୁ । ଏହି ସମୟରେ ପ୍ରତ୍ୟେକ ଯାତ୍ରୀଙ୍କ ମନରେ ଆତ୍ମ ବଡ଼ିମା (EGO)ପାଇଁ ଅନୁତାପ ଆସୁଥିବା ବିଷୟ ପରିଲକ୍ଷିତ ହେଉଥିଲା । ଇସ୍କନ ତୀର୍ଥଯାତ୍ରୀଙ୍କ ମନରେ ବଗିଗାଡ଼ିରେ ତୀର୍ଥଯାତ୍ରା ବିଷୟରେ ଘୃଣା ମନୋଭାବ ରହିଥିଲା । ସେମାନଙ୍କର ବିଶ୍ରାମ ସ୍ଥଳ ନାହିଁ, ଷ୍ଟେସନରେ ରହନ୍ତି, ଶୁଅନ୍ତି ଇତ୍ୟାଦି ଇତ୍ୟାଦି ବିଷୟ ଆଲୋଚନା

କରି ଅତୀତ ଦିନ ମାନଙ୍କରେ ଆମ ତୀର୍ଥଯାତ୍ରା ପାଇଁ ମନରେ ଗର୍ବ ଆସୁଥିଲା । ଦୀର୍ଘ ୨୧ ଦିନ ଆରାମଦାୟକ ଯାତ୍ରାର ଶେଷ ପର୍ଯ୍ୟାୟରେ ଗର୍ବଗଞ୍ଜନ ନରହରି ଆମମାନଙ୍କର ଆତ୍ମ ଗର୍ବକୁ ଭାଙ୍ଗି ଚୁରମାର୍ କରିଦେଲେ । ବିଧି ନିର୍ଦ୍ଦେଶରେ ଭାରତୀୟ ରେଳ ପରିବହନର ଅନିୟମିତତା ଯୋଗୁଁ ମୋଟ ୩୦୦ଜଣ ଏକା ନାଆରେ । ପ୍ରତିଷ୍ଠିତ, ସମ୍ଭ୍ରାନ୍ତ, ଉଚ୍ଚଶିକ୍ଷିତ ସବୁ ବର୍ଗର ବ୍ୟକ୍ତିଙ୍କ ସମାହାରରେ ଆମ ତୀର୍ଥଯାତ୍ରୀଙ୍କ ସଂଖ୍ୟା ବଢ଼ିଥିଲା । ସମାଜର ସବୁ ବର୍ଗର ଲୋକେ ଏହି ତୀର୍ଥ ଯାତ୍ରାରେ ସାମିଲ ହୋଇଥିଲେ । ପ୍ରାୟ ସମସ୍ତେ ଇଚ୍ଛା କରିଥିଲେ ଅନ୍ୟ ବିକଳ୍ପ ବ୍ୟବସ୍ଥା ଚିନ୍ତା କରିପାରିଥାଆନ୍ତେ । କିନ୍ତୁ ସମସ୍ତଙ୍କର ମତ ଏକ - ଯେତେ ବିଳମ୍ବ ହେଉ ପଛେ ସମସ୍ତେ ଏକାଠି ଯିବା, ଅବଶ୍ୟ ନିହାତି ଜରୁରୀ ଥିବା ଯୋଗୁଁ ଦିନ ୨ଟାରେ ୬ଜଣ ଯାତ୍ରୀ ପୁରୁଷୋତ୍ତମ ଏକ୍ସପ୍ରେସ୍‌ରେ ଓ ଦିନ ୪ଟାରେ ଟାଟାସୁମୋରେ ୯ଜଣ ଯାତ୍ରୀ ଫେରିବା ପାଇଁ ବାଧ ହୋଇଥିଲେ । ବାକି ସମସ୍ତେ ହସ, ଖୁସି, ମଜାମଉଜରେ ବିନା ପଙ୍ଖାରେ (୨ନଂ ପ୍ଲାଟଫର୍ମ ସମସ୍ତ ସୁବିଧାରୁ ବଞ୍ଚିତ) ପ୍ଲାଟଫର୍ମରେ ଦିନ ବିତାଇଲୁ । କଥାବାର୍ତ୍ତା, ଆଳାପ ଆଲୋଚନାରେ ମଜି ଦିନ ୪ଟାରେ ଚା' ପାନ କଲୁ, ଲଘୁଶଙ୍କା ଓ ଗୁରୁଶଙ୍କାର ଆଶଙ୍କାରେ ଖାଦ୍ୟ ପାନୀୟ ପ୍ରତି ସତର୍କ ହେବାକୁ ପଡୁଥିଲା । ରାତି ୮ଟାରେ ଗାଡ଼ି ପହଞ୍ଚିବା ଖବର ପାଇଲୁ । ତା'ପରେ ରାତି ୧୧ଟା ବୋଲି ଘୋଷଣା କରାଗଲା । ରାତି ୧୧ଟାରେ ରାତି ୨ଟା ବୋଲି ଶେଷ ଖବର ପାଇଲୁ । ଶେଷ ଖବର ପାଇଲା ପରେ ଅପେକ୍ଷାର ଯବନିକା ପଡ଼ିବ ବୋଲି ଭାବିଲୁ । 'ଗୌଡ଼ୀୟ ମଠ'ରେ ପ୍ରସ୍ତୁତ ହୋଇ ଆସିଥିବା ଉପମା ଓ ଡ଼ାଲମା ପ୍ରସାଦ ପାଇ ଜଣକ ପରେ ଜଣେ ଜିନିଷ ଜଗି ରହିବା ପାଇଁ ସ୍ଥିର କଲୁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସଂଧ୍ୟା ୬ଟାରୁ ୮ଟା ପର୍ଯ୍ୟନ୍ତ ସୁଗାୟକ କୀର୍ତ୍ତନ ମଣ୍ଡଳୀ ସହ ସଂନ୍ଧ୍ୟା ସମୟ ଭଜନ କୀର୍ତ୍ତନରେ ମାତି ରହିଥିଲୁ । ପ୍ଲାଟଫର୍ମରେ ଦୀର୍ଘ ସମୟ ଅପେକ୍ଷା, ବିଶ୍ରାମ, ଭୋଜନ ଓ ଶେଷରେ ଶୟନ ବିଷୟ କେହି ଜଣେ ହେଲେ ସ୍ୱପ୍ନରେ ବି ଭାବି ନଥିଲୁ । ଖୋକା ଭାଇଙ୍କର ପ୍ରେମାବେଗ ଗୀତ - ''ଅଜଣା ଏକ ସହରେ, କୃଷ୍ଣ ଚୁଡ଼ା ମୂଳେ, ଏକା ଏକା ବାରଘଣ୍ଟା'' ଶୈଳୀରେ ଆମେ ମଧ ଗାଇବାକୁ ଲାଗିଲୁ - ''ଗୟା ତୀର୍ଥ ପ୍ଲାଟଫର୍ମରେ - ଇସ୍କନ ଯାତ୍ରୀ ଗହଣରେ, ସାଥୀ ହୋଇ ଅଠର ଘଣ୍ଟା'' । ରାତି ୨ଘ. ୨୦ମି.ରେ ପ୍ରତୀକ୍ଷାର ଅନ୍ତ ଘଟାଇ ନିଦାରୁଣ ଯାନ ସମ୍ମୁଖରେ ଠିଆ ହେଲା । ଆମ ଦୁହିଁଙ୍କର ଶେଷ ତୀର୍ଥ ଥିଲା ଶ୍ରୀ ଜଗନ୍ନାଥ କ୍ଷେତ୍ର ତେଣୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇ ଟ୍ରେନ୍ ଚଢ଼ିଲୁ । ଗୟା ଷ୍ଟେସନରେ ବିଶ୍ରାମ ନେଇଥିବା ସମୟରେ ପ୍ରତ୍ୟେକଙ୍କ ଗାଁରୁ/ଘରୁ ସନ୍ଦିହୀନ ଆତ୍ମୀୟସ୍ୱଜନମାନେ

ବାରମ୍ବାର ଫୋନ୍ କରି ଆମ କାର୍ଯ୍ୟକ୍ରମ ବିଷୟ ପଚାରି ବୁଝୁଥିଲେ । ପରିବାର/ଆତ୍ମୀୟ ସ୍ୱଜନ ମାନଙ୍କଠାରୁ ଶୁଣିବାକୁ ପାଇଲୁ "ରତ୍ନ ସିଂହାସନ ରକ୍ତ ଜୁଡୁବୁଡୁ", ପୁରୀ ଶ୍ରୀମନ୍ଦିରରେ ଦର୍ଶନ ବନ୍ଦ କରି ଦିଆଯାଇଛି । ଭାବିଲୁ, ସମସ୍ୟାର ସମାଧାନ ପରେ ଆମର ଉପସ୍ଥିତି ଜଗନ୍ନାଥ ଚାହୁଁଥିଲେ । ତା' ପରଦିନ ପୁରୀରେ ପହଞ୍ଚି GRAND COMPLEX ର AMLAN ମଠ, ପାଟ ଦୋକାନରେ ଶୁଣିବାକୁ ପାଇଲୁ ଗତ କାଲି ପ୍ରବଳ ବର୍ଷା ଯୋଗୁଁ ବଡ଼ଦାଣ୍ଡର ବଜାର ଓ ଦର୍ଶନ ସବୁ ବନ୍ଦ । ଗତ ୩ବର୍ଷ ଭିତରେ ସେଦିନ ବଡ଼ ବର୍ଷା ହୋଇଥିଲା । ଗୟା ଷ୍ଟେସନରେ ଅସୁବିଧା ଆମ ପାଇଁ ମଙ୍ଗଳକର ଥିଲା ବୋଲି ମନକୁ ବୁଝାଇନେଲୁ । ହାଓ୍ୱଡ଼ା ଷ୍ଟେସନରେ ଆମ ଟ୍ରେନ୍ ଦିନ ୧୧ଘ. ୩୦ମିରେ ପହଞ୍ଚିଲା । ଏଠାରୁ ଆମ ଦୁହିଁଙ୍କର ତୀର୍ଥଯାତ୍ରାର ମୋଡ଼ ବଦଳିଗଲା ।

### ତା. ୦୭.୧୦.୨୦୧୦, ଗୁରୁବାର

ଗୟା ଷ୍ଟେସନରେ ଦୀର୍ଘ ସମୟ ଅପେକ୍ଷା କରିବା ଅବସରରେ ଯାତ୍ରାଜନିତ କ୍ଳାନ୍ତି ଓ ଆମ ଭଳି ଭଗ୍ନସ୍ୱାସ୍ଥ୍ୟ ବ୍ୟକ୍ତିଙ୍କ ଉପରେ ପ୍ରତିକୂଳ ପ୍ରଭାବ ପକାଇବ ବୋଲି ଆଶଙ୍କା କରି କଲିକତାରେ  ରହୁଥିବା ମୋର ସାନପୁଅ କଲିକତାରୁ ପୁରୀ ଯିବା ପାଇଁ ଦୁଇଟି ତତ୍କାଳ ଟିକଟ କରିସାରିଥିଲା । ଗୟାରୁ ଆସିଥିବା ଟ୍ରେନ୍‌ର ବିଳମ୍ବ ଯୋଗୁଁ ଆମର ହାଓ୍ୱାଡ଼ା-ପୁରୀ ଯିବା ଟିକଟ ବାତିଲ ହୋଇଯାଇଥିଲା । ତେଣୁ ଆମେ କିଛି ସମୟ ପାଇଁ କଲିକତାରେ ବିଶ୍ରାମ ନେବା ପାଇଁ ବାଧ୍ୟ ହେଲୁ । ଆମ ଦାୟିତ୍ୱରେ ଥିବା ପ୍ରଭୁଙ୍କ ଠାରୁ ଅନୁମତି ନେଇ (ପଦ୍ମଧର ପ୍ରଭୁ ପୁରୀ ଟିକଟ ପାଇଁ କାଉଣ୍ଟରରେ ଥିଲେ) ପୁଅ ସହିତ ଟ୍ୟାକ୍ସିରେ ତା'ର ବସା 'ଗରିଆହାଟ' ଅଭିମୁଖେ ଯାତ୍ରା କଲୁ । ପୁଅର ଘର ତିନିମହଲା ଉପରେ କିନ୍ତୁ ଏଠାରେ ଆଉ C.C ମାନେ ଚଢ଼ିବା ଚିନ୍ତା ନାହିଁ । ପୁଅ ବୋହି ନେଇଗଲା ସେଠାରେ ନିତ୍ୟକର୍ମ ସାରି "ତେର ପାର୍ବଣ" ହୋଟେଲ୍‌ରେ ଭୋଜନ ସାରି ବିଶ୍ରାମ ନେଲୁ । ସଂଧ୍ୟା ୬ଟାରେ ବସାରୁ ବାହାରି ହାଓ୍ୱାଡ଼ା ଷ୍ଟେସନ୍‌ରେ ପହଞ୍ଚିଲୁ । ରାତି ୮ଟାରେ "ଗରିବ ରଥ" ଏକ୍ସପ୍ରେସ୍‌ରେ ଚଢ଼ି ପରଦିନ ସକାଳ ୬ଟାରେ ଶ୍ରୀକ୍ଷେତ୍ରରେ ପହଞ୍ଚିଲୁ । ଯାତ୍ରାରମ୍ଭ ଶ୍ରୀକ୍ଷେତ୍ରରେ, ଶେଷ ଶ୍ରୀକ୍ଷେତ୍ରରେ ବୋଲି ଆମେ ଠିକ୍ କରିଥିଲୁ । ସେପ୍‌ଟେମ୍ବର ୧୪ ତାରିଖରେ ଫେରିବା ସମୟର ରହଣି ପାଇଁ ରୁମ୍ ବୁକ୍ କରିଥିଲୁ ଶୀତତାପ ନିୟନ୍ତ୍ରିତ କୋଠରୀରେ । ଶୀତତାପ ନିୟନ୍ତ୍ରିତ କୋଠରୀ ଆମ ସ୍ୱାସ୍ଥ୍ୟ ପାଇଁ ଅନୁକୂଳ ନଥିଲେ ମଧ୍ୟ ଲିଫ୍ଟ (Lift) ଲୋଭରେ ଅଧିକା ଭଡ଼ା ଦେଇ ଏହି ବ୍ୟବସ୍ଥା ଠିକ୍ କରିଥିଲୁ । ଏଠାରେ

ମଧ୍ୟ ଆମେ ଲୀଳାମୟ ଲୀଳାପୁରୁଷଙ୍କର ଅଭିନବ-ଅଭିନୟର ପାତ୍ର-ପାତ୍ରୀ ସାଜିଲୁ । ଦିଲ୍ଲୀରୁ ଆସିଥିବା ୧୫୦ ଜଣ ଇସ୍କନ ଯାତ୍ରୀଙ୍କ ସମାଗମରେ ''ନୀଳାଚଳ ଭକ୍ତ ନିବାସ'' ପରିପୂର୍ଣ୍ଣ । ଆମ ପାଇଁ ଉଦ୍ଦିଷ୍ଟ ରୁମ୍ ଖାଲି ନାହିଁ । ଅନ୍ୟ ବ୍ୟବସ୍ଥା କିଛି ସ୍ଥିର ନକରି କର୍ତ୍ତୃପକ୍ଷଙ୍କୁ ବାଧ୍ୟ କଲୁ ସେଠାରେ ରହିବା ପାଇଁ । ସେ ବୁଝା ବୁଝି କରି କହିଲେ, ଗତ ଅଧ ଘଣ୍ଟାଏ ତଳେ ଗୋଟିଏ A.C. Room ଖାଲି ହୋଇଛି । ଆମକୁ ସ୍ଥାନ ମିଳିଗଲା, କିନ୍ତୁ ଶୁଣିଲୁ ପ୍ରବଳ ବର୍ଷାରେ ପାଣି ପଶି ଲିଫ୍ଟ କାମ କରୁନି । ଆମ ପିଲାଏ ଆପଣଙ୍କ ଜିନିଷ ବୋହି ନେଇଯିବେ । ରାଜି ହେଲୁ । ତୃତୀୟ ମହଲାରେ ନିତ୍ୟକର୍ମ ଶେଷକରି ଶ୍ରୀଜଗନ୍ନାଥଙ୍କ ଦର୍ଶନରେ ବାହାରିପଡ଼ିଲୁ । ହାଓ୍ୱଡ଼ା ଷ୍ଟେସନ୍‌ରେ ଯାତ୍ରୀମାନଙ୍କଠାରୁ ଅଲଗା ହୋଇ ଯେତିକି ଦୁଃଖ ଅନୁଭବ କରିଥିଲୁ, ସେମାନଙ୍କ ଭିତରୁ ଅଧିକାଂଶଙ୍କୁ ମନ୍ଦିର ବେଢ଼ାରେ ଦେଖି ତା'ଠାରୁ ଅଧିକ ଆନନ୍ଦ ଉପଭୋଗ କଲୁ । ବ୍ରାହ୍ମଣ ଭୋଜନ ଓ ପ୍ରସାଦ ସେବନ ପରେ ବସାକୁ ଫେରି ବିଶ୍ରାମ ନେଲୁ । ସଂଧ୍ୟା ସମୟରେ ବଡ଼ଦାଣ୍ଡରେ ବୁଲାବୁଲି କରି Grand Hotelରେ ରାତ୍ରି ଭୋଜନ କରି ଭକ୍ତ ନିବାସକୁ ଫେରିଲୁ । ନୀଳାଚଳ ଭକ୍ତ ନିବାସର କାଉଣ୍ଟରରୁ ଚାବି ମାଗିବା ସମୟରେ ଏକ ଅବିସ୍ମରଣୀୟ ଘଟଣା ଘଟିଥିଲା ।  ଦିଲ୍ଲୀରୁ ଆସିଥିବା ଜଣେ ଇସ୍କନ ଯାତ୍ରୀଙ୍କର ୧୦/୧୨ ବର୍ଷର ଛୋଟ ପୁଅଟିଏ (ଆମ କାହ୍ନା ଭଳି ଚେହେରା) କାଉଣ୍ଟରରୁ ପଚାରି ବୁଝୁଥିଲା - ''ଅଙ୍କଲ ! ଅଭି ଟମାଟୋ ସୁପ୍ ହୋଗା ?''ସେ ମହୋଦୟ ମନା କରିବାରୁ ଆମ ପଛେ ପଛେ ସିଡ଼ି ଚଢ଼ିଲା । ଆମେ ବାଣ୍ଟିବା ପାଇଁ ଗୁଡ଼ାଏ ମହାପ୍ରସାଦ କିଣି ଆଣିଥିଲୁ । ଦୁଇଜଣ ଯାକର ସିଡ଼ି ଚଢ଼ା କ୍ଲାନ୍ତି ଅନୁଭବ କରି ପିଲାଟି -''ମୁଝେ ଦେ ଦୋ ଅଙ୍କଲ, ମେଁ ଲେ ଜାଉଁଗା'' ଖାଲି ଲଗାଇଲା, ପରେ ପରେ ମୋ ସହିତ ଲାଗି  ଗଲା । ବାରମ୍ବାର  ତା'ର ମଧୁର ଅନୁରୋଧକୁ ଟାଳି ନପାରି ମୁଁ ଭାବିବା ବେଳକୁ ଆଉ ମାତ୍ର ଦଶ ମିଟର ରାସ୍ତା ଥିଲା । ତଥାପି ତା'କୁ ବ୍ୟାଗ ବଢ଼େଇ ଦେବାକୁ ଇଚ୍ଛା ହେଲା । ପିଲାଟି ଆମ ବଖରାରେ ପହଞ୍ଚାଇ ଦେଇ ବିଦାୟ ନେଲା । ମନେ ମନେ ଧନ୍ୟବାଦ ଦେଲି ସେଇ ପିଲାଟିର ବାପା, ମା'ଙ୍କୁ । ପରିବାରର ସଂସ୍କାରକୁ । ତା'ପର ଦିନ ଆମେ ଚାବି ଫେରାଇବାବେଳେ ତା' ମା'ଙ୍କ ସହ ମିଶିଲୁ । ଘଟଣାଟି ବର୍ଣ୍ଣନା କରି ପରମ ସନ୍ତୋଷ ଲାଭ କଲୁ । ଦିନ ଘ. ୭.୫୦ ମି. ରେ ବିରକ୍ତିକର ପୁରୀ-ପଲାସା ରେଳରେ ଘର ବାହୁଡ଼ା ଯାତ୍ରା ଆରମ୍ଭ କଲୁ । ଦିନ ଗୋଟାଏରେ ବ୍ରହ୍ମପୁର ଷ୍ଟେସନ୍‌ରେ ଗାଡ଼ିରୁ ଓହ୍ଲାଇଲୁ । ଆମକୁ ସ୍ୱାଗତ ଜଣାଇବା ପାଇଁ ମନୋବଳ ଓ ଶାରୀରିକ ବଳକୁ ପ୍ରୋତ୍ସାହନ ଦେଇଥିବା ମୋର ଦିଅର ନିତ୍ୟାନନ୍ଦ ଓ ଟୁଲବୁଲା କାହ୍ନା ଷ୍ଟେସନ୍‌ରେ ଉପସ୍ଥିତ ଥିଲେ । ସେମାନଙ୍କ

ସହ ''ଶ୍ରୀ ଟାୱାର'' ସ୍ଥିତ ବସାକୁ ଫେରିଲୁ । ମଧ୍ୟାହ୍ନ ଭୋଜନ ଗ୍ରହଣ କଲୁ । ପଦେ, ଦି'ପଦ କଥାବାର୍ତ୍ତା ନ ସରୁଣୁ ଟ୍ୟାକ୍ସି ହାଜର । ଦିନ ୪ଟାରେ ଯାତ୍ରାର ଅନ୍ତିମ ପର୍ବ ଆରମ୍ଭ । ସଂଧ୍ୟା ୫ ଘ. ୩୦ ମି.ରେ ବମକୋଇରେ ପହଞ୍ଚିଲୁ । ଉତ୍ତର ଭାରତ ତୀର୍ଥଯାତ୍ରା ଶେଷ କରି ସର୍ବଶୁଭରେ ଘରକୁ ଫେରିଥିବାରୁ ଗ୍ରାମସ୍ଥିତ ଦେବଦେବୀଙ୍କୁ ପ୍ରଣାମ ଜଣାଇ ଘରେ ପଶିଲୁ । ଘରକୁ ପଶିବା ପର୍ଯ୍ୟନ୍ତ ସାହି ଲୋକଙ୍କ ''ଭଲ ଅଛ'' ''ସୁବିଧାରେ ଫେରିଲ'', ପ୍ରଶ୍ନ ଶୁଭୁଥିଲା । ଘର ଇଷ୍ଟଙ୍କୁ ପ୍ରଣାମ କରି ସୁବିଧାରେ ପହଞ୍ଚିବା ଖବର ଜଣାଇବା ପାଇଁ ଫୋନ୍ କରିବାରେ ଲାଗିପଡ଼ିଲୁ । ଉତ୍ତର-ଭାରତ ତୀର୍ଥଯାତ୍ରା ପ୍ରସଙ୍ଗ ପଡ଼ିବା ଠାରୁ ଯାତ୍ରା ସମାପ୍ତ କରି ଘରେ ପହଞ୍ଚିବା ପର୍ଯ୍ୟନ୍ତ ମୋର ପରିବାର, ଆତ୍ମୀୟସ୍ୱଜନ, ସହକର୍ମୀବୃନ୍ଦ ଓ ଚାକର ପ୍ରଭୃତି ସମସ୍ତଙ୍କର ସାହାଯ୍ୟ ସହଯୋଗ ଓ ଶୁଭକାମନା - ଯାହା ଯୋଗୁଁ ଆମ ଭଳି ପଙ୍ଗୁ ଗିରି ଲଂଘି ଫେରିପାରିଲା, ସେମାନଙ୍କୁ ସମସ୍ତଙ୍କୁ ଆନ୍ତରିକ କୃତଜ୍ଞତା ଜଣାଇ ବିଶ୍ରାମ ନେଲୁ । ଯାତ୍ରା ଶେଷ । କଲମକୁ ବିଶ୍ରାମ ।

ଏଠାରେ ସୂଚନା ଦିଆଯାଇପାରେ ଯେ ଏହା ତୀର୍ଥାଟନ ନହୋଇ ଏକ ଭ୍ରମଣ କାହାଣୀ ରୂପେ ପରିଗଣିତ ହୋଇପାରେ । ପ୍ରବନ୍ଧର ପ୍ରଥମ ଧାଡ଼ିରେ ଲେଖାଯାଇଛି ଏହା ଅନୁଭୂତିର କିୟଦଂଶ ମାତ୍ର । ତୀର୍ଥ ସ୍ଥାନର ମହିମା, ଗମନାଗମନର ସୁବିଧା, ଐତିହାସିକ ଓ ଭୌଗୋଳିକ ସ୍ଥିତି ପୁସ୍ତକାକାରରେ ପ୍ରକାଶିତ ହୋଇସାରିଛି, କିନ୍ତୁ ଏହି ପ୍ରବନ୍ଧରେ ଉଲ୍ଲିଖିତ ବିଷୟବସ୍ତୁ ଓ ତିକ୍ତ-ମଧୁର ଅନୁଭୂତି ମୋର ଏକାନ୍ତ ନିଜସ୍ୱ । ''ଗଲି, ଅଇଲି, ଯାହା ଅଙ୍ଗେ ନିଭେଇଲି, ଦି'ପଦ ଲେଖିଲି ।'' ବାସ୍ ! ଏତିକି ଥାଉ, ।।

।। ''ହରେକୃଷ୍ଣ'' ।।



# ଇସ୍କନ ଆୟୋଜିତ ଦକ୍ଷିଣ ଭାରତ ଦର୍ଶନ ତୀର୍ଥଯାତ୍ରା ୨୦୧୦ରେ
## (ଯାତ୍ରାକାଳ - ତା. ୨୦.୦୧.୨୦୧୧ ଠାରୁ ୦୭.୦୨.୨୦୧୧)
## ସ୍ମୃତି ଓ ଅନୁଭୂତିରୁ ଦୁଇପଦ ।

**ପ୍ରାକ୍‌କଥନ :** ଦକ୍ଷିଣ ଭାରତ ତୀର୍ଥଯାତ୍ରାର ପ୍ରଥମ ଦିନ ଉତ୍ତର-ଭାରତ ତୀର୍ଥ ସାଥୀ ତାଳଚେର ମଉସା ଓ ମାଉସୀ ଟ୍ରେନ୍‌ରେ ଆମ ପାଖରେ ବସିଥିଲେ । ସେ ମଉସା ତାଳଚେର ଆଇ.ଟି.ଆଇର ପ୍ରଥମ ବ୍ୟାଚ୍ । ତଥାପି ଜମିବାଡ଼ି ଦେଖାଶୁଣା କରିବା ଉଦ୍ଦେଶ୍ୟରେ ସେ ଚାକିରୀରେ ଯୋଗ ଦେଇନଥିଲେ । ପିଲାମାନଙ୍କୁ ଡ଼ାକ୍ତର, ଇଂଜିନିୟର ଭାବରେ ପ୍ରତିଷ୍ଠିତ କରାଇଛନ୍ତି । ଗତଥର ମଉସାଙ୍କର ପଢ଼ିବା ସଉକ ଲକ୍ଷ୍ୟ କରିଥିଲୁ । ଏଇଥର ସେମାନେ ପୁରୀରୁ ଯାତ୍ରାରମ୍ଭ କରିଥିଲେ ଏବଂ ୪ଟି ଓଡ଼ିଆ ଦୈନିକ ଖବରକାଗଜ କିଣି ପଢୁଥିଲେ । ତାଙ୍କଠାରୁ ଆମ ସମସ୍ତ ତୀର୍ଥଯାତ୍ରୀ ଖବର କାଗଜ ଖଣ୍ଡେ ଖଣ୍ଡେ ଖଣ୍ଡେ ମାଗି ପଢୁଥିଲେ । ମଉସାଙ୍କ ଠାରୁ ମାଗି ଆଣିଥିବା 'ଧରିତ୍ରୀ' ଖବର କାଗଜରୁ ମୋର ପୁତୁରା ରଂଜିତ ପାଢ଼ୀ (ଧରିତ୍ରୀର ରାୟଗଡ଼ା ସମ୍ପାଦକ) ବାବା ରାମଦେବଙ୍କ ଠାରୁ ପୁରସ୍କାର ଗ୍ରହଣ କରିବା ବିଷୟ ଜାଣିପାରିଥିଲୁ । ଏଇଥର ପରିଚିତ ଜଣେ ତୀର୍ଥଯାତ୍ରୀ ପ୍ରତ୍ୟେକ ପୃଷ୍ଠା ତନ୍ନ ତନ୍ନ କରି ପଢ଼ିବା ମୁଁ ଲକ୍ଷ୍ୟ କଲି । ଏକ ଉତ୍ତମ ଧୈର୍ଯ୍ୟବାନ ପାଠକର ଲକ୍ଷଣ ଲକ୍ଷ୍ୟ କରିବା ପରେ ମୁଁ ମୋର ଉତ୍ତର-ଭାରତ ତୀର୍ଥଯାତ୍ରା ବିବରଣୀଟି ପଢ଼ିବାକୁ ତାଙ୍କ ହାତକୁ ବଢ଼ାଇଦେଲି । ବିସ୍ମୟର ବିଷୟ ସେହି ଭଦ୍ରବ୍ୟକ୍ତି ମହୋଦୟ ଲେଖା ଉପରୁ ଆଖି ନ ଉଠାଇ ଏକ ଲୟରେ ସମୁଦାୟ ୭୦ ପୃଷ୍ଠାର ବିବରଣୀ ପଢ଼ି ତା'ର ମତାମତ ଦେବା ଆରମ୍ଭ କଲେ । ସେହି ଖାତାର ଶେଷ ପୃଷ୍ଠାରେ ନିଜର ଠିକଣା ସହ First Reader ବୋଲି ମଧ୍ୟ ଖୁସିରେ ଲେଖିଦେଲେ । କହିବା ବାହୁଲ୍ୟ ଲେଖା ଉପରେ ସେ ଯେଉଁ ସୁଚିନ୍ତିତ ମତାମତ ଦେଲେ ତାହା ମୋର କ୍ଷୁଦ୍ର ମସ୍ତିଷ୍କର ଉତ୍ସାହକୁ ଶତଗୁଣିତ କରିସାରିଥିଲା । ଏଠାରେ ସେହିବାବୁଙ୍କର ପରିଚୟ ସଂକ୍ଷେପରେ ଦେବା ଠିକ୍ ମନେ କରୁଛି । ବାବୁ ଜଣକୁ ଭୁବନେଶ୍ୱରର ଜଣେ ଉତ୍ତମ ଧୀ-ସଂପନ୍ନ ଅବସରପ୍ରାପ୍ତ ଇଂଜିନିୟର । ପାଠପଢ଼ା ସମୟରେ ଛାତ୍ରବୃତ୍ତି (TALENT SCHOLARSHIP) ପାଇ ଏକବର୍ଷ ଇଂଲଣ୍ଡରେ ଅଧ୍ୟୟନ କରି ଫେରିଛନ୍ତି । ପୃଥିବୀର କେତେଗୋଟି

ଦେଶ ଭ୍ରମଣ କରିଛନ୍ତି ଓ ପ୍ରତ୍ୟେକ ସ୍ଥାନର ଇତିହାସ ଓ ଭୂଗୋଳ ପର୍ଯ୍ୟବେକ୍ଷଣ କରିବାରେ ଆଗ୍ରହୀ ଅଟନ୍ତି । ପତ୍ନୀ ମହୋଦୟାଙ୍କ ଚେହେରା ନିକଟରେ ବୟସ ହାର ମାନିଛି । ଅଳ୍ପାହାରୀ, ପୁରୀ ଝିଅ ତେଣୁ ସବୁବେଳେ ପୂଜା ଆରାଧନାରେ ଲିପ୍ତ, ଇସ୍କନ ତରଫରୁ ଆୟୋଜିତ ଉତ୍ତର, ପଶ୍ଚିମ ଓ ନେପାଳ ଯାତ୍ରା ଶେଷ କରି ବର୍ତ୍ତମାନ ଦକ୍ଷିଣ ଭାରତ ତୀର୍ଥଯାତ୍ରାରେ ବାହାରିଛନ୍ତି । ପୁରୁଣା ଓଡ଼ିଆ କଥାଚିତ୍ର ''ଶ୍ରୀ ଲୋକନାଥ''ର ଅଭୁଲା ଗୀତ ''ଫୁଲ ରସିଆରେ ମନ ମୋର ଛୁଇଁ ଛୁଇଁ ଯା' ଯା''' ଭଳି ମୋର ଲେଖାଟି ପାଠକ ମହୋଦୟଙ୍କ ମନକୁ ଛୁଇଁ ପାରିଥିବାର ମୁଖ୍ୟ କାରଣ - ଇସ୍କନ ବାବାଙ୍କର ତୀର୍ଥଯାତ୍ରା କାର୍ଯ୍ୟକ୍ରମ ସବୁବେଳେ ଏକ ପ୍ରକାରର ଓ ସେହି ମହୋଦୟ ଯେଉଁ ସ୍ଥାନ, ଦୃଶ୍ୟ ଓ ଇସ୍କନ ସୁବିଧା ଉପଭୋଗ କରିଛନ୍ତି ତା'ର ପ୍ରାଞ୍ଜଳ ବିବରଣୀ ନିଜ ସ୍ମୃତିକୁ ରୋମନ୍ଥନ କରିବାରେ ଖୋରାକ ଯୋଗାଇଥିଲା । ତୀର୍ଥଯାତ୍ରା ସମୟରେ ଏଇଥରର ବିବରଣୀ ଲେଖିବା ପାଇଁ ସେ ଉତ୍ସାହିତ କରୁଥିଲେ । ତୀର୍ଥଯାତ୍ରା ପରେ ''ବସନ୍ତ ପଞ୍ଚମୀ'' ଦିନ ରଥ କାଠ ଅନୁକୂଳ ହେବା ପରି ଲେଖା ଅନୁକୂଳ କରିବା ପାଇଁ ଫୋନ୍ ମାଧ୍ୟମରେ ସୂଚନା ଦେଲେ । ତେଣୁ ମୁଁ ବାଧ୍ୟ ହୋଇ ବସନ୍ତ ପଞ୍ଚମୀରେ ଦୁଇ ଧାଡ଼ି ଲେଖା ଆରମ୍ଭ କଲି ସିନା କାର୍ଯ୍ୟବ୍ୟସ୍ତତା ଯୋଗୁଁ ମହାଶିବରାତ୍ରି ଦିନ ପର୍ଯ୍ୟନ୍ତ ଲେଖିବା ସୁଯୋଗ ପାଇପାରିଲି ନାହିଁ । ମୋର ପ୍ରେରଣାର ଉତ୍ସ ଶ୍ରୀଯୁକ୍ତ ରାମଚନ୍ଦ୍ର ସାହୁ ଦମ୍ପତିଙ୍କ ସୁସ୍ଥ ନିରାମୟ ଜୀବନ ପାଇଁ ଜଗଦୀଶ୍ୱରଙ୍କ ନିକଟରେ ପ୍ରାର୍ଥନା କରି ଲେଖା ଆରମ୍ଭ କରୁଛି ।

ଦକ୍ଷିଣ ଭାରତ ତୀର୍ଥଯାତ୍ରାର ଆୟୋଜକ ବାବା ପଦ୍ମଧର ଦାସ ମହୋଦୟ ସମୟ ଅଭାବରୁ ମୋର ବିବରଣୀର ପ୍ରଥମାର୍ଦ୍ଧ ପଢ଼ି ଏଇଥର ଚଞ୍ଚଳ ଲେଖି ପଠାଇବା ପାଇଁ ମୋତେ ସମୟେ ସମୟେ ସ୍ମରଣ କରାଉଥିଲେ । ବାବାଙ୍କର ପରିଚୟ ମାଗି ଦିନେ ଜାଣିବାକୁ ପାଇଲୁ ବାବା ଆମ ଗଂଜାମ ଜିଲ୍ଲା ବୁଗୁଡା ବାସିନ୍ଦା । ବୟସ ବତିଶି, ୨୨ ବର୍ଷ ବୟସରୁ ଇସ୍କନ ସଂସ୍ଥା ସହ ସଂପୃକ୍ତ ଅଛନ୍ତି । ଉଦୀୟମାନ ଯୁବ ସନ୍ନ୍ୟାସୀ ପଦ୍ମଧର ଦାସ ଶାନ୍ତ ଓ ଗମ୍ଭୀର ଭାବେ ଯାତ୍ରାକାଳୀନ ବିଭିନ୍ନ ସମସ୍ୟାର ଚତୁରତାର ସହ ଆଶୁ ସମାଧାନ କରି ବର୍ଷୀୟାନ ଅସହିଷ୍ଣୁ ତୀର୍ଥଯାତ୍ରୀଙ୍କୁ ଉଚିତ ଶିକ୍ଷା ଦେଉଥାନ୍ତି । ସେ ଧୈର୍ଯ୍ୟ ଓ ସହନଶୀଳତାର ମୂର୍ତ୍ତିମନ୍ତ ପ୍ରତୀକ । ବାବାଙ୍କର ସଦ୍‌ଗୁଣ ଶିକ୍ଷା ପାଇଁ ଆଶୀର୍ବାଦ ଭିକ୍ଷା କରି ମସ୍ତକ ନତ କରୁଛି ଓ କଂସକେଶୀନିସୂଦନ ଶ୍ରୀ ମଧୁସୂଦନଙ୍କ ନିକଟରେ ବାବାଙ୍କର ମାନସିକ ଓ ଶାରୀରିକ ଶକ୍ତି ବର୍ଦ୍ଧନ ପାଇଁ ପ୍ରାର୍ଥନା କରୁଛି ।

## ପୂର୍ବାଭାସ :

ହରେକୃଷ୍ଣଙ୍କ ଅହେତୁକୀ କୃପା ଓ ଇସ୍କନ ବାବାମାନଙ୍କର ଅତୁଳନୀୟ ସେବା ଉତ୍ତରଭାରତ ତୀର୍ଥଯାତ୍ରା ସମୟରେ ହିଁ ଦକ୍ଷିଣ ଭାରତ ତୀର୍ଥଯାତ୍ରା ପାଇଁ ଆମ ମନକୁ ଉଚ୍ଚାଟ କରିଥାଏ । ସ୍ୱଳ୍ପ ସମୟ ବ୍ୟବଧାନରେ ନଭେମ୍ବର ମାସର ପଶ୍ଚିମ ଭାରତ ତୀର୍ଥଯାତ୍ରାର ବିଜ୍ଞାପନ ଇସ୍କନ ମନ୍ଦିରରେ ଦେଖିଥିଲେ ମଧ୍ୟ ଆମର ମୁଖ୍ୟ ଉଦ୍ଦେଶ୍ୟ ପୂରଣ - ଶ୍ରୀରାମେଶ୍ୱରଙ୍କ ମସ୍ତକରେ ଗଙ୍ଗାଭିଷେକ ପାଇଁ ପ୍ରତ୍ୟହ ଇଷ୍ଟଦେବୀଙ୍କ ଠାରୁ ଆରମ୍ଭ କରି ସର୍ବଦେବଦେବୀଙ୍କୁ ପ୍ରାର୍ଥନା କରି ଚାଲିଥାଉଁ । ଶେଷରେ କର୍ମକ୍ଷେତ୍ରର ସକଳ ବାଧାବିଘ୍ନ ଭଗ୍ନସ୍ୱାସ୍ଥ୍ୟ ଓ ଅର୍ଥଯୋଗାଡ଼କୁ ପଛରେ ପକାଇ ତୀର୍ଥଯାତ୍ରା ପାଇଁ ମନରେ ଦୃଢ଼ ସଂକଳ୍ପ ନେଲୁ । ଏଥର ଟିକଟ କରିବା କାର୍ଯ୍ୟକ୍ରମ ଆରମ୍ଭ ହେଲା । ମୋ’ ଦିଅର ଗୌରୀବାବୁ ତା ୧୦.୧୧.୨୦୧୦ ଦିନ ଇସ୍କନ ମନ୍ଦିରରେ ଟ. ୨୦୦୦.୦୦ (ଦୁଇ ହଜାର ଟଙ୍କା) ମାତ୍ର ଅଗ୍ରୀମ ଦେଇ ଦୁଇଟି ଟିକଟ କରିବା ବିଷୟ ଫୋନ୍‌ରେ ଜଣାଇଲେ । ତା ୦୧.୦୧.୨୦୧୧ ଇଂରାଜୀ ନୂତନ ବର୍ଷରେ ବଳକା ଟ. ୨୧,୦୦୦.୦୦(ଏକୋଇଶ ହଜାର ଟଙ୍କା) ମାତ୍ର ଗୌରୀବାବୁଙ୍କ ମାଧ୍ୟମରେ (ବାବୁଙ୍କୁ କିଛି ଅର୍ଥ ପଇଠ ନକରି) ଜମା କରି ଯାତ୍ରା ପାଇଁ ପୂର୍ଣ୍ଣ ପ୍ରସ୍ତୁତିରେ ଲାଗିପଡ଼ିଲୁ । ଅଣ୍ଟା ଓ ଆଣ୍ଠୁବ୍ୟଥାରେ ପୀଡ଼ିତ ଥିବାରୁ ଇସ୍କନ ବାବା ଆୟୋଜକ ପଦ୍ମଧର ମହୋଦୟଙ୍କୁ ମଧ୍ୟମ ଓ ତଳ ସିଟ୍‌ର ବ୍ୟବସ୍ଥା କରିବା ପାଇଁ ନିବେଦନ କଲୁ । ଜାନୁୟାରୀ ୨୦ରେ ଯାତ୍ରା ଆରମ୍ଭ ହେବ । ଚାହୁଁ ଚାହୁଁ ଦିନ ବିତିଯାଉଥାଏ । ଗତ ତୀର୍ଥଯାତ୍ରାର ଅନୁପସ୍ଥିତିରେ ବିଲ, ସ୍କୁଲ ଓ ଘରକାମ ପଛରେ ପଡ଼ିଥାଏ । ସେ ସବୁ ଭରଣା କରୁ କରୁ କେତେବେଳେ ବହୁ ପ୍ରତୀକ୍ଷିତ ସେହି ଶୁଭ ଦିନ ପହଞ୍ଚିଗଲା ଆମେ କିଛି ଅନୁଭବ କରିପାରିଲୁ ନାହିଁ । ଉତ୍ତର ଭାରତ ତୀର୍ଥଯାତ୍ରା ସମୟରେ ଯାତ୍ରାର ଶୁଭ ଅନୁକୂଳ ଯଜ୍ଞ ବିଧାନ ବିଷୟ ତୀର୍ଥଯାତ୍ରୀମାନଙ୍କଠାରୁ ଶୁଣି ହୋମ ଯଜ୍ଞ ଓ ଇସ୍କନ ମନ୍ଦିରରୁ ସାମୂହିକ ଯାତ୍ରାରମ୍ଭ ପାଇଁ ମନ ବ୍ୟାକୁଳ ହେଉଥିଲା । ତେଣୁ ପୂର୍ବଦିନ ପୂଜା ହୋମ ଦର୍ଶନ ପାଇଁ ଠିକ୍ କଲୁ । ଜାନୁୟାରୀ ୧୬ ତାରିଖରେ ଡ଼ାକ୍ତର ପରାମର୍ଶ କରିବାକୁ ଯିବା ଅବସରରେ ମୋ ସ୍ୱାମୀ ତା ୧୯.୦୧.୨୦୧୧ ପାଇଁ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମର (OSRTC) ଦିନ ୧ଘ. ୪୫ ମି. ବସ୍‌ରେ ଭୁବନେଶ୍ୱର ପାଇଁ ଦୁଇଟି ଅଗ୍ରୀମ ଟିକଟ କରିଥିଲେ । ତା ୧୮.୦୧.୨୦୧୧ ରେ ବିଦ୍ୟାଳୟରୁ ଓ ଗାଁରୁ ବିଦାୟ ମାଗିସାରିଥିଲୁ । ତା ୧୯.୦୧.୧୧ରେ ବମକୋଇରୁ ସକାଳ ୮ଘ. ସମୟରେ କାର ଯୋଗେ ବ୍ରହ୍ମପୁର ଅଭିମୁଖେ ଯାତ୍ରାରମ୍ଭ କଲୁ ।

ବ୍ରହ୍ମପୁରରେ ନଣନ୍ଦ ଓ ଭଉଣୀ ଘରୁ ଦେଖା ସାକ୍ଷାତ ଶେଷ କରି ନିତ୍ୟାନନ୍ଦଙ୍କର ଘରେ ମଧ୍ୟାହ୍ନ ଭୋଜନ ସାରି ଦିନ ୨ ଘଣ୍ଟାରେ ବ୍ରହ୍ମପୁରସ୍ଥ ପୁରୁଣା ବସ୍‌ଷ୍ଟାଣ୍ଡରେ ବସ୍‌ରେ ଚଢ଼ିଲୁ । ଭୁବନେଶ୍ୱର କଳିଙ୍ଗ ବିହାର ଛକରେ ପହଞ୍ଚିଲୁ । ସଂଧ୍ୟା ୫ଘ. ୪୫ ମି. ରେ ସଂଧ୍ୟାରେ ଗୌରୀ ଘରେ ପହଞ୍ଚି କଥାବାର୍ତ୍ତା ପରେ ରାତ୍ରି ଭୋଜନ ଶେଷ କରି ବିଶ୍ରାମ ନେଲୁ ।

## ତା. ୨୦.୦୧.୨୦୧୧, ଗୁରୁବାର

ସର୍ବମଙ୍ଗଳ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରି ଘରୁ ବାହାରି ସକାଳ ୭ଘ.୫୦ମି. ସମୟରେ ଇସ୍କନ ମନ୍ଦିରରେ ପହଞ୍ଚିଲୁ । ସେଠାରେ ୯ଘ.୩୦ମି.ରେ ଯଜ୍ଞ ଆରମ୍ଭ ହେଲା । ସେହିଦିନ ସେଠାରେ ଉପସ୍ଥିତ ବହୁ ତୀର୍ଥଯାତ୍ରୀ ଦଂପତିଙ୍କ ମଧ୍ୟରୁ ସୌଭାଗ୍ୟ ବଶତଃ ଯଜ୍ଞ ପୁରୋହିତ ଆମକୁ ଯଜ୍ଞର କର୍ତ୍ତା ହେବା ପାଇଁ ନିମନ୍ତ୍ରଣ କଲେ । ଆମେ ନିଜକୁ ଅତି ଭାଗ୍ୟଶାଳୀ ମନେକରି ଯଜ୍ଞାନୁଷ୍ଠାନର କର୍ତ୍ତା ସାଜିଲୁ ସିନା ଫେରିବା ପର୍ଯ୍ୟନ୍ତ ମନରେ ଏକ ଅଜଣା ଭୟ ଜମାଟ ବାନ୍ଧି ରହିଥିଲା, କାଳେ ଯାତ୍ରାକାଳୀନ ଅସୁବିଧା ପାଇଁ ଆମକୁ କେହି ଦାୟୀ କରିବେ ବୋଲି, ମାତ୍ର ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛାନୁସାରେ ଏହିଥର କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ ହେବାର ଦେଖାଯାଇନଥିଲା । ପୂର୍ଣ୍ଣାହୂତି ପରେ ଦିନ ୧୧ଘ.୦୫ମି. ସମୟରେ ଇସ୍କନ "ଗୋବିନ୍ଦ ବଜାର" ରୁ ଟୋକେନ୍ ଦେଇ ପ୍ରସାଦ ସେବନ କରି ଖୁବ୍ ତରବରରେ ଆମ ପାଇଁ ଉଦ୍ଦିଷ୍ଟ ବସ୍‌ରେ ଚଢ଼ିଲୁ । ଆମ ଟ୍ରେନ୍ ମାଡ୍ରାସ୍ ଏକ୍ସପ୍ରେସ୍‌ର ଭୁବନେଶ୍ୱରରୁ ଛାଡ଼ିବା ସମୟ ଥିଲା ୧୨ଘ.୧୦ମି.। ରାସ୍ତାରେ ଟ୍ରାଫିକ୍ ଭିଡ଼ ଯୋଗୁଁ ଷ୍ଟେସନ ପର୍ଯ୍ୟନ୍ତ ବସ୍ ପହଞ୍ଚିବା ସମ୍ଭବ ହୋଇପାରିଲା ନାହିଁ । ଅଧା କିଲୋମିଟର ରାସ୍ତା ଜିନିଷ ବୋହି ନେଇ ଷ୍ଟେସନର ୪ନଂ ପ୍ଲାଟଫର୍ମରେ ପଛପଟେ ପହଞ୍ଚିଲୁ । ସେଦିନ ଷ୍ଟେସନରେ ଗୌରୀ ବିଦାୟ ଜଣାଇବାକୁ ଆସିଥିବାରୁ ଜିନିଷ ବୋହିବା କଷ୍ଟ ଲାଘବ ହୋଇଗଲା । ରାସ୍ତାରେ ମୋ ସ୍ୱାମୀଙ୍କର ଚପଲ ଅଦଳ ବଦଳ ହେଲା ପରେ ଟ୍ରେନରେ ଚଢ଼ି ଆରାମରେ ନିଶ୍ୱାସ ନେଲୁ । ଟ୍ରେନ୍ ନିର୍ଦ୍ଧାରିତ ସମୟରେ ଭୁବନେଶ୍ୱର ଅତିକ୍ରମ କଲା । ଇସ୍କନ ମନ୍ଦିରରେ ପହଞ୍ଚି ପ୍ରଥମେ ଆମ ପୂର୍ବ ପରିଚିତ ତୀର୍ଥ ସାଥୀଙ୍କୁ ଖୋଜିବା ଆରମ୍ଭ କରିଥିଲୁ । ମନ୍ଦିରରେ ପଟ୍ଟନାୟକ ଦମ୍ପତିଙ୍କ ସହ ଦେଖାହୋଇଥିଲା । ଷ୍ଟେସନରେ ସ୍ୱାଇଁ ବାବୁ ଓ ଆଉ କେତେଜଣଙ୍କ ସହ ଦେଖାହେଲା । ବ୍ରହ୍ମପୁର ଷ୍ଟେସନରେ ନାୟକ ବାବୁ, ଗୋଳନ୍ଥରାର ଅବସରପ୍ରାପ୍ତ ଶିକ୍ଷକ ସାହୁ ଦମ୍ପତି ଓ ଆଉ କେତେ ଜଣ ପୂର୍ବ ସାଥୀଙ୍କ ସହ ସାକ୍ଷାତ ହେବାରୁ ଆମ

ଉତ୍ସାହ ଓ ଆଗ୍ରହ ସୀମା ଟପିଗଲା । ଏଥିର ଆମ ତୀର୍ଥ ଯାତ୍ରୀ ସଂଖ୍ୟା ୧୨୦ । ଆମର କ୍ରମିକ ସଂଖ୍ୟା ୧୬ ଓ ୧୭ । ବ୍ରହ୍ମପୁର ଷ୍ଟେସନରେ ନିତ୍ୟାନନ୍ଦ ଓ ରୀନୁ ମା'ଙ୍କ ସହ ମିଶି ତାଙ୍କଠାରୁ ପାଣି ବୋତଲ ଓ ଉତ୍ତର ଭାରତ ତୀର୍ଥଯାତ୍ରା ବିବରଣୀର ଜେରକ୍ସ କପି (XEROX COPY) ସଂଗ୍ରହ କଲୁ । ଇତ୍ୟବସରରେ ରେଳଗାଡ଼ିର ଗତି ସହ ବନ୍ଧୁ ମିଳନ ପରେ ଆମ ମନର ଗତି ସମତାଳରେ ଚାଲିଥାଏ । ସଂଧ୍ୟା ବେଳକୁ ହିସାବ କରି ନେଲୁ ଗତ ତୀର୍ଥ ସାଥୀଙ୍କ ସଂଖ୍ୟା ଆନୁମାନିକ ୪୦ଉପରେ ହୋଇପାରେ । ପୁଣି ଏମାନଙ୍କ ଭିତରୁ ଦୁଇ/ଚାରି ଜଣ ମଧ୍ୟବର୍ତ୍ତୀ କାଳୀନ ପଶ୍ଚିମ ଭାରତ ତୀର୍ଥ ଯାତ୍ରା ମଧ୍ୟ ଶେଷ କରିଛନ୍ତି । ସଂଧ୍ୟାରେ ଗାଡ଼ି ଭିତରେ ଭଜନ କୀର୍ତ୍ତନ ଶେଷ ହେଲା ପରେ ଆଙ୍କୁଶପୁର 'ରାମ ଗୋବିନ୍ଦ ଇସ୍କନ ମନ୍ଦିର'ରୁ ପ୍ରସ୍ତୁତ ହୋଇ ଆସିଥିବା ସ୍ୱାଦିଷ୍ଟ ପ୍ରସାଦ ସେବନ କରି ଚେନ୍ନାଇରେ ଓହ୍ଲାଇବା ସମୟ ସକାଳ ୮ଘ.୫୫ମି. ହୋଇଥିବାରୁ ଆରାମଦାୟକ ନିଦ୍ରାରେ ହଜିଗଲୁ ।

### ତା. ୨୧.୦୧.୨୦୧୧, ଶୁକ୍ରବାର

ନିର୍ଦ୍ଧାରିତ ସମୟ ୮ଘ.୫୫ମି.ରେ ଟ୍ରେନ ଚେନ୍ନାଇ ଷ୍ଟେସନରେ ପହଞ୍ଚିଲା । ୨୦୦୦ ମସିହାରେ O.T.A [OFFICERS TRAINING ACADEMY] ରୁ ବଡ଼ପୁଅର SHORT SERVICE COMMISSIONED OFFICER ର PASSING OUT PARADE ରେ ଯୋଗ ଦେବା ପାଇଁ - ତତ୍କାଳୀନ ସ୍ଥଳସେନା ମୁଖ୍ୟ ଶ୍ରୀଯୁକ୍ତ ଭି.ପି.ମଲ୍ଲିକଙ୍କ ଠାରୁ ନିମନ୍ତ୍ରଣ ପାଇ ସେପ୍ଟେମ୍ବରର ୩୦ରୁ ଅକ୍ଟୋବର ୨ ଏପରି ୩ ଦିନ ଚେନ୍ନାଇରେ ରହି ବୁଲିବାର ସୁଯୋଗ ପାଇଥିଲୁ । ୧୧ ବର୍ଷର ବ୍ୟବଧାନ ପରେ ଚେନ୍ନାଇ ସେଣ୍ଟ୍ରାଲ ଷ୍ଟେସନର ସେଭଳି କିଛି ଆଖିଦୃଷ୍ଟିଆ ପରିବର୍ତ୍ତନ ଲକ୍ଷ୍ୟ କରିପାରିଲୁ ନାହିଁ । ନିଜ ବ୍ୟବସ୍ଥାରେ ଅଟୋ ଯୋଗେ ନିକଟସ୍ଥ ବାଭା ଲଜ୍‌ରେ ପହଞ୍ଚିଲୁ । ବାଭା ଲଜ୍‌ର ଚତୁର୍ଥ ମହଲାରେ ୪୨୧ନଂ ରୁମରେ ଆମ ପାଇଁ ରହିବା ବ୍ୟବସ୍ଥା ହୋଇଥିଲା । ଲିଫ୍ଟ ବ୍ୟବସ୍ଥା ଥିବାରୁ ନିଶ୍ଚିନ୍ତରେ ଜିନିଷ ଉପରକୁ ଉଠେଇଲୁ । ସ୍ନାନାଦି ନିତ୍ୟକର୍ମ ସମାପନ ପରେ ୭ମ ମହଲାରେ ପ୍ରସାଦ ସେବନ କଲୁ । ଏଠାରେ ବାଭା ଲଜ୍‌ର ୨୪ଘଣ୍ଟିଆ ରୁମ୍ ସେବା ବିଷୟରେ ପଦେ କହି ରଖେ । ଆମର ୧୨୦ଜଣ ଯାତ୍ରୀଙ୍କୁ ଲିଫ୍ଟରେ ତଳ ଉପର ନେବା ଆଣିବାରେ ଜଣେ ଲୋକ ଭଦ୍ର ଓ ନମ୍ର ବ୍ୟବହାର ପ୍ରଦର୍ଶନ ପୂର୍ବକ ସାହାଯ୍ୟ କରୁଥିଲେ । ସପ୍ତମ ମହଲାରେ ପୂର୍ବରୁ ADVANCE PARTY ଯାଇ ପ୍ରସ୍ତୁତ କରିଥିବା ସ୍ୱାଦିଷ୍ଟ ଭୋଜନ ସେବନ ସମୟରେ ଭଂଜନଗରର କେତେ ଜଣ

ଯାତ୍ରୀଙ୍କ ସହ ମିଶିଲୁ । ସେଠାରେ ଜଣକ ମୁହଁରୁ ଶୁଣିବାକୁ ପାଇଲୁ ସ୍ୱୟଂ ଗଙ୍ଗା ଯାହାଙ୍କ ଶିରରେ ବିରାଜୁଛନ୍ତି ତାଙ୍କ ମସ୍ତକରେ ଢ଼ାଳଟିଏ ଗଂଗାଜଳ ଢ଼ାଳିବା ଅନାବଶ୍ୟକ । ମତାମତ ଶୁଣିବା ପରେ ଆମେ ଭାବିଲୁ ଦୁର୍ବଳ ସ୍ୱାସ୍ଥ୍ୟ ଓ କାର୍ଯ୍ୟବ୍ୟସ୍ତତା ଯୋଗୁଁ ରାମେଶ୍ୱରୀଜୀଙ୍କୁ ଗଙ୍ଗାଭିଷେକ ହିଁ ଆମର ଏକମାତ୍ର ଚିନ୍ତା ଓ ଉଦ୍‌ବେଗର ବିଷୟ - ତାହା କେବଳ କଳି କଳୁଷ ହାରିଣୀ ପତିତପାବନୀ ଗଙ୍ଗାମାତା ଓ ପିତା ଗଂଗାଧର ହିଁ ଜାଣନ୍ତି । 'ନାନା ମୁନିଙ୍କର ନାନା ମତ' - ଆପ୍ତବାକ୍ୟଟିକୁ ସ୍ମରଣ କଲୁ । ପ୍ରସାଦ ସେବନ ପରେ ନିର୍ଦ୍ଧାରିତ ବସ୍ ଯୋଗେ କାଞ୍ଚିପୁରମ୍ ଯିବା ପାଇଁ ତଳକୁ ଓହ୍ଲାଇ ବସ୍ ଅପେକ୍ଷାରେ ରହିଲୁ । ଟିକଟ ସଂଗ୍ରହ କରିବା ଦିନ ଆମକୁ ଇସ୍କନ ବାବା ଆମର "ଜଗନ୍ନାଥ" ବସ୍ ବୋଲି କହିଥିଲେ, କିନ୍ତୁ ଏଥର ସମଗ୍ର ଯାତ୍ରାକାଳମଧ୍ୟରେ ସେଭଳି କୌଣସି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ହୋଇ ପାରି ନଥିବାରୁ ସମୟେ ସମୟେ ସାମାନ୍ୟ ଅଶାନ୍ତି ସୃଷ୍ଟି ହେଉଥିଲା । ୧ଘଣ୍ଟା ରାସ୍ତା ପାର୍ଶ୍ୱର ବୃକ୍ଷ ଛାୟା ତଳେ ଅପେକ୍ଷା କରିବା ପରେ ୨ଟି ବସ୍ ଓ ୧ଟି କ୍ୟାଣ୍ଟର ପହଞ୍ଚିଲା । ବସ୍ ଗୁଡ଼ିକରେ ସମସ୍ତ ଯାତ୍ରୀ ଉଠିଲୁ । କ୍ରମିକ ସଂଖ୍ୟା ୦୧ ରୁ ୫୦ ପର୍ଯ୍ୟନ୍ତ ଓ ୧୦୫,୧୦୬ ଆମ ବସ୍‌ରେ ଥିଲେ । ବସ୍ କର୍ମଚାରୀଙ୍କର ଏକ ବିଲକ୍ଷଣ ବ୍ୟବହାର ଦେଖିବାକୁ ପାଇଲୁ । ଆମେ ଶୁଦ୍ଧ ଇଂରାଜୀ କହିବାରେ ଅନଭିଜ୍ଞ, କାମଚଳା ହିନ୍ଦୀରେ ପାରଙ୍ଗମ ଓ ମାତୃଭାଷାରେ ବିଦ୍ୱାନ ଥିଲୁ । ସେହି ଲୋକମାନେ ଆମ କଥା ନ ବୁଝିଲା ଭଳି ଛଳନା କରନ୍ତି, ଇସ୍କନ ବାବାମାନେ ଯାହା ହିନ୍ଦୀରେ ବୁଝେଇବେ ତାହା ପଦେ ପଦେ ଗ୍ରହଣ କରନ୍ତି, ସେଦିନ ଆମ ଭାଗ୍ୟରେ ଜଣେ ଅଡୁଆ ଡ୍ରାଇଭର ଘଟିଥିଲେ । ଦିନ ଗୋଟାଏରେ ଯାତ୍ରା ଆରମ୍ଭ ହୋଇଥିଲା । ବିଷ୍ଣୁ କାଞ୍ଚି ଓ ଶିବ କାଞ୍ଚି ଦର୍ଶନ ପରେ ପୁଣି ସେହି ଲଜ୍‌କୁ ଫେରିବାକୁ ଠିକ୍ କରାଯାଉଥିଲା । ବସ୍‌ଟି ଅଧଘଣ୍ଟାଏ ଚଳାଇବା ପରେ ଡ୍ରାଇଭର ଗାଡ଼ିରୁ ଓହ୍ଲାଇବା ଖାଇବା ପାଇଁ କିନ୍ତୁ ସେହି ପାଖ ଆଖର ଗୋଟିଏ ଦୁଇଟି ହୋଟେଲରେ ଖାଇବା ଶେଷ ହୋଇଯାଇଥିଲା । ବସ୍‌ର ହେଲ୍‌ପର୍ ୧୫/ ୧୬ ବର୍ଷର ପିଲାଟିଏ । ସେ ଯାଇ ବିସ୍କୁଟ ଦୁଇ ପ୍ୟାକେଟ ନେଇ ଆସିଲା ଓ ସେଦିନ ସେତିକିରେ ସେମାନେ ମଧ୍ୟାହ୍ନ ଭୋଜନ ଶେଷ କରିଥିଲେ । ବିକଳ ଲାଗିଲା ଘଟଣା ଦେଖି କିନ୍ତୁ ଆମମାନଙ୍କ ପାଖରେ ମଧ ଖାଦ୍ୟ ପଦାର୍ଥ ନଥିବାରୁ ଆମେ ନିଜକୁ ଅସହାୟ ମନେ କରୁଥିଲୁ । ତା'ପରେ ପୁଣି ୧୦/୧୫ ମିନିଟ୍ ଗଲା ପରେ ବସ୍ ଅଟକିଲା । ଭାବିଲୁ, ଚକାରେ ପବନ ନାହିଁ, କିନ୍ତୁ ବସ୍‌ର ଏକ ଯନ୍ତାଂଶ ଖସି ଯାଇଥିବାରୁ ବସ୍ ଯାଇପାରିବ ନାହିଁ ବୋଲି ଡ୍ରାଇଭର ଠାରୁ ଶୁଣିବାକୁ ପାଇଲୁ । ଶେଷରେ ବୁଲାବୁଲି କରି ପାଖ ଆଖ ଦୋକାନରୁ ଇଂଜିନ୍‌ର ଯନ୍ତ୍ରାଂଶ ସଂଗ୍ରହ କରି

ଗାଡ଼ିରେ ଖଞ୍ଜି ୩୦/୩୫ ମିନିଟ୍ ପରେ ଗାଡ଼ି ଚଳାଇଲେ । ସେଦିନ ସେହି ରାଜପଥର ଖରାବେଳଟାରେ ଆମେ ଆମର ପ୍ରିୟ ଖୋକା ଭାଇଙ୍କୁ ସ୍ମରଣ କଲୁ । ବୋଧହୁଏ ସେ ଆମ ପାଇଁ ଗୀତ ଲେଖି ସ୍ୱର ସଂଯୋଜନା କରିଥିଲେ । ୧୯୭୨/୭୩ ମସିହାର ହିଟ୍ ରେକର୍ଡ଼ ଗୀତ ଥିଲା । 'କାଞ୍ଚି ଅଭିଯାନ', ଗୀତର ପ୍ରଥମ ପଦଟି ଝାପ୍ସା ମନେ ପଡୁଛି । ଗୀତଟି ଏପରି -

"ଟପ୍ ଟପ୍ ଘୋଡ଼ା ଚାଲେ, ଘୋଡ଼ା ଚାଲେ
ଦିନ ଦିପହର ଖରାବେଳେ, ଖରାବେଳେ
କାଞ୍ଚିଗଡ଼ ବହୁଦୂର ରାଜାପୁଅ ସୁକୁମାର
ଟପ୍ ଟପ୍ ଘୋଡ଼ା ଚାଲେ, ଘୋଡ଼ା ଚାଲେ" ।

ଆମ ପାଇଁ ବର୍ତ୍ତମାନ ସାମାନ୍ୟ ପଦ ପରିବର୍ତ୍ତନ କଲେ ଏମିତି ହେବ -

"ଘର୍‌ର ଘର୍‌ର ବସ୍ ଚାଲେ, ବସ୍ ଚାଲେ
ଦିନ ଦିପହର ଖରାବେଳେ, ଖରାବେଳେ
କାଞ୍ଚିଗଡ଼ ବହୁଦୂର ଇସ୍କନ ଯାତ୍ରୀ ସୁକୁମାର
ଘର୍‌ର ଘର୍‌ର ବସ୍ ଚାଲେ, ବସ୍ ଚଲେ" ।

ବସ୍‌ର ମରାମତି କାମ ଚାଲିଥିବା ଅବସରରେ ମଧୁର ଆଳାପ ଆଲୋଚନା, ଅଭୂଲା ଅତୀତ ତଥା ବିଗତ ଯୌବନର ଆବେଗ ଅନୁଭୂତି ସ୍ମରଣ କରୁଥିଲୁ । ପ୍ରୌଢ଼ ଓ ବୃଦ୍ଧ ଯାତ୍ରୀଗଣ ଯୌବନକୁ ରୋମନ୍ଥନ କରୁ କରୁ ବସ୍ ପହଞ୍ଚିଲା ବିଷ୍ଣୁ କାଞ୍ଚି ନିକଟରେ ଦିନ ୩ ଟାରେ । ଚେନ୍ନାଇ ଠାରୁ ବିଷ୍ଣୁ କାଞ୍ଚିର ଦୂରତା ୧୪୦ କି.ମି । ସେଠାରେ ପହଞ୍ଚିଲା ବେଳକୁ ମନ୍ଦିର ବନ୍ଦ । ସମ୍ମୁଖରେ ତାମିଲନାଡୁ ସମବାୟ ଲୁଗା ଦୋକାନରେ ଆମ ଯାତ୍ରୀ ମାନଙ୍କର ପ୍ରବେଶ ଦେଖିବାକୁ ପାଇଲୁ । ଏଥର ଆମର ଜଣେ ପ୍ରଗଳ୍‌ଭା ମହିଳା ଯାତ୍ରୀ ଥିଲେ ଶ୍ରୀମତୀ ଝାନ୍‌ସୀ ରାଣୀ ଲକ୍ଷ୍ମୀବାଇ ରାଉତ । ନାମ ସହିତ କାମର ମଧ୍ୟ ଯଥେଷ୍ଟ ସାମଞ୍ଜସ୍ୟ ଥିଲା । ସେ ସମସ୍ତଙ୍କୁ ଭଲ ଶାଢ଼ୀ ଓ ଉଚିତ୍ ଦାମ୍ ବୋଲି କହି କିଣିବାକୁ ପ୍ରବର୍ତ୍ତାଇଥାନ୍ତି । ମାତ୍ର କିଛି ଦର୍ଶନ ନକରି ଜିନିଷ କିଣିବା ଆମେ ପସନ୍ଦ ନ କରି ତୃଷା ନିବାରଣ ପାଇଁ ଜଣେ ଦୁଇଜଣ ଇସ୍କନ ବାବାଙ୍କ ସହ ନାରିକେଳ ପାନ ପରେ ମନ୍ଦିରରେ ଦର୍ଶନାର୍ଥୀଙ୍କର ଲମ୍ବାଧାଡ଼ିରେ ସାମିଲ୍ ହେଲୁ । ଆନୁମାନିକ ୨୦୦ରୁ ୨୫୦ ଜଣ ଯାତ୍ରୀଙ୍କର ଧାଡ଼ି ଲମ୍ବିଥାଏ । ଆମର ୧୨୦ଜଣ ସେହି ଧାଡ଼ିରେ ମିଶିଲେ । ଆଗରୁ ଦକ୍ଷିଣ ଭାରତ ମନ୍ଦିରର ଧାଡ଼ି ଦର୍ଶନ

ପାଇଁ ମାନସିକ ପ୍ରସ୍ତୁତ ହୋଇସାରିଥିଲୁ । ଖରାରେ ମନ୍ଦିର ଖୋଲିବା ସମୟ ଅପେକ୍ଷାରେ ଠିଆ ହୋଇ ରହିଲୁ । ପାର୍ଶ୍ୱରେ ଏକ ୧୦୦ଖମ୍ବ ବିଶିଷ୍ଟ ବିରାଟ ମଣ୍ଡପର ବାହ୍ୟ କାରୁକାର୍ଯ୍ୟରେ ବିମୁଗ୍ଧ ହେଲାବେଳକୁ ଟିକେଟ ବିକ୍ରି କରିବା ଲୋକ ସେଠାରେ ଉପସ୍ଥିତ ହେଲେ । ଯାତ୍ରୀ ପ୍ରବେଶ ପାଇଁ ଟ୧.୦୦ ଓ କ୍ୟାମେରା ପାଇଁ ଟ୧୦.୦୦ ମୂଲ୍ୟର ଟିକଟ ସଂଗ୍ରହ କରି ଜଣକ ପରେ ଜଣେ (ଧାଡ଼ିରେ ଠିଆ ହେବା ସ୍ଥାନ ସଂରକ୍ଷିତ ରଖିବା ପାଇଁ) ମଣ୍ଡପ ଭିତରେ ପ୍ରବେଶ କଲୁ । ବାହାରର ରୌଦ୍ର ତାପରୁ ଆସିଥିବା ଯୋଗୁଁ ପ୍ରଥମେ ଆମେ ଶୀତ ତାପ ନିୟନ୍ତ୍ରିତ କୋଠରୀ ଭଳି ଆରାମ ଅନୁଭବ କଲୁ । ବିରାଟ ମଣ୍ଡପ, ସାରା ମଣ୍ଡପ ସମର କଳା ପରୀପାଟିରେ ପୂର୍ଣ୍ଣ । ସ୍ତମ୍ଭମାନଙ୍କରେ ଯୁଦ୍ଧାଶ୍ୱର ଅପୂର୍ବ ଠାଣି, ଯୋଦ୍ଧାର ଯୁଦ୍ଧ ପ୍ରସ୍ତୁତିର କଳା କୌଶଳ ଦେଖି ସ୍ତମ୍ଭୀଭୂତ ହୋଇ ଗଲୁ । ସେଠାରେ ଜାଣିବାରେ ବୁଝିବାରେ କିଛି ମାଧ୍ୟମ ନଥିଲା । ବହି କିଣିବାକୁ ଗଲୁ । ''ଆଗ ଟଙ୍କା ପଛେ ବହି''- ଆଗ ଟଙ୍କା ଦେଇ ବହି କିଣି ପଢ଼ିବାରୁ ମଧ୍ୟ ସେହି ମଣ୍ଡପ ବିଷୟରେ କିଛି ସୂଚନା ପାଇପାରିଲୁ ନାହିଁ । ମନେ ମନେ ଭାବିନେଲୁ କେହି ରାଜା ନିକଟସ୍ଥ ରାଜ୍ୟ ଜୟ କରି ଫେରିବା ପରେ ସଫଳତାର ସ୍ମାରକୀ ରୂପେ ଏହି ଭଳି ଏକ ବିଜୟ ମଣ୍ଡପ ନିର୍ମାଣ କରି ଚିର ଅମର ହୋଇ ରହିଛନ୍ତି । ଦିନ ୪ଟାରେ ମନ୍ଦିର ଖୋଲାହେବା ଜଣାଗଲା, ମାତ୍ର ୧୫ମିନିଟ୍‌ରେ ଏତେ ଲମ୍ବା ଧାଡ଼ି ଖାଲି ହୋଇଗଲା । ବିରାଟ ଆୟତନ ବିଶିଷ୍ଟ ବିଷ୍ଣୁ କାଞ୍ଚି ମନ୍ଦିର ବେଢ଼ା । ମୁଖ୍ୟ ମନ୍ଦିର ଚୂଡ଼ାରେ ମରାମତି କାମ ଚାଲିଛି । ମନ୍ଦିର ସମ୍ମୁଖରେ ଦ୍ରାବିଡ଼ ଶୈଳୀର ସୁଉଚ୍ଚ ତୋରଣ, ଭିତର ବେଢ଼ାରେ ଛାୟା ପ୍ରଦାନକାରୀ ବଉଳ ବୃକ୍ଷରାଜି ପରିଶୋଭିତ । ଟ. ୨୫.୦୦ ମୂଲ୍ୟ ବିନିମୟରେ ଟିକଟ ସଂଗ୍ରହ କରି ବିଷ୍ଣୁ ଦେବଙ୍କ ଦର୍ଶନ ପାଇଁ ମନ୍ଦିରରେ ପ୍ରବେଶ କଲୁ । ସବୁ ପ୍ରତୀକ୍ଷାର ଅନ୍ତ ପରେ ଯାହାଙ୍କ ଦର୍ଶନ ପାଇଁ ଏତେ ବ୍ୟାକୁଳ ଥିଲୁ, ପୂଜକ ଓ ପୋଲିସ୍‌ର କଡ଼ା ଓ କଟୁ ନିର୍ଦ୍ଦେଶରେ ଆଖି ପୁରାଇ ଦେଖି ନ ପାରି ପ୍ରସ୍ଥାନ କଲୁ । ପଛକୁ ପଛ ଅନେକ ମନ୍ଦିର, ଲକ୍ଷ୍ମୀ, ସରସ୍ୱତୀ, ଗଣେଶ, ହନୁମାନ ଇତ୍ୟାଦି ମନ୍ଦିର ପ୍ରଦକ୍ଷିଣ ପରେ କେତୋଟି ଦ୍ୱାର ଅତିକ୍ରମ କରି ଅନ୍ୟ ଏକ ସଂକୀର୍ଣ୍ଣ ଦ୍ୱାର ଦେଇ ଗୋଟିଏ ମନ୍ଦିର ଭିତରେ ପଶ୍ଚିମ ଓ ଦକ୍ଷିଣ ଭାରତୀୟ ଯାତ୍ରୀ ମାନଙ୍କର ପଦାଙ୍କ ଅନୁସରଣ କରି ପହଞ୍ଚିଲୁ । ଭିତରେ ପ୍ରବେଶ କରି ଜାଣିଲୁ ସେ ଶ୍ରୀ ନରସିଂହ ସ୍ୱାମୀଜୀ । ତା'ପରେ ମୁଖ୍ୟ ଉଦ୍ଦେଶ୍ୟ ସୁନା ଝିଟିପିଟି ସନ୍ଧାନରେ ଲାଗିପଡ଼ିଲୁ । କିଏ ଏ ପଟେ ସେ ପଟେ ଏଭଳି ବିଭ୍ରାନ୍ତିକର ଧାରଣା ସବୁ ଦେଉଥାନ୍ତି । ଶେଷରେ ଆମର କେତେଜଣ ଇସ୍କନ ବାବାଙ୍କ ଠାରୁ ସଠିକ୍ ମାର୍ଗ ଅବଗତ ହେଲୁ । ଚଟାଣ ପରେ ଚଟାଣ, ଦ୍ୱାର ପରେ ଦ୍ୱାର ଦେଇ ପ୍ରବେଶ କଲୁ

ଏକ ବିରାଟ ପ୍ରକୋଷ୍ଠର ଲମ୍ବା ଧାଡ଼ିରେ । ଅଙ୍କା ବଙ୍କା ଧାଡ଼ିରେ ଆନୁମାନିକ ୫୦୦ଜଣ ଯାତ୍ରୀ ଦଣ୍ଡାୟମାନ ଦେଖି ପ୍ରଥମେ ଧୈର୍ଯ୍ୟହରା ହୋଇପଡ଼ିଲୁ । ତା'ପରେ ନିଷ୍ପତ୍ତି ନେଲୁ ଏହା ହିଁ ତ ତୀର୍ଥଯାତ୍ରା -''ଅପେକ୍ଷା, ଅସୁବିଧା, ଅବ୍ୟବସ୍ଥା - ୩ଟିର 'ଅ'ର ଅନ୍ତ ଘଟିଲେ ଗୋଟିଏ 'ଅ'- ପରଂବ୍ରହ୍ମ ଶିବ ଓ 'ଅ' ଓଁ (ଅ + ଉ + ମ)ର ଆଦି ବୀଜ ତେଣୁ ତୀର୍ଥାଟନ ସମୟରେ 'ଅ' କୁ ଛାଡ଼ିଲେ 'ଅ' ମିଳିଥାଆନ୍ତି । କହିବା ବାହୁଲ୍ୟ ଇସ୍କନ ବାବାମାନଙ୍କର ସୁପରିକଳ୍ପିତ ଯୋଜନାନୁଯାୟୀ ''ଅପେକ୍ଷା'' ବ୍ୟତୀତ ଅନ୍ୟ ଦୁଇଟିର ଆମେ କେତେବେଳେ କେଉଁଠାରେ ସମ୍ମୁଖୀନ ହୋଇନାହୁଁ । ସୁନା ଝିଟିପିଟି (Golden Lizard) ଛୁଇଁଦେଲେ ସମସ୍ତ ପାପ ଖଣ୍ଡନ ହେବା ବିଷୟରେ କାନ୍ଥରେ ଲେଖାଯାଇଥିଲା ଓ ସ୍ଥାନୀୟ ପୂଜକମାନଙ୍କଠାରୁ ଶୁଣାଯାଉଥିଲା । ଧାଡ଼ିରେ ଠିଆ ହେବା ସମୟରେ ଗୋଟିଏ ସ୍ଥାନରୁ ଟିକଟ ସଂଗ୍ରହ କରି ଗୋଟିଏ କାଠ ସିଡ଼ି ଉପର ଦେଇ ଗଲେ କାଠର ଛାତର ଫୁଲକୁ ଛୁଇଁବାକୁ ହୁଏ । ସିଡ଼ି ଉପରର ଭିଡ଼କୁ ଲକ୍ଷ୍ୟ କରି କାଠର କବାଟକୁ ଜଣେ ପୂଜକ ବାରମ୍ବାର ଆଘାତ କରୁଥାଆନ୍ତି । ଯାତ୍ରୀ ଭିଡ଼, ଅବୁଝା ଛୋଟ ଛୁଆମାନଙ୍କର କାନ୍ଦ ଓ ପୂଜକଙ୍କର ବେତମାଡ଼ ଅପେକ୍ଷାରତ ଯାତ୍ରୀଙ୍କୁ ବେଶ୍ ବିରକ୍ତିକର ମନେ ହେଉଥାଏ । ଶେଷରେ ଧାଡ଼ିରେ ପହଞ୍ଚି ସୁନା ଝିଟିପିଟିକୁ ଛୁଇଁ ଲୋକ ବିଶ୍ୱାସନୁଯାୟୀ ପାପ ଧୋଇ କିଛି ଗରମ ଶୁଖିଲା ପ୍ରସାଦ କିଣି ଗାଡ଼ିରେ ଚଢ଼ିଲୁ । ଗାଡ଼ି ଛୁଟି ଚାଲିଲା ଶିବକାଞ୍ଚି ଅଭିମୁଖେ । ଦ୍ରାବିଡ଼ ଶୈଳୀରେ ନିର୍ମିତ ଦ୍ୱାରଦେଶର ସୁଉଚ୍ଚ ତୋରଣର ଗଠନ ଠିକ୍ ବିଷ୍ଣୁ କାଞ୍ଚିର ତୋରଣ ଭଳି ଲାଗିଲା । ବିଷ୍ଣୁ କାଞ୍ଚିଠାରୁ ଶିବକାଞ୍ଚି ମନ୍ଦିର ବେଢ଼ାର ଆୟତନ ଅଧିକ । ମଝିରେ ମଝିରେ ଛୋଟ ବଡ଼ ପାର୍ଶ୍ୱ ଦେବ ଦେବୀ ମନ୍ଦିର । ମନ୍ଦିର ଭିତରେ ସୁନ୍ଦର ମନମୋହନ ଶିବଜୀଙ୍କ ସଂଧ୍ୟା ଆଳତୀ ଦର୍ଶନ କରି ପ୍ରସାଦ କିଣି ବସ୍‌ରେ ବସିଲାବେଳକୁ ସଂଧ୍ୟା ୬ଟା ୩୦ମି. । ବର୍ତ୍ତମାନ ଗାଡ଼ି କାମାକ୍ଷା ଦେବୀଙ୍କ ମନ୍ଦିର ଅଭିମୁଖେ ଚାଲିଲା । ଆଦିଗୁରୁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ସାଧନା ପୀଠ କାମାକ୍ଷ ଦେବୀ ମନ୍ଦିର । ମନ୍ଦିରର ସୁଉଚ୍ଚ ତୋରଣ ମଧ ଦେଇ ପ୍ରବେଶ କଲୁ ମନ୍ଦିର ବେଢ଼ାରେ । ପ୍ରବଳ ଜନ ସମାଗମ ଦେଖି ଇସ୍କନ ବାବା ମନ୍ଦିର ଭିତରେ ଧାଡ଼ିରେ ଠିଆ ନ ହୋଇ ଫେରିଯିବା ପାଇଁ ନିର୍ଦ୍ଦେଶ ଦେଲେ । ହେଲେ ସବୁ ଯାତ୍ରୀ ସମାନ ନୁହଁନ୍ତି । ବାବାଙ୍କର କଡ଼ା ତାଗିଦ ସତ୍ତ୍ୱେ କେତେ ଜଣ ଯାତ୍ରୀ ଧାଡ଼ିରେ ଠିଆ ହେଲେ ଏବଂ ଦେଢ଼ ଘଣ୍ଟା ପରେ ଦର୍ଶନ ସାରି ଫେରିଲେ । ଆମ ଭଳି କେତେ ଜଣ ଆଜ୍ଞାବହ ଯାତ୍ରୀ ବେଢ଼ା ଭିତରେ ଅଳଙ୍କାର ଓ ଆଭୂଷଣ ମଣ୍ଡିତ ହାତୀ ଓ ହାତୀ ଉପରେ ମା'ଙ୍କର ବିଜେ ପ୍ରତିମା ପରିକ୍ରମା ଦର୍ଶନରେ ମନ ତୃପ୍ତ କଲୁ । ପରେ ରାତି ନଅଟାରେ ବସ୍‌ରେ ସମସ୍ତଙ୍କ

ସହ ମିଶିବାରୁ ଜାଣିବାକୁ ପାଇଲୁ କେବଳ ''ଜଗନ୍ନାଥ'' ବସ୍‌ର ଯାତ୍ରୀମାନେ ହିଁ ଦର୍ଶନ ସୁଯୋଗରୁ ବଞ୍ଚିତ ହୋଇଥିଲୁ । ଶ୍ରୀ କାଞ୍ଚି କାମାକ୍ଷୀ ଆମ୍ଭାଲ ଦେବସ୍ଥାନମ୍‌ର କାମାକ୍ଷୀ ଦେବୀଙ୍କ କୃପା କଟାକ୍ଷ ଆମ ପ୍ରତି ଊଣା ବୋଲି ଭାବି ଗୁଣୁ ଗୁଣୁ ହୋଇ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ଭବାନ୍ୟଷ୍ଟକମ୍ ଓ ଦେବ୍ୟପରାଧକ୍ଷମାପନ ସ୍ତୋତ୍ରମର ପଦେ ପଦେ ଗାଇ ମନକୁ ବୁଝାଇ ନେଲୁ । ରାତି ଦଶଟାରେ ଲଜ୍‌ରେ ପହଞ୍ଚି ରାତ୍ରି ପ୍ରସାଦ ସେବନ ପରେ ଶୟନ କଲୁ ।

***ତା. ୨୨.୦୧.୨୦୧୧, ଶନିବାର***

ଚେନ୍ନାଇର ଅନ୍ୟ ଏକ ଷ୍ଟେସନ୍ ଏଗ୍‌ମୋର, ସେହି ଷ୍ଟେସନ୍‌ରୁ ତ୍ରିଚି ଏକ୍ସପ୍ରେସରେ ସକାଳ ୮ ଘ. ୨୦ ମି. ରେ ଯାତ୍ରାରମ୍ଭ ହେଲା । ଚେନ୍ନାଇ ଠାରୁ ଭେଲ୍ଲିପୁରମ୍‌ର ଦୂରତା ୧୪୧ କି.ମି । ଟ୍ରେନ୍‌ରେ ପ୍ରସାଦ ସେବନ କଲୁ । ରାସ୍ତାରେ ପକ୍ଷୀତୀର୍ଥ ରୂପେ ଖ୍ୟାତ ''ଚେଙ୍ଗଲପୁଟ'' ଷ୍ଟେସନ ପଡ଼ିଲା । ବର୍ତ୍ତମାନ ପକ୍ଷୀ ଆସି କ୍ଷୀରି ଖାଉ ନଥିବାରୁ ତୀର୍ଥ ଯାତ୍ରାର କାର୍ଯ୍ୟକ୍ରମରେ ଏହି ତୀର୍ଥସ୍ଥାନଟିକୁ ସବୁ ତୀର୍ଥଗାଡ଼ି ବାତିଲ କରିଦେଇଛନ୍ତି । ରାସ୍ତାରେ "ଚିଲିକା" ଭଳି ଏକ ବିରାଟ ହ୍ରଦ ଓ ହ୍ରଦରେ ବିହାର କରୁଥିବା ବିଦେଶାଗତ (MIGRATORY) ପକ୍ଷୀମାନଙ୍କର ବିଚରଣର ସୁନ୍ଦର ମନଲୋଭା ଦୃଶ୍ୟ ଦୃଷ୍ଟିଗୋଚର ହେଲା । ଭେଲ୍ଲିପୁରମ୍ ଷ୍ଟେସନରେ ଦିନ ୧୧ଘ. ୪୦ମି.ରେ ଟ୍ରେନ୍ ଅଟକିଲା । ଭେଲ୍ଲିପୁରମ୍ ଠାରୁ ପଣ୍ଡିଚେରୀ ୩୫ କି.ମି ରାସ୍ତା ନିର୍ଦ୍ଧାରିତ ବସ୍‌ରେ ଯିବା ବ୍ୟବସ୍ଥା ହୋଇଥିଲା । ମଧ୍ୟାହ୍ନ ୧୨ଘ. ୧୫ମି.ରେ ଇସ୍କନ ତରଫରୁ ଦୁଇଜଣ ତତ୍ତ୍ୱାବଧାରକଙ୍କ ତତ୍ତ୍ୱାବଧାନରେ ଲଗେଜ୍ ଗୁଡ଼ିକ ଷ୍ଟେସନରେ ରଖି ପଣ୍ଡିଚେରୀ ଅଭିମୁଖେ ଯାତ୍ରା କଲୁ । ପଣ୍ଡିଚେରୀରେ ଦିନ ୨ଟାରେ ପହଞ୍ଚି ପ୍ରଥମେ ମହାନ୍ ଯୋଗୀ ପରମ ସାଧକ ଶ୍ରୀ ଅରବିନ୍ଦ ଆଶ୍ରମରେ ପହଞ୍ଚିଲୁ । ୨୦୦୦ ମସିହାରେ ଦେଖିଥିବା ଶ୍ରୀ ଅରବିନ୍ଦଙ୍କ ସମାଧିରେ ପ୍ରଣାମ ଜଣାଇ ଆଶ୍ରମ ନିୟମାନୁଯାୟୀ ଲଫାପାରେ ନିଜ ଠିକଣା ସହ କିଛି ପ୍ରଣାମୀ ରଖି ବହି ଦୋକାନରେ ପ୍ରବେଶ କଲୁ । ସମୟର ସ୍ୱଳ୍ପତାକୁ ଦୃଷ୍ଟିରେ ରଖି ବହିର ନାଁ, ବିଷୟ ବସ୍ତୁ ଭଲ କରି ନ ଦେଖି ପୁଳାଏ ପୁଳାଏ ତରବରରେ ଧରି ବିଲ୍ ପୈଠ କରି ସମୁଦ୍ର କୂଳ ଅଭିମୁଖେ ଯାତ୍ରା କଲୁ । ସମୁଦ୍ରକୂଳ ବୁଲି ସାରିବା ପରେ ପୁଣି ଆଶ୍ରମର ଚତୁଃପାର୍ଶ୍ୱରେ ଅନ୍ୟ ତୀର୍ଥଯାତ୍ରୀମାନଙ୍କୁ ଖୋଜା ଖୋଜି କରି ବୁଲୁଥିବା ସମୟରେ "ଶବ୍ଦ" ନାମକ ଏକ ବହି ଦୋକାନରୁ ଆଉ କେତେଖଣ୍ଡ ବହି କିଣିଲୁ । କିନ୍ତୁ ବହୁ ଆକାଂକ୍ଷିତ "ଚିରନ୍ତନୀ" ପୁସ୍ତକଟି ନ ପାଇ ଦୁଃଖ ଅନୁଭବ କଲୁ । ନିକଟରେ ଥିବା ଗଣେଶ ମନ୍ଦିର ଅପରାହ୍ନ

୪ଟାରେ ଖୋଲାହେବ । ଜାଣିବାରୁ ନିକଟସ୍ଥ ପ୍ରମୋଦ ଉଦ୍ୟାନରେ (PARK) ସମୟ ଅତିବାହିତ କରିବା ପାଇଁ ଇସ୍କନ ବାବାଙ୍କ ଠାରୁ ନିର୍ଦ୍ଦେଶ ପାଇଲୁ । ସେଠାରେ ଆମର ଜଣେ ସହଯାତ୍ରୀଙ୍କ ଠାରୁ ''ଭକ୍ତ ଧ୍ରୁବ ଚରିତ'' ଇତ୍ୟାଦି ଉପାଖ୍ୟାନ ଶ୍ରବଣ କଲୁ । ଭକ୍ତି ପାଇଁ (୧) ଉତ୍ସାହ, (୨) ଧୈର୍ଯ୍ୟ ଓ (୩) ବିଶ୍ୱାସ ଆବଶ୍ୟକ ବୋଲି ବିଭିନ୍ନ ଉଦାହରଣ ମାଧ୍ୟମରେ ବକ୍ତା ମହାଶୟ ପ୍ରାଞ୍ଜଳ ଭାବେ ବୁଝାଉଥିଲେ । ସେହି ସମୟରେ ପଣ୍ଡିଚେରୀର ସ୍ୱାଦିଷ୍ଟ ପଇଡ଼ପାଣି ଓ ପତଳା ନଡ଼ିଆ ଶସ ଦ୍ୱିପହରର ଗ୍ରୀଷ୍ମତାପକୁ କମାଇ ଦେଇଥିଲା । ନିର୍ଦ୍ଧାରିତ ସମୟରେ ଅରୁଲମିଗୁ ଶ୍ରୀ ମାନକୁଲା ବିନାୟଗର ମନ୍ଦିର (ARULMIGU SRI MANAKULA VINAYAGAR TEMPLE) କବାଟ ଖୋଲା ହେଲା । ମନ୍ଦିର ଖୋଲା ହେବା ପୂର୍ବରୁ ଆମେ ଧାଡ଼ିରେ ଠିଆ ହୋଇଥିବାରୁ ଶୀଘ୍ର ଦର୍ଶନ ଲାଭ କଲୁ । ଦର୍ଶନ ଓ ବେଢ଼ା ପରିକ୍ରମା ପରେ ସଂଧ୍ୟା ୬ଘ.୩୦ମି.ରେ ଭେଲ୍ଲିପୁରମ୍ ଷ୍ଟେସନରେ ପହଞ୍ଚିଲୁ । ଇସ୍କନ ବାବାଙ୍କର ସୁବନ୍ଦୋବସ୍ତ ଯୋଗୁଁ ସୁରକ୍ଷିତ ଓ ନିରାପଦରେ ରହିଥିବା ନିଜ ନିଜ ଲଗେଜ୍ ସଂଗ୍ରହ କରି ଚା ଓ ଜଳଖିଆ ସେବନ ପରେ ସଂଧ୍ୟା ୭ଘ.୪୦ମି.ରେ ରାମେଶ୍ୱରମ୍ ଏକ୍ସପ୍ରେସ୍‌କୁ ଅପେକ୍ଷା କଲୁ । ନିର୍ଦ୍ଧାରିତ ସମୟରେ ଗାଡ଼ି ପହଞ୍ଚିଲା ଓ ରାତ୍ରି ପ୍ରସାଦ ସେବନ ପରେ ସୁଖ ନିଦ୍ରାରେ ହଜିଗଲୁ । ଶୋଇବାକୁ ଯିବା ପୂର୍ବରୁ ମୋ' ଦିଅର ନିର୍ମଳ ବାବୁ ରାମେଶ୍ୱରମ୍ ପୋଲ ରାତିରେ ରାସ୍ତାରେ ପଡ଼ିବ ତେଣୁ ଉଠିକରି ଦେଖିବ ବୋଲି ଫୋନ୍‌ରେ ମନେ ପକାଇ ଦେଇଥିଲେ । ମୋବାଇଲ୍‌ରେ ଆଲ୍‌ରାମ (ALARAM) ଦେଇ ରାତି ୩ଘ.୪୫ମି.ରେ ରାମେଶ୍ୱରମ୍ ପୋଲର ସୌନ୍ଦର୍ଯ୍ୟ ଗାଡ଼ି ଭିତରୁ ଅବଲୋକନ କଲୁ । ରାତି ୪ଘ.୦୫ମି.ରେ ରାମେଶ୍ୱରମ୍ ଷ୍ଟେସନରେ ପହଞ୍ଚିଲୁ । ବାବାଙ୍କ ନିର୍ଦ୍ଦେଶରେ ଅଟୋ ଯୋଗେ ରାମେଶ୍ୱରମ୍‌ର କାଶୀମଠ ଧର୍ମଶାଳାରେ ପହଞ୍ଚିଲୁ ।

### ତା. ୨୩.୦୧.୨୦୧୧, ରବିବାର

ଭୋର୍ ୫ଟାରେ ଅଟୋରୁ ଓହ୍ଲାଇ କାଶୀମଠରେ ପହଞ୍ଚିବା ପରେ ସାମ୍ନାରେ ସୁଉଚ୍ଚ କଳା ବିମଣ୍ଡିତ ଆଲୋକ ସଜ୍ଜିତ ଏକ ମନ୍ଦିର ଦ୍ୱାର ଦେଖି ଅଟୋବାଲାଙ୍କୁ ପଚାରି ଜାଣିବାକୁ ପାଇଲୁ ତାହା ଶ୍ରୀ ଶ୍ରୀ ରାମେଶ୍ୱରଜୀଙ୍କ ମନ୍ଦିରର ପଶ୍ଚିମ ଦ୍ୱାର, ସେଇଠାରେ ସେଇ ଅବସ୍ଥାରେ ଧୂଳିଆ ପହଣ୍ଡରେ ଶ୍ରୀରାମଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀ ଶ୍ରୀ ରାମେଶ୍ୱରଙ୍କ ଉଦ୍ଦେଶ୍ୟରେ ହାତ ଟେକିଲୁ । ଏତେ ପାଖରେ ମନ୍ଦିରର ଅବସ୍ଥିତି ଜାଣି ଆୟୋଜକ ଇସ୍କନ ବାବାଙ୍କୁ ଆନ୍ତରିକ କୃତଜ୍ଞତା ଜଣାଇ ଆମ ପାଇଁ ଉଦ୍ଦିଷ୍ଟ

ପ୍ରକୋଷ୍ଠରେ ପ୍ରବେଶ କଲୁ । ସେଦିନ ଆମ ପାଇଁ ପ୍ରଥମ ମହଲାର ୧୦ନଂ କୋଠରୀରେ ରହିବା ବ୍ୟବସ୍ଥା କରାଯାଉଥିଲା । ୯ନଂ ଓ ୮ନଂ କୋଠରୀରେ ଯଥାକ୍ରମେ ପଟ୍ଟନାୟକ ବାବୁ ଓ ସ୍ୱାଇଁ ବାବୁ ରହୁଥିଲେ । ନିତ୍ୟକର୍ମ ସାରି ସକାଳ ୭ଟାରେ ହରିଦ୍ୱାରରୁ ଆନୀତ ଶୁଦ୍ଧ ଗଂଗାଜଳ ଧରି ଅଭିଷେକ ଉଦ୍ଦେଶ୍ୟରେ ସମସ୍ତେ ମିଶି ବାହାରିପଡ଼ିଲୁ । ଗଙ୍ଗାଭିଷେକ ଟିକଟ ଓ ଭୋଗ କିଣିବା ପାଇଁ ମୁଖ୍ୟ ପ୍ରବେଶ ଦ୍ୱାର ନିକଟରେ ପହଞ୍ଚିଲୁ । ସେଠାକାର ନିୟମ ୨୨କୁଣ୍ଡ ପାଣି ବ୍ୟବସ୍ଥା ପରିବର୍ତ୍ତେ ବିକଳ୍ପ ସମାଧାନ ଖୋଜିଲୁ । ମନ୍ଦିର ବେଢ଼ାରେ ବୋତଲରେ ମିଳୁଥିବା ୨୨କୁଣ୍ଡର ଜଳ ମୁନ୍ଦାଏ ମୁନ୍ଦାଏ ମଥାରେ ସିଞ୍ଚନ କରି ଧାଡ଼ିରେ ଠିଆ ହେଲୁ । ଏଥରର ତୀର୍ଥ ସାଥି ମହାରଣା ଦମ୍ପତି ମଧ୍ୟ ଆମ ସାଥୀରେ ଭୋଗ କିଣିବା ପାଖରେ ମିଶିଲେ । ମୁଣ୍ଡପିଛା ଟ୫୦.୦୦ ମୂଲ୍ୟର ଟିକଟ କିଣି ଲମ୍ବା ଧାଡ଼ିରେ ଦର୍ଶନ ପାଇଁ ଅପେକ୍ଷା କଲୁ । ପ୍ରତ୍ୟେକ ସ୍ତମ୍ଭ ଉପରେ ଓଦା ବସ୍ତ୍ରରେ ଦର୍ଶନ ଓ ମନ୍ଦିର ଚଟାଣ ଓଦା ନ କରିବା ପାଇଁ ତାମିଲ ଓ ଇଂରେଜୀ ଭାଷାରେ ଚେତାବନୀ ଦିଆଯାଇଥିଲେ ମଧ୍ୟ କେତେ ଜଣ ଅବାଧ ଦର୍ଶନାର୍ଥୀ ଗଣଙ୍କର ବାଇଶି କୁଣ୍ଡ ସ୍ନାନ ଯୋଗୁଁ ମନ୍ଦିର ଚଟାଣ ଖସଡ଼ା ହୋଇଯାଇଥିଲା । ଶ୍ରୀଲଙ୍କା ସୀମାରେ ଶ୍ରୀରାମେଶ୍ୱର ମନ୍ଦିର । ମନ୍ଦିର ବେଢ଼ା ଏକ ଛୋଟ ସହରର ଆୟତନ ସହ ସମାନ ଅଥଚ ସେଠାରେ ବାହାରେ ଭିତରେ ତନଖି ନାହିଁ କି ପୋଲିସ୍ ନାହିଁ । ତଥାପି ଯାତ୍ରୀଗଣ ସୁରକ୍ଷିତ ଓ ଶୃଙ୍ଖଳିତ । ଏହିସବୁ ସୁନ୍ଦର ବ୍ୟବସ୍ଥାରେ ଆପ୍ୟାୟିତ ହୋଇ ପରବର୍ତ୍ତୀ ସମୟରେ ଆମ ଭିତରୁ ଜଣେ ପଶ୍ଚିମ ଓଡ଼ିଶା ଯାତ୍ରୀ ମନ୍ତବ୍ୟ ନେଲେ - ଆମ ଶ୍ରୀକ୍ଷେତ୍ର ଜଗନ୍ନାଥ ମନ୍ଦିରରେ ଯାତ୍ରୀ ଯେତିକି ପୋଲିସ୍ ସେତିକି । ବିଶୃଙ୍ଖଳା ଓ ଅପରାଧ ସବୁଠାରୁ ଅଧିକ । ଏଠାକାର ବ୍ୟବସ୍ଥାରେ ପୋଲସ୍ ନାହିଁ କି ବିଶୃଙ୍ଖଳା ନାହିଁ, ଗଣ୍ଡଗୋଳ ନାହିଁ । ବାସ୍ତବିକ ଏହି ଦୃଶ୍ୟ ଆମ ମନରେ ଗଂଭୀର ରେଖାପାତ କରିଥିଲା । ଲୋକ ଚରିତ୍ର ଅନୁଶୀଳନ କରିବା ତୀର୍ଥାଟନର ମୁଖ୍ୟ ଉଦ୍ଦେଶ୍ୟ । ଲମ୍ବା ଧାଡ଼ିରେ ଦୀର୍ଘ ସମୟ ଠିଆ ହୋଇ ଜଣେ ଯୁବତୀ ଅଚେତ ହୋଇ ପଡ଼ିଲେ ଓ କିଛି ସମୟ ପରେ ସଂପର୍କୀୟ ଲୋକ ଓ ପୂଜକଙ୍କ ସହାୟତାରେ ସୁସ୍ଥ ଅନୁଭବ କଲେ । ବିଶୃଙ୍ଖଳିତ ପଶ୍ଚିମ ଭାରତୀୟ ଯାତ୍ରୀମାନେ ଧାଡ଼ି ଭାଙ୍ଗି ଆଗକୁ ଆଗକୁ ଯିବାକୁ ଉଦ୍ୟମ କରୁଥିଲେ । କେହି କେହି ସଫଳ ହେଉଥିଲେ ଅନ୍ୟ କେତେ ଜଣ ହତାଶ ହୋଇ ଗାଳି ବର୍ଷଣ କରୁଥିଲେ । ଆମେ ଧାଡ଼ିରେ ଠିଆ ହେଲାବେଳକୁ ମନ୍ଦିର ବନ୍ଦ ଥିଲା । ସାଢ଼େ ସାତରେ ମନ୍ଦିର କବାଟ ଖୋଲା ହେଲା । କବାଟ ଖୋଲା ହେଲା ବେଳକୁ ଆମେ ଧାଡ଼ିର ଶେଷ ପର୍ଯ୍ୟାୟ ଅର୍ଥାତ୍ ଠାକୁରଙ୍କ ସମ୍ମୁଖ ପ୍ରକୋଷ୍ଠ ନିକଟରେ ପହଞ୍ଚି ସାରିଥିଲୁ । ଅତି

ନିକଟରୁ ଦର୍ଶନ କଲୁ -

''ନାଗେନ୍ଦ୍ର ହାରାୟ ତ୍ରିଲୋଚନାୟ
ଭସ୍ମାଙ୍ଗରାଗାୟ ମହେଶ୍ୱରାୟ
ନିତ୍ୟାୟ ଶୁଦ୍ଧାୟ ଦିଗମ୍ବରାୟ
ତସ୍ମୈ 'ନ' କରାୟ ନମଃ ଶିବାୟ ।୧।
ମନ୍ଦାକିନୀ ସଲିଳ ଚନ୍ଦନ ଚର୍ଚ୍ଚିତାୟ
ନନ୍ଦୀଶ୍ୱର ପ୍ରଥମନାଥ ମହେଶ୍ୱରାୟ
ମନ୍ଦାରପୁଷ୍ପ ବହୁପୁଷ୍ପ ସୁପୂଜିତାୟ
ତସ୍ମୈ 'ମ' କାରାୟ ନମଃ ଶିବାୟ'' ।୨।

ପ୍ରବନ୍ଧର କଳେବର ବୃଦ୍ଧି ହେବା ଆଶଙ୍କା ଯୋଗୁଁ ଆମ ଉଦ୍ଦେଶ୍ୟ ମନ୍ଦାକିନୀ ଜଳାଭିଷେକ ପର୍ଯ୍ୟନ୍ତ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଶିବ ପଞ୍ଚାକ୍ଷର ସ୍ତୋତ୍ରମ୍‌ର କିଞ୍ଚିତ୍ ଆଭାସ ଉଲ୍ଲେଖ କରାଗଲା । ଧାଡ଼ିରେ ଠିଆ ହେବା ସମୟରେ ଶିବ ପଞ୍ଚାକ୍ଷର ମନ୍ତ୍ର ଓ ମହାମୃତ୍ୟୁଞ୍ଜୟ ମନ୍ତ୍ର ବହୁଥର ଉଚ୍ଚାରିତ ହୋଇ ସାରିଥିଲା । ପୂଜକଙ୍କ ଡ଼ାକରାରେ ଦେବ ଦର୍ଶନରୁ ଆଖି ଫେରାଇ ଠାକୁରଙ୍କ ସମ୍ମୁଖରେ କିଛି କ୍ଷଣ ପାଇଁ ବସି ନିଜ ନିଜର ନାମ, ଗୋତ୍ର ଉଚ୍ଚାରଣ ପୂର୍ବକ ତୃପ୍ତିଦାୟକ ଗଂଗାଭିଷେକ ଦର୍ଶନର ସୁଯୋଗ ପାଇଲୁ । ବିଭୂତି ଓ ଆଳତୀ ସଂଗ୍ରହ କରି ଭଗୀରଥଙ୍କ ବଂଶାନୁଧର ବୋଲି ଆତ୍ମଗର୍ବରେ ଫୁଲି ଉଠି ବେଢ଼ା ପ୍ରଦିକ୍ଷଣ ପାଇଁ ବାହାରିଲୁ । ଧାଡ଼ିରେ ଠିଆ ହେବା ସମୟରେ ଆମ ପାର୍ଶ୍ୱରେ ଥିବା ଛୋଟ ଛୋଟ ବିମାନ ମଧରେ ୬୩(ତେଷଠି) ନୟନାମାର(NAYANAMARS) ଓ ୦୮ଟି ଲକ୍ଷ୍ମୀଙ୍କର ପ୍ରସ୍ତର ବିଗ୍ରହ ଛୋଟ ଛୋଟ ବିମାନ ଭଳି ମନ୍ଦିରରେ ପୂଜା ପାଉଥିବା ଲକ୍ଷ୍ୟ କରିଥିଲୁ । ଦେବ ଦେବୀଙ୍କ ବିଷୟରେ ସବୁଠାରେ ତାମିଲ ଅକ୍ଷରରେ ଲିଖିତ ତେଣୁ ଜାଣିବାରେ ଓ ବୁଝିବାରେ ଭାରି କଷ୍ଟ । ପୂଜକମାନେ ମଧ ସଠିକ୍ ଉତ୍ତର ଦେବା ପାଇଁ ପ୍ରସ୍ତୁତ ନୁହଁନ୍ତି । ବହୁ ଖୋଜା ଖୋଜି କଲେ ସ୍ଥାନେ ସ୍ଥାନେ ଇଂରାଜୀ ଅକ୍ଷର ଆଖିରେ ପଡ଼େ । ପାର୍ବତୀ ଦେବୀଙ୍କ ମନ୍ଦିରର ଏକ ସ୍ଥାନରେ ଲେଖା ହୋଇଥିଲା - "Parvathavarthani Ambal Praharam Built in 1702 A.D, Renovated by G. Stone (1907-1925)" ପାର୍ବତୀଙ୍କ ମୂର୍ତ୍ତି ଅତି କମନୀୟ । ଜଗଦୀଶ୍ୱରୀ ଦେବୀ ପାର୍ବତୀଙ୍କୁ ପ୍ରଣିପାତ

ଜଣାଇ ଆଗକୁ ଚାଲିଲୁ । ସବୁଠାରୁ କୌତୁହଳ ଓ ଆକର୍ଷଣୀୟ ମନ୍ଦିର ସନ୍ତାନ ଗଣପତି ମନ୍ଦିର । ମନ୍ଦିରରେ ବିଘ୍ନ ବିନାଶକାରୀ ଗଜାନନଙ୍କ ସୁଲଳିତ ପ୍ରସ୍ତର ମୂର୍ତ୍ତି ସ୍ଥାପିତ । ମନ୍ଦିର ବେଢ଼ାର ଚତୁଃପାର୍ଶ୍ୱରେ ଅଗଣିତ ସର୍ପ, ଶିବଲିଙ୍ଗ (ଛୋଟ ଛୋଟ) ନାମଫଳକ ସହ ବିରାଜିତ । ସେଠାରେ କାହାକୁ ବୁଝିଲେ କେହି କହିପାରୁ ନାହାନ୍ତି । ତନ୍ନ ତନ୍ନ କରି ମୂର୍ତ୍ତି ଗୁଡ଼ିକୁ ଓ ପାଖ ଆଖ ସ୍ଥାନକୁ ଲେଖା ପଢ଼ିବା ଉଦ୍ଦେଶ୍ୟରେ ନିରୀକ୍ଷଣ କଲେ ମଧ୍ୟ ସନ୍ଦେହ ମୋଚନ ହେଉ ନଥାଏ । ବେଢ଼ା ପରିକ୍ରମା ପରେ ଉଦାସ ମନରେ ସନ୍ତାନ ଗଣପତି ଦେବଙ୍କୁ ଶେଷ ପ୍ରଣାମ ଜଣାଇ ଫେରିଲାବେଳକୁ ଗୋଟିଏ ବଡ଼ ନୋଟିସ୍ ବୋର୍ଡ଼ରେ କିଛି ଇଂରାଜୀ ଅକ୍ଷର ଦେଖିବାକୁ ମିଳିଲା । ଆନନ୍ଦିତ ମନରେ ସେଠାରେ ପହଞ୍ଚି ବୋର୍ଡ଼ ପଢ଼ି ଜାଣିବାକୁ ପାଇଲୁ ଯେ ନିଃସନ୍ତାନ ଦଂପତି ସନ୍ତାନ ଉଦ୍ଦେଶ୍ୟରେ ସେଠାରେ ସର୍ପପୂଜା ଓ ଯଜ୍ଞ କରି ଏହିଭଳି ପ୍ରସ୍ତର ସ୍ଥାପନ କରିଥାନ୍ତି । ବାଉଁଶ ଖାଡ଼ି ନିର୍ମିତ ଛୋଟ ଛୋଟ ଦୋଳି ମଧ୍ୟ ସନ୍ତାନ ଉଦ୍ଦେଶ୍ୟରେ ମନ୍ଦିର ପାର୍ଶ୍ୱସ୍ଥ ଏକ ବିରାଟ ଗଛରେ ବନ୍ଧାଯାଇଥିବା ସୁନ୍ଦର ଦୃଶ୍ୟ ଅବଲୋକନ କଲୁ । ସୁନ୍ଦର ନଟରାଜନ୍ ମୂର୍ତ୍ତି ନଟ୍‌ରାଜନ୍ ମନ୍ଦିରରେ ଦର୍ଶନ କଲୁ । ଦେବୀ ପାର୍ବତୀ ମନ୍ଦିରର ଦ୍ୱାରଦେଶରେ ଦୁଇ ପାର୍ଶ୍ୱରେ ବିନାୟକ ପାଦେର୍ ଓ ପାତଞ୍ଜଳିଙ୍କ ଦୁଇଟି ପ୍ରସ୍ତର ମୂର୍ତ୍ତି ସୁଶୋଭିତ ହୋଇଥିବା ଦର୍ଶନ କଲୁ । ଅନନ୍ତଶୟନ ନାମକ ଏକ ମନ୍ଦିରରେ ଚମତ୍କାର ଅନନ୍ତଶୟନ ମୂର୍ତ୍ତିଙ୍କୁ ପ୍ରଣାମ ଜଣାଇ ବାହାରକୁ ବାହାରିଲୁ । ଆଶାନୁରୂପ ଦର୍ଶନ ଓ ଗଂଗାଭିଷେକ ହୋଇଥିବା ଯୋଗୁଁ ହର୍ଷୋତ୍‌ଫୁଲ୍ଲ ମନରେ ସାଥୀଗଣଙ୍କ ସହ ମନ୍ଦିରରୁ ଫେରି ଦକ୍ଷିଣ ଭାରତୀୟ ଜଳଖିଆର ମଜା ନେଲୁ । ସେଠାରେ ଏକ ଉଲ୍ଲେଖଯୋଗ୍ୟ ଟିପ୍‌ପଣୀ ସ୍ୱାଇଁ ବାବୁ ଦେଲେ । ସ୍ୱାଇଁବାବୁଙ୍କ ଭାଷାରେ - ''ଆମେ ଗୋଟିଏ ଅଟୋରେ ବାହାରି ହରିଦ୍ୱାରରେ ଗଂଗାସ୍ନାନ କରି ଏକା ସାଥିରେ ଗଂଗା ଆଣିଲେ । ତା'ପରେ ଫୋନ ନମ୍ବର ନ ଥିବାରୁ ଯୋଗାଯୋଗ ସଂପର୍କ ସଂପୂର୍ଣ୍ଣ ଛିନ୍ନ । ବର୍ତ୍ତମାନ ପୁଣି ଏକାଠି ଗୋଟିଏ ବାଲ୍‌ଟିରେ ଗଙ୍ଗାଜଳ ଠାକୁରଙ୍କୁ ଅଭିଷେକ କଲେ, ଆମେ ପୂର୍ବ ଜନ୍ମରେ ଭାଇ-ଭାଇ ହୋଇଥିଲେ ନା' କ'ଣ'' ? ପ୍ରକୃତରେ ସ୍ୱାଇଁବାବୁଙ୍କର କଥାପଦକ ଭାରି ମର୍ମସ୍ପର୍ଶୀ ଥିଲା । ସ୍ୱାଇଁ ବାବୁଙ୍କର ଟିପ୍‌ପଣୀ ଉପରେ ମୁଁ ମତ ଦେଲି । ''ସ୍ୱାଇଁବାବୁ ! ସବୁ ବିଧି ନିର୍ଦ୍ଦେଶ, ପୂର୍ବ ଜନ୍ମ-ପର ଜନ୍ମ କଥା ଛାଡ଼ନ୍ତୁ ଇହ ଜନ୍ମରେ ତ ଆମେ ବନ୍ଧୁତା ଡୋରିରେ ବନ୍ଧା ।'' ଗୋପବନ୍ଧୁଙ୍କ ଭାଷାରେ-

ଅବନ୍ଧୁ ଜୀବନ ଅସୂର୍ଯ୍ୟ ମହୀ,
ଦେହ ଧରି କେ'ବା ପାରଇ ରହି ?

ଭଗବାନ କରନ୍ତୁ ଆମ ଭ୍ରାତୃବନ୍ଧନ ସବୁଦିନ ପାଇଁ ଅତୁଟ ରହୁ । ବାସ୍ତବିକ ସ୍ୱାଇଁ ବାବୁ ଭାରି ପରୋପକାରୀ ଲୋକ, ଆମର ସ୍ୱାସ୍ଥ୍ୟ ଖରାପ ସମୟରେ ସେ ବହୁତ ସାହାଯ୍ୟ କରିଛନ୍ତି, ଏପରିକି ମୋ ସ୍ୱାମୀଙ୍କର ଗୋଡ଼ ହାତ ଘଷାମଚ୍ଛା କରି ଆମକୁ ଋଣୀ କରିଦେଇଛନ୍ତି । ଜଳଖିଆ ସେବନ ପରେ ଦୁଇଟି ଅଟୋରେ ପଟ୍ଟନାୟକ ଓ ମହାରଣା ଦମ୍ପତ୍ତି, ସ୍ୱାଇଁ ଦମ୍ପତି ଓ ଆମେ ଦୁଇଜଣ ସାଇଟ୍ ସିଟ୍ ପରିଭ୍ରମଣରେ ବାହାରୁ ପଡିଲୁ । ପ୍ରଥମେ ଅଟୋ, ପହଞ୍ଚିଲା ଧନୁଷ୍କୋଟି । ସେଠାକାର ଭାଷାରେ 'ଧନୁଷ୍କୋଡ଼ି' । ଧନୁଷ୍କୋଟି ସମୁଦ୍ରକୂଳରେ ଏକ ସ୍ଥାନ । ସମୁଦ୍ର କୂଳରେ ଝାଉଁଜଙ୍ଗଲ ରହିଛି । ସେଠାରେ ସମୁଦ୍ର ବାଲୁକାରେ ଲିଙ୍ଗ ସ୍ଥାପନ କଲୁ । ଲିଙ୍ଗ ଉପରେ ଟ. ୧.୦୦/୨.୦୦ ମୁଦ୍ରା ରଖିଲୁ । ବିନା ଫୁଲ ଓ ଭୋଗରେ ପୂଜା କଲୁ । ଅଟୋବାଲା ଆଙ୍ଗୁଠି ଦେଖାଇ ପାଣିରେ ୨୦ କି.ମି. ଗଲେ ଶ୍ରୀଲଙ୍କାରେ ପହଞ୍ଚି ହେବ ବୋଲି କହିଲେ । ସମୁଦ୍ର ତରଙ୍ଗ ଓ ସମୁଦ୍ର ଗର୍ଜନ ସେଠାରେ ଲକ୍ଷ୍ୟ କରିପାରିଲୁ ନାହିଁ । ସମୁଦ୍ର ଜଳ ସ୍ଥିର ଭଳି ଦେଖାଗଲା । ପିଲାଟିଏ କିଛି ଦୂରରେ ଆଣ୍ଠୁ ଉପରକୁ ପାଣିରେ ଠିଆ ହୋଇଥିବାର ଦେଖିଲୁ । ଭାବିଲୁ ପୁରାଣାନୁଯାୟୀ ଏଠାରେ ବରୁଣ ଦେବତା ଶାନ୍ତ, ନମନୀୟ ଓ ଶ୍ରୀରାମଚନ୍ଦ୍ର ପ୍ରଭାବଶାଳୀ । ପୂଜା ଅର୍ଚ୍ଚନା ପରେ ସ୍ମୃତିକୁ ସାଇତି ରଖିବାକୁ ନିଜ ନିଜ କ୍ୟାମେରା ବାହାର କଲୁ । କିଛି ଫଟୋ ଉଠାଇ ସାରିବା ପରେ ଚାରି ପରିବାରର ଏକ ଦଳଗତ ଫଟୋ ନେବା ଇଚ୍ଛାରେ କଥାବାର୍ତ୍ତା ହେଉଥିବା ବେଳେ ଆମ ଭାବଭଙ୍ଗୀକୁ ଲକ୍ଷ୍ୟ କରି ଆମ କାହ୍ନା ବୟସର ଓ ସମାନ ଚେହେରାର ପାଟଣାରୁ ଆସିଥିବା ୧୨/୧୩ ବର୍ଷର ପୁଅଟିଏ ଆମ ସମସ୍ତଙ୍କର କ୍ୟାମେରାରୁ ଗୋଟିଏ ଗୋଟିଏ ଦଳଗତ ଫଟୋ ଉଠାଇବା ପାଇଁ ଆଗଭର ହୋଇ ଆସିଲା । ସୌଜନ୍ୟ ଦୃଷ୍ଟିରୁ ପିଲାଟିର ବାପା, ମା'ଙ୍କ ସହିତ ପଦେ ଦୁଇପଦ କଥା ହୋଇସାରି ଜଳାଧିରାଜ ରତ୍ନାକରଙ୍କୁ ବିଦାୟ ଜଣାଇ ସାମ୍ନାରେ ଥିବା ପୁଷ୍ଟି ଦକ୍ଷିଣ ମନ୍ଦିରରେ ପ୍ରବେଶ କଲୁ । ଏହା ବିଭୀଷଣ ମନ୍ଦିର ନାମରେ ମଧ୍ୟ ଖ୍ୟାତ। ଉଚ୍ଚ ଉଚ୍ଚ ୨୫/୩୦ ପାହାଚ ଉଠି ଗଲାପରେ ମନ୍ଦିରରେ ପହଞ୍ଚିବାକୁ ହୁଏ । ସେଠାରେ ରାମ, ଲକ୍ଷ୍ମଣ, ସୀତାଙ୍କ ମୂର୍ତ୍ତି ମଧ୍ୟ ପୂଜାସ୍ଥାନରେ ଦର୍ଶନ କଲୁ । ମନ୍ଦିର ବେଢ଼ା ବୁଲିଲୁ । ମନ୍ଦିର ଦ୍ୱାର ଦେଶରେ ସମୁଦ୍ରର ଶୋଭା ଅତୁଳନୀୟ ଜଣାଗଲା । ରାମାୟଣ ମନେ ପକାଇଲୁ । ପାଞ୍ଚ ହଜାର ବର୍ଷର ଅବସ୍ଥିତିକୁ ଅନୁମାନ କଲୁ । ଅଟୋ ଡ୍ରାଇଭରର ଡ଼ାକରାରେ ଭାବନା ରାଜ୍ୟରୁ ଫେରି ଅଟୋରେ ବସିଲୁ । ତା'ପରେ ସୀତା କୁଣ୍ଡ, ରାମ କୁଣ୍ଡ ଓ ଲକ୍ଷ୍ମଣ କୁଣ୍ଡ (ଅଲଗା ଅଲଗା ସ୍ଥାନରେ ବିରାଜିତ) ବୁଲି ଦେଖିଲୁ । ମଥାରେ କୁଣ୍ଡର ପବିତ୍ର ଜଳ ସିଞ୍ଚନ କଲୁ । ଚଢ଼ାଦାମ୍‌ରେ ମୁଢ଼ି କିଣି ମାଛମାନଙ୍କୁ ଖାଇବାକୁ ଦେଲୁ ।

ଅଟୋରେ ବସିବା ପରେ ଅବସରପ୍ରାପ୍ତ ଇଂଜିନିୟର ସ୍ୱାଇଁବାବୁ ମତ ପ୍ରକାଶ କଲେ- ‘‘ବଡ଼ ବଡ଼ କୋଠା ତିଆରି କରିବା ସମୟରେ ଇଟା ଭିଜେଇବା ପାଇଁ ଏହି କୁଣ୍ଡ ଗୁଡ଼ିକ ତିଆରି କରାଯାଇଥିବ । ଏଗୁଡ଼ିକ ହଜାର ହଜାର ବର୍ଷର ପୁରୁଣା କୁଣ୍ଡ ଭଳି ଅନୁମାନ କରାଯାଇପାରୁ ନାହିଁ । କାଳକ୍ରମେ ଏଗୁଡ଼ିକୁ ତୀର୍ଥର ମାନ୍ୟତା ଦିଆଯାଇ ଅର୍ଥ ସଂଗ୍ରହ କରାଯାଉଛି ।’’ ସ୍ୱାଇଁ ବାବୁଙ୍କର ଯୁକ୍ତି ଅକାଟ୍ୟ ନୁହେଁ, ଯେଉଁ ସ୍ଥାନରେ ପହଞ୍ଚିବ, ସେଠାରେ ଆଗ ଟିକଟ, ତା’ପରେ ଧାଡ଼ିରେ ଠିଆ ବ୍ୟବସ୍ଥା । ତା’ପରେ ଅଟୋ ଅନ୍ୟ ଏକ ପ୍ରାଚୀନ ମନ୍ଦିର ନିକଟରେ ପହଞ୍ଚାଇଲା, ସେଠାରେ ଏକ ପ୍ରାଚୀନ ବିରାଟ ପଞ୍ଚମୁଖୀ ହନୁମାନ ମୂର୍ତ୍ତି ପୂଜା ସ୍ଥାନ ପାଉଛନ୍ତି ।

‘‘ଲାଲ ଦେହ ଲାଲୀ ଲସୈ
  ଅରୁଧର ଲାଲ ଲଙ୍ଗୁର
ବଜ୍ର ଦେହ ଦାନବ ଦଳନ
  ଜୈ ଜୈ କପି ଶୂର ।’’

ସନ୍ଥ ତୁଳସୀ ଦାସଙ୍କ ହନୁମାନ ଚାଳିସା ପାଠ କଲୁ । ଦର୍ଶନ ପରେ ବେଢ଼ା ଭିତରେ ଏକ କୁଣ୍ଡରେ ବଡ଼ ବଡ଼ ପଥର ଦୁଇଟି ଭାସୁଥିବାର ଦୃଶ୍ୟ ଦେଖିଲୁ । ସେତୁବନ୍ଧରେ ଲାଗିଥିବା ପଥରର ପାଣିରେ ଭାସିବା ଗୁଣ ରହିଛି ବୋଲି ଭୂ-ତତ୍ତ୍ୱବିଦ୍ ଓ ବୈଜ୍ଞାନିକମାନଙ୍କର ଲେଖାରୁ ପଢ଼ିଥିଲୁ । ବର୍ତ୍ତମାନ ଆଖିରେ ଦେଖିଲୁ । ପଥରର ଉପରି ଭାଗରେ, ଛୋଟ ଛୋଟ କଣାଗୁଡ଼ିଏ ପରିଲକ୍ଷିତ ହେଉଥିଲା, କାଳେ ପଥରଟି ଫମ୍ପା ଥିବ ବୋଲି । ଭାବି ପୂଜକର ଅଲକ୍ଷ୍ୟରେ ବଳ ଲଗାଇ ଠେଲିଲୁ, ବିଫଳ ହେଲୁ । ସେଠାରେ ଶନି ମନ୍ଦିରରେ ତୈଳ ଅଭିଷେକ ପାଇଁ ଟ. ୫୦.୦୦ ଜମା କଲୁ ଓ ପ୍ରତି ବଦଳରେ ତିନୋଟି ଫଟୋ ପାଇଲୁ । ପ୍ରକାଶଥାଉକି ଏହି ଫଟୋ ଗୁଡ଼ିକ ବିକ୍ରୟ ପାଇଁ ଉପଲବ୍ଧ ନୁହେଁ କେବଳ ତୈଳ ଅଭିଷେକ ପାଇଁ ଟଙ୍କା ଜମାଦେଲେ ଫଟୋ ଦିଆଯାଏ । ତିନୋଟି ଫଟୋ ପ୍ରତି ଏତେ ଗୁରୁତ୍ୱ ଦେବା ଅର୍ଥ ସେଥିମଧ୍ୟରୁ ନାସାର (NASA) ଏକ ଫଟୋରେ ପ୍ରାଚୀନ ସେତୁବନ୍ଧର ଭଗ୍ନାବଶେଷ ପରିଲକ୍ଷିତ ହେଉଥିଲା । ମାଧ୍ୟମିକ ଶିକ୍ଷା ବୋର୍ଡର ନବମ ଶ୍ରେଣୀର ଇତିହାସ ପାଠ୍ୟକ୍ରମରେ ‘ଭାରତର ଐତିହ୍ୟ’ ଅଧ୍ୟାୟ ପଢାଇବା ସମୟରେ ଛାତ୍ରୀମାନଙ୍କୁ ବୁଝାଇବା ପାଇଁ ସେହିଗୁଡ଼ିକୁ ଖୁସିମନରେ ସଂଗ୍ରହ କରି ଫେରିଲୁ । ରାମେଶ୍ୱରମ୍‌ର ପ୍ରମୁଖ ଆକର୍ଷଣୀୟ କେନ୍ଦ୍ର ବିଷୟରେ ଏଠାରେ ପଦଟିଏ ଲେଖିଲେ ଠିକ୍ ହେବ, କିଛି ଦିନ ପୂର୍ବେ ‘‘ସମାଜ’’ ରୁ ପ୍ରଖ୍ୟାତ ହୃଦ୍‌ରୋଗ ବିଶେଷଜ୍ଞ ଓ ଆଧ୍ୟାତ୍ମବାଦୀ ମହାନ୍ ଲେଖକ ଡକ୍ଟରର

କବିପ୍ରସାଦ ମିଶ୍ରଙ୍କର ଲେଖାଟିଏ ପଢିଥିଲି । ସେ ଲେଖିଥିଲେ- ''ଥରେ ସେ ଭାଇଙ୍କୁ ଓ ଶ୍ରୀରାମେଶ୍ୱରଙ୍କୁ ଦେଖିବା ପାଇଁ ରାମେଶ୍ୱରମ୍ ଯାଇଥିଲେ । ଶ୍ରୀରାମେଶ୍ୱରମ୍ ଦର୍ଶନ ଓ ସାଇଟ୍ ସିନ୍ ପରେ ଅଟୋବାଲା ଖଣ୍ଡି ଖଣ୍ଡି ହିନ୍ଦୀରେ ପଚାରିଲା - ଆଉ ଗୋଟିଏ ତୀର୍ଥସ୍ଥାନ ରହିଗଲା ବାବୁ, ସେଠିକୁ ଆପଣ ଯିବେନି ? ଡାକ୍ତରବାବୁ ହଁ ମାରିବାରୁ ନେଇଗଲା ସେଇ ପବିତ୍ର ଜନ୍ମସ୍ଥାନକୁ ଯେଉଁଠି ନିହାତି ସାଧାରଣ ପରିବାରରେ ଜନ୍ମିତ ଶିଶୁ ପୃଥିବୀର ଏକ ଅସାଧାରଣ ମଣିଷ ପାଲଟି ଯାଇଛନ୍ତି । ଭାରତର ପୂର୍ବତନ ରାଷ୍ଟ୍ରପତି ଅବଦୁଲ କାଲାମଙ୍କ ଜନ୍ମସ୍ଥାନର ମାଟି କପାଳରେ ଘଷିଲେ ଏବଂ ଭାବିଲେ ସତରେ କେଡ଼େ ପବିତ୍ର ଏ ସ୍ଥାନ'' ! ପ୍ରବନ୍ଧଟି ପଢ଼ି ଆମର ମନ ହେଉଥିଲା ଆମ ଜୀବନରେ ଥରେ ସେ ସୁଯୋଗ ଆସନ୍ତା କି ! ଭାଗବତ ବାଣୀ- ''ଏ ମନ ପାଞ୍ଚୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା ।'' ଏବେ ସତ୍ୟ ପ୍ରତୀତ ହେଲା, ଆମ ଅଟୋବାଲା ମଧ ମନ୍ଦିର ବୁଲାବୁଲି କରିସାରିବା ପରେ ସେଠାରେ ନେଇ ପହଞ୍ଚାଇଲା । ନିଛକ ସତ୍ୟ କଥାଟି ଏପରି ଯୁଗପୁରୁଷ କାଲାମ୍‌ଙ୍କର ଜନ୍ମସ୍ଥାନ ପାର୍ଶ୍ୱରେ ଏକ ତ୍ରି-ତଳ ବିଶିଷ୍ଟ ସୌଧରେ ସୁପର ମାର୍କେଟଟିଏ ଅବସ୍ଥାପିତ ହୋଇଛି । ହୁଏତ ସେହି ସ୍ଥାନରେ ଯାତ୍ରୀମାନଙ୍କୁ ପହଞ୍ଚାଇବାରେ ଅଟୋବାଲାଙ୍କର କିଛି କମିଶନ ଥାଇପାରେ । ଭାରତ ବର୍ଷରେ ସାର, କମାଣ, ଔଷଧ, ଟୁ-ଜି ସ୍ପେକ୍‌ଟ୍ରମ୍ ଓ ଖେଳ କମିଶନ କାରବାର ଚାଲିଥିବା ବେଳେ ପେଟ ପୋଷିବା ପାଇଁ ସାଧାରଣ ଅଟୋବାଲର କମିଶନ କେତେ ତୁଚ୍ଛ-ଏଇ ଭାବନା ଆମ ମନରେ ଉଙ୍କିମାରୁ ଥିଲା । ମାର୍କେଟ୍‌ରେ ପଶିବା ପୂର୍ବରୁ ପ୍ରଥମେ ଭାରତର ଦ୍ୱାଦଶ ରାଷ୍ଟ୍ରପତି ଡଃ ଅବୁଲ ଫକୀର ଜୈନୁଲ ଅବେଦିନ ଅବଦୁଲ କଲାମ ମହୋଦୟଙ୍କ (ତାଳ ବରଡ଼ା ଓ ନଡ଼ିଆ ଡ଼ାଳ ପରିବେଷ୍ଟିତ ପାଚେରୀ ଫାଙ୍କରେ) ଜନ୍ମସ୍ଥାନକୁ ଲକ୍ଷ୍ୟ କଲୁ । ଡ଼ଃ କବି ପ୍ରସାଦ ମିଶ୍ରଙ୍କୁ ମନେ ପକାଇ କିଛି ମାଟି ମଥାରେ ଲଗାଇଲୁ । ଭାବିଲୁ ଏଇ ଯୋଗଜନ୍ମା ମହାପୁରୁଷ ଜାତିର ଜନକ ବାପୁଜୀଙ୍କ ଠାରୁ ମଧ ଏକ ପାଦ ଆଗକୁ ଉଠିଗଲେ ନିର୍ଭୀକତା ଓ ନିରପେକ୍ଷତା ଗୁଣ ଯୋଗୁଁ । ସାଥୀ ଓ ଅଟୋ ଡ୍ରାଇଭରର ଡାକରାରେ ଦେଶ ଚିନ୍ତାରୁ ନିଜ ଚିନ୍ତାକୁ ଫେରି ବଜାରରେ ପ୍ରବେଶ କଲୁ । କଲାମ ସୁପର ମାର୍କେଟ ଏକ ବିରାଟ ମାର୍କେଟ । ସବୁ ପ୍ରକାର ଘର କରଣା ଜିନିଷର ଏକତ୍ର ସମାବେଶ ସେଠାରେ । ବିଶେଷ କରି ଶଙ୍ଖ ଓ ସମୁଦ୍ର ଜାତ ସୁନ୍ଦର ସୁନ୍ଦର ଦ୍ରବ୍ୟର ଅପୂର୍ବ ସମାରୋହ ସେଠାରେ ଘଟିଛି । କିଛି ଉପହାର ସାମଗ୍ରୀ ସେଠାରୁ କିଣିଲୁ । ବିଲ୍ ପ୍ରସ୍ତୁତକାରୀଙ୍କ ରୁକ୍ଷ ବ୍ୟବହାରରେ ଅତିଷ୍ଠ ହୋଇ ବସାକୁ ଫେରିଲୁ । ଅଧ ଘଣ୍ଟାଏ ପରେ ମହାରଣା ବାବୁଙ୍କ ଠାରୁ ଫୋନ୍ ପାଇଲୁ ଦିନ ଦୁଇଟା ପରେ ରୋଷେଇ

ଶେଷ ହେବ ତେଣୁ ଆରାମ୍‌ରେ ବିଶ୍ରାମ ନେବା ଭଲ । ରାମେଶ୍ୱରମ୍ ସହରରେ ଆମ ଯାତ୍ରୀମାନଙ୍କ ପାଇଁ ତିନୋଟି ଲଜ୍‌ର ବ୍ୟବସ୍ଥା ହୋଇଥିଲା । ପ୍ରଥମଟି ରାମେଶ୍ୱରମ୍ ଶ୍ରୀ କାଶୀ ମଠ, ଦ୍ୱିତୀୟଟି ବାଙ୍ଗୁର ଧର୍ମଶାଳା ଓ ତୃତୀୟଟି ହୋଟେଲ୍ ଆଇଲାଣ୍ଡ । ମହାରଣାବାବୁଙ୍କର ରହିବା ପାଇଁ ହୋଟେଲ ଆଇଲାଣ୍ଡରେ ବ୍ୟବସ୍ଥା ହୋଇଥାଏ । ବାଙ୍ଗୁର ଧର୍ମଶାଳାରେ ରୋଷେଇ ବ୍ୟବସ୍ଥା କରାଯାଇଥାଏ । ସେଦିନ ରୋଷେଇ ଡେରି ହେବାର କାରଣ ମଦନ ବାବା ଓ ତାଙ୍କର ରୋଷେଇଆ ପିଲା କେତେଜଣ ଆମ ସାଥିରେ ଚେନ୍ନାଇ ଷ୍ଟେସନ୍‌ରୁ ରାମେଶ୍ୱରମ୍ ଟ୍ରେନ୍‌ରେ ଉଠି ପାରିନଥିଲେ । ସୂଚନାଯୋଗ୍ୟ ଯେ ଏଥର ସେବକ ଦଳ ଗତଥର ପରି କୁଶଳୀ ଓ ଚତୁର ନ ଥିଲେ ତେଣୁ ବେଳେ ବେଳେ ସାମାନ୍ୟ ବ୍ୟତିକ୍ରମ ଦେଖାଯାଇଥିଲା । ଟ୍ରେନ୍‌ରେ ଉଠିପାରିନଥିବା ବାବା ଓ ଯାତ୍ରୀଗଣ ପରବର୍ତ୍ତୀ ଟ୍ରେନ୍‌ରେ ବସି, ପହଞ୍ଚିଲା ବେଳକୁ ଦିନ ନଅଟା ହୋଇଯାଇଥିଲା । ଚୁଲୀ ଓ ହଣ୍ଡା ଆସିବା ପରେ ଦିନ ଦଶଟାରେ ଚୁଲୀ ଲାଗିଲା । ମହାରଣା ବାବୁଙ୍କ ଠାରୁ ସୂଚନା ପାଇଥିଲେ ମଧ୍ୟ ଅନ୍ୟ ବନ୍ଧୁମାନଙ୍କ ସହ ମିଶିବା ପାଇଁ ଆମେ ୧ ଘ. ୩୦ ମି. ବେଳକୁ ବାଙ୍ଗୁର ଧର୍ମଶାଳାରେ ପହଞ୍ଚିଲୁ । ବାଙ୍ଗୁର ଧର୍ମଶାଳାର ଉପର ମହଲାରୁ ସମୁଦ୍ରର ଦୃଶ୍ୟ ଅତ୍ୟନ୍ତ-ମନଲୋଭା । ଶହ ଶହ ବିରାଟ ବିରାଟ ଜାହାଜ ଦରିଆ ବୁକୁରେ ଯାତ୍ରା କରୁଥିବା ଲକ୍ଷ୍ୟ କଲୁ । ନିଜ ନିଜ କ୍ୟାମେରାରେ ସେହି ଦୃଶ୍ୟ କେତୋଟି ଉତ୍ତୋଳନ କଲୁ । ବିବରଣୀ ଲେଖିବା ସମୟରେ ସବୁ ମଧୁର ଅନୁଭୂତି ସଂଗ୍ରହ କରି ଲେଖିଲେ ଲେଖାଟି ଏକ ତରଫା ହୋଇଯାଇପାରେ । ତେଣୁ ଏଠାରେ ଏକ ତିକ୍ତ ଅନୁଭୂତି ବର୍ଣ୍ଣନା କରିବା ପାଇଁ ବାଧ୍ୟ ହେଉଛି । ବାଙ୍ଗୁର ଧର୍ମଶାଳାର ପାଚେରୀକୁ ଲାଗିଥିବା ଅନ୍ୟ ଏକ ବିରାଟ ଧର୍ମଶାଳାରେ ଆମ ତୀର୍ଥଯାତ୍ରୀ କେତେଜଣଙ୍କୁ ଦେଖିବାକୁ ମିଳିବାରୁ ଘଟଣାର ଅନୁସନ୍ଧାନ କଲୁ । ଶେଷରେ ଜାଣିବାକୁ ପାଇଲୁ ଯେ ସେଠାରେ ଯୁଗଶକ୍ତି ଗାୟତ୍ରୀ ଅନୁଷ୍ଠାନ ତରଫରୁ ସାପ୍ତାହିକ (ରବିବାର) ସତ୍‌ସଙ୍ଗ ଓ ଭୋଜିର ଆୟୋଜନ ହେଉଛି । ଆମେ ସେହି ସଂପ୍ରଦାୟର ବୋଲି କହି ସେହି ଭୋଜି ଉତ୍ସବରେ (ଆମର ରୋଷେଇ ଶେଷ ହୋଇ ନ ଥିବାରୁ) ଆମର ପେଟ ବିକିଳିଆ କେତେ ଜଣ ସାମିଲ୍ ହୋଇଛନ୍ତି । ସେଠାକୁ ଗଲେ କିଛି ବାଧାବନ୍ଧନ ନାହିଁ ବୋଲି ଆମକୁ ମଧ୍ୟ ଜଣେ ଦୁଇଜଣ ଶୁଖିଲା ନିମନ୍ତ୍ରଣ କଲେ କିନ୍ତୁ ଆମ ବିବେକ ଅନୁମୋଦନ କଲା ନାହିଁ । ସେଦିନ ଦିନ ୩ଟାରେ ଖାଇବା ପର୍ବ ଶେଷ ହେଲା । କଲାମ୍ ସୁପର ମାର୍କେଟ୍‌ର ଜିନିଷ କିଣା ଉପରେ ଏକ ଗରମାଗରମ ଚର୍ଚ୍ଚା ଚାଲିଲା । କିଏ କାହା ସ୍ୱାମୀକୁ ତ କିଏ କାହା ସ୍ତ୍ରୀକୁ ଅପାରଗ, ଅଚତୁର ବୋଲି ପ୍ରମାଣିତ କରିବାକୁ ପଛାଉନଥିଲେ, ଖାଲି ହାତ

ଉଠା ଉଠି ବାକି ଥିଲା । ସାମ୍‌ନାରେ ପ୍ରାଇଭେଟ୍ ଟୁରିଷ୍ଟ ସର୍ଭିସ୍ । ସେଠାରୁ ବୁଝି ଜାଣିଲୁ ସେମାନଙ୍କର ସବୁ Outside Scene ତେଣୁ Inside sight scene ପାଇଁ ଅଟୋର ଆଶ୍ରୟ ନେଲୁ । ୟା ଭିତରେ ଆମ ସାହୁବାବୁ ବଡ଼ ସମଝଦାର ଖରିଦ୍‌ଦାର ବନି ଯାଇଥିଲେ । କାହା ପାଇଁ ବାମାବର୍ତ୍ତ, ଦକ୍ଷିଣାବର୍ତ୍ତ ଶଙ୍ଖ, କାହାପାଇଁ କାଜୁ ବାଦାମ କିଣା ଓ କାହାପାଇଁ ଅଟୋ ଠିକ୍ କରିବାରେ ବେଶ୍ ଚଳଚଞ୍ଚଳ ଜଣାପଡୁ ଥିଲେ । ସେହି ସମୟରେ କିଏ କ'ଣ କିଣିବାର ଥିଲେ 'ସାହୁବାବୁଙ୍କୁ ଡ଼ାକ' 'ସାହୁବାବୁଙ୍କୁ ପଚାର' ଇତ୍ୟାଦିର ଏକ ଗୁଂଜରଣ ଆମ ଭିତରେ ଖେଳିଯାଉଥିଲା । ଦିନ ୩ଘ. ୩୦ ମି. ରାମେଶ୍ୱରମ୍ ପୋଲ ନିକଟରେ ପହଞ୍ଚିଲୁ । ସାଗରର ନୀଳ ଜଳରାଶିର ବକ୍ଷ ଭେଦକରି ମନୁଷ୍ୟର ଉନ୍ନତ ସୂକ୍ଷ୍ମ ମସ୍ତିଷ୍କ ପ୍ରସ୍ତୁତ ବିସ୍ମୟକର, ପୋଲ ଦେଖି ବିସ୍ମୟାଭିଭୂତ ହୋଇଗଲୁ । ତିନି କିଲୋମିଟର ବ୍ୟାପୀ ପୋଲର ତଳ ଭାଗରେ ଟ୍ରେନ୍ ଲାଇନ୍ ଓ ଉପରିଭାଗରେ ବସ୍, କାର ଯିବା ପାଇଁ ସଡ଼କ ପଥ ନିର୍ମାଣ କରାଯାଇଛି । ରାମେଶ୍ୱରମ୍ ଟାପୁର ପ୍ରାକୃତିକ ଦୃଶ୍ୟ ସହ ମନୁଷ୍ୟକୃତ ଜ୍ଞାନ କୌଶଳର ନିଦର୍ଶନ ସ୍ୱରୂପ ବିରାଟ ପୋଲ ଦର୍ଶନାର୍ଥୀଙ୍କୁ ବିମୋହିତ କରୁଥିଲା । ଭାରତୀୟ ସଂସ୍କୃତିକୁ ସର୍ବଜନ ବିଦିତ କରିବାରେ ଭାରତ ସରକାରଙ୍କର ରାମେଶ୍ୱରମ୍ ପୋଲ ନିର୍ମାଣ ପରିକଳ୍ପନା ଏକ ସୁଚିନ୍ତିତ ସଫଳ ରୂପାୟନ ବୋଲି ହୃଦୟଙ୍ଗମ କଲୁ । ''ସମୁଦ୍ର କୂଳିଆ ଧୀର ପବନ, ଛାଡ଼ି ଯିବାକୁ ନ ହୁଏ ମନ '' ନ୍ୟାୟରେ କିଛି ସମୟ ଅଟକିବାକୁ ଇଚ୍ଛା ଥିଲେ ମଧ୍ୟ ସଂଧ୍ୟା ପୂର୍ବରୁ ଚୁକ୍ତି ମୁତାବକ ସବୁ ସ୍ଥାନରେ ପହଞ୍ଚିବାକୁ ହେବ ଭାବି ଅଟୋରେ ବସିଲୁ । ଏକ ବିରାଟ ମନ୍ଦିର ନିକଟରେ ଅଟୋ ଠିଆ ହେଲା । ଏହା କୋଦଣ୍ଡରାମେର୍ ମନ୍ଦିର । ରାମ, ଲକ୍ଷ୍ମଣ, ସୀତା ମୂର୍ତ୍ତିଙ୍କୁ ଦର୍ଶନ କଲୁ । ପୂଜକ ବୁଝାଇଲେ ରାବଣ ନିଧନ ପରେ ଲଙ୍କାରୁ ପ୍ରତ୍ୟାବର୍ତ୍ତନ କରି ଶ୍ରୀରାମ ଏଠାରେ ବିଶ୍ରାମ ନେଇଥିଲେ । ଆଉ କେତେ ଛୋଟ ବଡ଼ ରାମ, ଲକ୍ଷ୍ମଣ, ସୀତା ମନ୍ଦିର ବୁଲି ଦେଖିଲୁ । ସନ୍ଥ ତୁଳସୀଦାସଙ୍କ ଭାଷା

''ସିୟା ରାମମୟ ସବ ଜଗ ଜାନୀ
କରହୁଁ ପ୍ରଣାମ ଯୋରି ଯୁଗ ପାନୀ ।।''

(ରାମଚରିତ ମାନସ)

ମନେପକାଇ ସଂଧ୍ୟାବେଳକୁ କାଶୀମଠରେ ପହଞ୍ଚିଲୁ । ଦିନସାରା ବୁଲାବୁଲିରେ କ୍ଲାନ୍ତି ଅନୁଭବ କରୁଥିଲେ ମଧ୍ୟ ସଂଧ୍ୟାରେ ବାଙ୍ଗୁର ଧର୍ମଶାଳାରେ ପ୍ରବଚନ କାର୍ଯ୍ୟକ୍ରମରେ ଉପସ୍ଥିତ ହେଲୁ ।

"ରାମ କଥା ସୁନ୍ଦର କରତାରୀ

ସଂଶୟ ବିହଗ ଉଡ଼ାବନ ହାରୀ ।"

ବୋଲି ରାମଚରିତ ମାନସରୁ ପଢିଥିଲୁ ତେଣୁ ନିମିଷେ ହେଲେ ସତ୍‌ସଙ୍ଗ ହାତଛଡ଼ା କରିବାକୁ ଇଚ୍ଛା କରୁ ନଥିଲୁ । ସେଠାରେ ବାବା ରାମେଶ୍ୱର ଧାମର ମହିମା, ରାମେଶ୍ୱରଙ୍କ ପ୍ରତିଷ୍ଠା ବିଷୟ ସୁନ୍ଦର ଓ ସାବଲୀଳ ଭାବରେ ବୁଝାଉଥାନ୍ତି । ହେଲେ କଣ ହେବ ଅଧିକାଂଶଙ୍କ ମନ ପ୍ରବଚନ ପ୍ରାଙ୍ଗଣରୁ ଯାଇ ରୋଷେଇଶାଳ ପ୍ରଦକ୍ଷିଣ କରୁଥିଲା । ତେଣୁ ପ୍ରବକ୍ତା ମହାଶୟ ବାଧ ହୋଇ ବାଣୀକୁ ବିରାମ ଦେଇ ପ୍ରସାଦ ସେବନ ଆୟୋଜନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ପ୍ରସାଦ ସେବନ ଓ କିଛି ସମୟ ବାର୍ତ୍ତାଳାପ ପରେ କାଶୀମଠକୁ ଫେରିଲୁ । କାଶୀମଠରେ ପିଇବା ପାଣିର କିଛି ବ୍ୟବସ୍ଥା ନଥିବାରୁ ଅଫିସ୍‌ରେ ରହୁଥିବା ଜଣେ କର୍ମଚାରୀ ମଠ ପାଇଁ କିଣି ଆଣିଥିବା ବଡ଼ ବଡ଼ ବୋତଲରୁ ପାଣି ଆମ ବୋତଲରେ ନିଜେ ଭର୍ତ୍ତି କରି ଦେଇଥିଲେ । ଏହି ସେବା ପାଇଁ ସେହି ମହାଶୟଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇ ରାତ୍ରି ବିଶ୍ରାମ ନେଲୁ ।

ସବୁ ମଣିଷ ସମାନ ନୁହଁନ୍ତି । ରାମେଶ୍ୱରମ୍ ସହରରେ ମଧ୍ୟ ଆମେ ବିପରୀତ ସ୍ୱଭାବର ଲୋକମାନଙ୍କର ସଂସ୍ପର୍ଶରେ ଆସିଥିଲୁ । ସଂଧ୍ୟା ସମୟରେ ମନ୍ଦିର ନିକଟସ୍ଥ ସମୁଦ୍ରକୂଳରେ ସାଂଧ୍ୟ ଭ୍ରମଣ କରୁଥିବା ସମୟରେ ସେହିଭଳି କେତେଜଣ ଦୋକାନୀ ଓ ବୁଲା ବିକାଳୀଙ୍କର ପ୍ରାଦୁର୍ଭାବରେ ପଡ଼ିଯାଇଥିଲୁ । କୌଣସି ଦୋକାନରୁ କିଛି ଜିନିଷ ଦେଖିବା ପାଇଁ ମାଗିଲେ ସେମାନେ ବହୁ କଷ୍ଟରେ ଦେଖାଉଥାନ୍ତି ଓ ମନୋନୀତ ନ ହେଲେ ଅତି କର୍କଶ ସ୍ୱରରେ ସେମାନଙ୍କ ଭାଷାରେ 'ପୋ', 'ପୋ' କହନ୍ତି । କ୍ରୁର ଚେହେରା ସହ କର୍କଶ ଭାଷା ବେଶ୍ ଖାପ ଖାଉଥିଲା ଆଉ ଆମକୁ ମନେପକାଇ ହସିବାକୁ ଖୋରାକ୍ ଯୋଗାଉଥିଲା । ସାଂଧ୍ୟ ଭ୍ରମଣ ସମୟରେ ସମୁଦ୍ର ସ୍ନାନ ପାଇଁ ଯାଇଥିବା ରାଜନୈତିକ ନେତା ଶ୍ରୀ ଗୋପୀନାଥ ମୁଣ୍ଡେ ଓ ସ୍ଥାନୀୟ ବିଧାୟକ ଶ୍ରୀ ସିଂଘିଙ୍କର ସାନ୍ନିଧ ଲାଭ କଲୁ ଓ ମଜାରେ ସେମାନଙ୍କର ଫଟୋ ମଧ୍ୟ ଉଠାଇ ଆଣିଲୁ ।

***ତା.୨୪.୦୧.୨୦୧୧, ସୋମବାର***

ସେ ଦିନ ଥିଲା ମାଘ ମାସର ପ୍ରଥମ ସୋମବାର । ପାଦରେ ଚାଲି ମନ୍ଦିରରେ ପହଞ୍ଚି ପାରୁଥିବା ଭଳି ସ୍ଥାନରେ ରହିବା ବ୍ୟାବସ୍ଥା ତେଣୁ ଦର୍ଶନ ଲୋଭ ସଂଭାଳି ନ

ପାରି ନିତ୍ୟକର୍ମ ସାରି ଭୋର୍ ୫ଟା ପୂର୍ବରୁ ମନ୍ଦିରରେ ପହଞ୍ଚିଲୁ । ମନ୍ଦିର ୫ଟାରେ ଖୋଲା ହେବ ଜାଣି ପ୍ରଥମେ ଧାଡ଼ିରେ ଠିଆ ହେଲୁ । ସେଦିନ ମାଗଣା ଦର୍ଶନ ବେଶି ସମୟ ପାଇଁ ପାଇଲୁ । ଭାବିଲୁ ଶ୍ରୀ ରାମେଶ୍ୱରଙ୍କ ଲୀଳା ଅପାର । ପଇସା ଦେଲେ କମ୍ ସମୟ, ମାଗଣାରେ ବେଶି ସମୟ ଦର୍ଶନ ମିଳିଲା । ମନ୍ଦିର ବେଢ଼ାରେ ମାହୁନ୍ତ ମାନଙ୍କ ସାଥୀରେ ବିରାଟ ବିରାଟ ହାତୀ ବୁଲୁଥିବାର ଦେଖିଲୁ । ଦର୍ଶନ ପରେ ସୁବୃହତ୍ ବେଢ଼ା ମନ ଭରି ପରିକ୍ରମା କରି ବାହାରକୁ ବାହାରିଲୁ । ଜଳଖିଆ ସେବନ ପରେ ପୁଣି କଲାମ ମାର୍କେଟ ଯିବା ପାଇଁ ମନ କଲୁ । ମୁଣ୍ଡପିଛା ଟ୧୦.୦୦ ଟିକଟ କରି ଅଟୋରେ ମାର୍କେଟରେ ପହଞ୍ଚିଲୁ । କିଛି ଜିନିଷ କିଣା କିଣି କଲୁ । ମଧ୍ୟାହ୍ନ ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ । ସଂଧ୍ୟା ୪ଘ.୧୫ମି.ରେ ସ୍ୱାଇଁ ବାବୁ ଓ ପଟ୍ଟନାୟକ ବାବୁଙ୍କ ସହ ମିଶି ଶ୍ରୀ ରାମେଶ୍ୱର ବାବାଙ୍କ ଶେଷ ଦର୍ଶନ ପାଇଁ ବାହାରିଲୁ । ମନ୍ଦିର ଫାଙ୍କା ଥିଲା, ମନଭରି ଦର୍ଶନ ସାରି ବେଢ଼ାର ପୂର୍ବ ଦ୍ୱାରରେ ଆୟୋଜିତ ପ୍ରଦର୍ଶନୀ ପ୍ରଦକ୍ଷିଣ କରି ବସାକୁ ଫେରିଲୁ । ଜିନିଷ ପତ୍ର ସଜାଡ଼ି ଫୋନ୍ ସ୍ୱିଚ୍ ଅଫ୍ କରିବା ପୂର୍ବରୁ ମୋ ବୋଉଙ୍କୁ ଫୋନ୍ ଲଗାଇଲୁ । ଗତ ଦୁଇଦିନ ହେଲା କଥା ହୋଇ ନ ଥିବାରୁ ସେ 'ଜନାର୍ଦ୍ଦନ ଧୂପ ଆଣିଲ କି' ବୋଲି ପ୍ରଶ୍ନ କଲା । ଆମେ ପ୍ରକୃତରେ ସେ ବିଷୟ ପ୍ରତି ନଜର ଦେଇ ନ ଥିଲୁ । ହାତରେ ଦେଢ଼ ଘଣ୍ଟା ସମୟ ଥିବାରୁ ପଡ଼ୋଶୀ ଯାତ୍ରୀଙ୍କୁ କହି ବାହାରି ପଡ଼ିଲୁ । ଆମ ବସା ସମନାରେ ଜ୍ୟୋତିଷରାଜ ଯାହାଙ୍କ ଠାରୁ ଆମେ ଓ ଆମ ସାଥୀଗଣ ଦକ୍ଷିଣାବର୍ତ୍ତ ଶଙ୍ଖ କିଣିଥିଲୁ ତାଙ୍କୁ ବୁଝିବାରୁ ସେ ମନା କଲେ । ଗୋଟିଏ, ଦୁଇଟି ଦୋକାନରେ ବୁଝି ମନ୍ଦିର ବେଢ଼ାରେ ପହଞ୍ଚିଲୁ । ମନ୍ଦିରର ଗୋଟିଏ ଦୋକାନରେ ଭଲ ରକମର ୧/୨ କେ.ଜି ଥିଲା । ଟ୧୦୦.୦୦ ମୂଲ୍ୟ ବିନିମୟରେ ଧୂପ କିଣି ମନ୍ଦିର ଫାଙ୍କା ଥିବାରୁ ଜୀବନରେ ଆଉଥରେ କେବେ ସମ୍ଭବ ହୋଇପାରିବ କି ନାହିଁ ସନ୍ଦେହ କରି ଦର୍ଶନ ପାଇଁ ଭିତରକୁ ପଶିଗଲୁ । ଅତି କମ୍ ସମୟ ମଧ୍ୟରେ ସହଜରେ ଦର୍ଶନ ସାରି ଫେରିଲା ବେଳକୁ ଏକା ଭଳି ସ୍ତମ୍ଭ, ମଣ୍ଡପ, ଦ୍ୱାର, ତୋରଣ ଆମ ଫେରିବା ରାସ୍ତା ଜାଣିବାରେ ଭ୍ରମ ସୃଷ୍ଟି କଲା । ବହୁ ଲୋକଙ୍କୁ ପଚାରି ପଚାରି ଶେଷରେ ପଶ୍ଚିମ ଦ୍ୱାରରେ ପହଞ୍ଚିଲୁ । କାଶୀମଠ ନିକଟରେ ପ୍ରବେଶ ହେଲା ବେଳକୁ ଆମ ସାଥୀଗଣ ଅଟୋ ଡ଼ାକି ଆମ ଅପେକ୍ଷାରେ ରହିଛନ୍ତି । ପଶ୍ଚିମ ଦ୍ୱାରକୁ ଲକ୍ଷ୍ୟ କରି ରାମାନନ୍ଦ ସାଗରଙ୍କ ରାମାୟଣର ଭାଷା ମନେ ପକାଇଲୁ । "ରାମସ୍ୟ ଈଶ୍ୱର ଯଃ ସଃ 'ରାମେଶ୍ୱର', ରାମ ଯସ୍ୟ ଈଶ୍ୱର ସଃ 'ରାମେଶ୍ୱର" ବୋଲି ସେହି ମହାଶୟ ବ୍ୟାଖ୍ୟା କରିଥିଲେ । ଉଭୟ ଶ୍ରୀରାମ ଓ ଈଶ୍ୱରଙ୍କୁ ହାତଯୋଡ଼ି ଅଟୋରେ ବସିଲୁ ।

''ତହୁଁ ଅଟୋ ବାହିନେଲା ସଡ଼କରେ
ପରବେଶ କଲା ରାମେଶ୍ୱର ଷ୍ଟେସନରେ'' ।

ସଂଧ୍ୟା ୭ଟାରେ ଷ୍ଟେସନରେ ପହଞ୍ଚିଲୁ । ଆମର ଅପେକ୍ଷମାଣ ରେଳଗାଡ଼ି ସେଠାରେ ଦଣ୍ଡାୟମାନ କିନ୍ତୁ ପ୍ରସ୍ଥାନ ସମୟ ରାତି ୮ଘ.୪୫ମି. ଥିବାରୁ କବାଟ ଖୋଲାଯାଇ ନଥିଲା । ଦୁଇ ଘଣ୍ଟା ସମୟ ତୀର୍ଥ ସାଥୀମାନଙ୍କର ସହ ଆଳାପ ଆଲୋଚନାରେ ଦଶ ମିନିଟ ପରି ସମୟ କଟିଗଲା । ଆମ ଉତ୍ତର-ଭାରତ ତୀର୍ଥ ସାଥୀ ବାଣପୁର ଗୋଦାବରୀଶ ବିଦ୍ୟାପୀଠ ଅବସରପ୍ରାପ୍ତ ଶିକ୍ଷକ ଶ୍ରୀଯୁକ୍ତ ସୁରେଶ ଚନ୍ଦ୍ର ହୋତା ସାର୍ ସେଦିନ କାର୍ଯ୍ୟକ୍ରମର ମୁଖ୍ୟ ପ୍ରବକ୍ତା ଥିଲେ । ଶିକ୍ଷା:- କାଲି ଓ ଆଜିର ପ୍ରସଙ୍ଗରେ ଆଲୋଚନା ହେଲାବେଳକୁ ସେ ନିଜ ଇଂରାଜୀ ଶିକ୍ଷକ ଛତ୍ରପୁର ବାସିନ୍ଦା ଶ୍ରୀ କେ.ଏନ୍.ରାଓଙ୍କର ଶିକ୍ଷାଦାନର ମଧୁର ସ୍ମୃତି ଅବତାରଣା କଲେ । ହୋତା ସାର୍‌ଙ୍କ ଭାଷାରେ ରାଓ ସାର୍ ଜଣେ ଇଂରେଜୀ ଭାଷା ବିଶେଷଜ୍ଞ । ତାଙ୍କର ସରଳ ବ୍ୟବହାରର ଉଦାହରଣ ଦେବାକୁ ଯାଇ ଅବିକଳ ତାଙ୍କ ସ୍ୱରକୁ ଓ ଭାଷାକୁ ନକଲ କରି ସାର୍ ବର୍ଣ୍ଣନା କଲେ ରାଓ ସାର୍‌ଙ୍କ ଗ୍ରାମାର କ୍ଲାସ୍ ସୁପରଲେଟିଭ୍ ଡ଼ିଗ୍ରୀ (SUPERLATIVE DEGREE) ପ୍ରାଞ୍ଜଳ ଭାବେ ବୁଝାଇବାକୁ ଯାଇ ସାର୍ କହୁଥିଲେ - Big - Bigger - Biggest ହେଲା, ହେଲେ କ' ରେ ବେଧଓ୍ୱା Tall କିସ ହେବ । Chingu Hota is the tallest boy in the class. ହେଲେ ତା'ର Comparative degree କିସ ହବରେ ବେଧଓ୍ୱା ଇତ୍ୟାଦି ଇତ୍ୟାଦି । କି ନିଷ୍କପଟ, ଅମାୟିକ ଓ ପୁତ୍ର ପ୍ରତିମ ବ୍ୟବହାର ସେହି ସମୟର ଶିକ୍ଷକ ମାନଙ୍କର ଆଉ ବର୍ତ୍ତମାନ? ହୋତା ସାର୍ ଗୋଟିଏ କଟୁ ସମାଲୋଚନାରେ କହିଲେ - ଏବେ 'TEACHER' ବନଗୟା 'CHEATER' 'ଛାତ୍ର' ହୋଇଗଲା 'ଛତରା' । ଆମ ଭଳି କେତେ ଜଣ ସ୍ୱଳ୍ପ ବୁଦ୍ଧି ସଂପନ୍ନ ଶିକ୍ଷକ ହୋତା ସାର୍‌ଙ୍କ ବକ୍ତବ୍ୟକୁ ନିର୍ବିବାଦରେ ଗ୍ରହଣ କରୁ କରୁ ଟ୍ରେନରେ ଆଲୁଅ ଜଳି କବାଟ ଖୋଲା ହୋଇଯାଇଥିଲା । ଟ୍ରେନ୍‌ରେ ପ୍ରସାଦ ବଣ୍ଟନ ସମୟରେ ଅନ୍ୟ ଏକ ଆମୋଦଦାୟକ ଘଟଣାର ଅବତାରଣା ହୋଇଥିଲା । ସେ ଦିନ ଆମ ପାଇଁ ବଗି ନଂ ୦୪ରେ ସାଇଡ୍ ସିଟ୍ ନଂ ୨୩ ଓ ୨୪ ନିର୍ଦ୍ଧାରିତ ହୋଇଥିଲା । ଆମର ପାଖରେ ଛତ୍ରପୁରର ଦଳେ ଲୋକ ଓ ପଟ୍ଟନାୟକ ବାବୁ ବସିଥିଲେ । ଛତ୍ରପୁରର ସେନାପତି ବାବୁ ଆମ ସହିତ ଉତ୍ତର ଭାରତ ଯାଇଥିଲେ । ଟ୍ରେନରେ ଚଢ଼ିବା ପରେ ନିଜ ନିଜ ସିଟ୍ ଅଧିକାର ଅଧ୍ୟାୟ ଶେଷ ହେବା ପରେ ଚାପା ଗୁଞ୍ଜରଣ ସୃଷ୍ଟି ହେଲା ଓ କ୍ରମଶଃ ହସର ଲହରୀ ବଢ଼ିବାକୁ ଲାଗିଲା । ସେଠାରେ ସମସ୍ତେ ଆମର ଉତ୍ତର ଭାରତ ତୀର୍ଥ

ସାଥି ଥିଲେ । ତେଣୁ ନିର୍ଭୟରେ ଘଟଣାର ଅନୁସନ୍ଧାନ କରିବାରୁ ଜଣାଗଲା ଛତ୍ରପୁରର ଜଣେ ମହାଶୟଙ୍କ ଜୋତା ହଳକ ରାମେଶ୍ୱରମ୍ ମନ୍ଦିର ବାହାରେ ଅଦଳ ବଦଳ ହୋଇ ଯାଇଛି । ଭାଗ୍ୟ ବଶତଃ ବାମ ପାଦ ଓ ଡ଼ାହାଣ ପାଦର ଜୋତା ଠିକ୍ ଅଛି ହେଲେ ଗୋଟିଏ ୬ନଂ ଅନ୍ୟଟି ୮ନଂ । ଟ୍ରେନ୍ ସମୟ ହୋଇଯାଇଥିବାରୁ ଭଦ୍ରବ୍ୟକ୍ତି ଜଣକ ଅଡୁଆ ଲାଗୁଥିଲେ ମଧ୍ୟ ସମ୍ଭାଳି ନେଇ ଚାଲି ଆସିଛନ୍ତି । ୬ନଂ ଓ ୮ନଂ ଜୋତାକୁ ମୁଖ୍ୟ ପ୍ରସଙ୍ଗ କରି ବିଭିନ୍ନ କଣ୍ଠରୁ ବିଭିନ୍ନ ଟିପ୍‌ପଣୀ ଓ ମତାମତ ପ୍ରଦାନ କରାଯାଇଥିଲା । ହାସ୍ୟରୋଳର ସାମାନ୍ୟ ବିରତି ଲକ୍ଷ୍ୟ କରି ଭଦ୍ରବ୍ୟକ୍ତି ମହୋଦୟଙ୍କର ସ୍ଥାୟୀ ଠିକଣା ପଚାରି ଜାଣିବାକୁ ପାଇଲି ସେ ମୋ 'ବଟ ଭାଇନା', ବଟକୃଷ୍ଣ ତ୍ରିପାଠୀ - ମୋ ନନାଙ୍କର ଅତି ପ୍ରିୟ ଛାତ୍ର । ମୋ ନନା ଛତ୍ରପୁର ଅନସ୍କୋ ଇନଷ୍ଟିଚ୍ୟୁଟ୍‌ରେ ଶିକ୍ଷକତା କରୁଥିବା ସମୟରେ (୧୯୬୧-୧୯୬୭) ଗିଲଟିପେଟା ସାହିରେ ବଟ ଭାଇନାଙ୍କ ମାମୁଁ ଶ୍ରୀଯୁକ୍ତ ଦଣ୍ଡପାଣିଙ୍କ ଘରେ ଭଡ଼ାରେ ରହୁଥିଲେ । ଅନ୍ୟ ଏକ ପାର୍ଶ୍ୱରେ ସେହି ସ୍କୁଲର ସଂସ୍କୃତ ଶିକ୍ଷକ ଶ୍ରୀଯୁକ୍ତ ନରସିଂହ ଶତପଥୀ ଓ ମଝି ବଖରାରେ ବଟ ଭାଇନା ରହି ପଢ଼ାପଢ଼ି କରୁଥିଲେ । ବଟ ଭାଇନା ଜଣେ ଉତ୍ତମ ଗାୟକ । ମୋ ନନା ନାଟ୍ୟ ନିର୍ଦ୍ଦେଶକ । 'ଗୁଣ ଚିହ୍ନେ ଗୁଣିଆ' ନୀତିରେ ବଟ ଭାଇନା ଆମ ପରିବାରର ଅତି ପ୍ରିୟଭାଜନ ହୋଇ ପାରିଥିଲେ । ପରିଚୟ ପାଇସାରିଲା ପରେ ଗୋଟିକ ପରେ ଗୋଟିଏ ମଧୁର ସ୍ମୃତି ରୋମନ୍ଥନ ଆରମ୍ଭ ହେଲା । ଗିଲଟିପେଟା ସାହିରେ ଭଡ଼ାରେ ରହିଲା ବେଳକୁ ମୋର ବୟସ ୭ ବର୍ଷ । ତା ପୂର୍ବରୁ ବର୍ଷେ ନନା ମେଇନ୍ ରୋଡ୍‌ରେ ପାଲୁର ରାଜମହଲର ପଡ଼ିଶାରେ ରହୁଥିଲେ । ମୋର ଜନ୍ମ ୧୯୫୬ ମସିହାରେ । ପ୍ରଥମେ ବଟ ଭାଇନା ଆଶ୍ଚର୍ଯ୍ୟ ହେଲେ କହିଲେ- "ତମେ ତ ସେତେବେଳକୁ ୭/୮ ବର୍ଷର ପିଲା । ୫୦ ବର୍ଷ ପରେ ଏତେ ମନେରଖି କହିପାରୁଛ । ତମେ ଠିକ୍ ତମ ନନାଙ୍କ ଭଳି ।" ମୁଁ କହିଲି - "ଭାଇନା ! ତମେ ତ କିଛି କମ୍ ମନେ ରଖି ନାହଁ, ନହେଲେ କି ଓଡ଼ିଶା ସରକାରଙ୍କର OAS Officer ହୋଇ ଅବସର ନେଇଥାଆନ୍ତ ।" ତା'ପରେ ମୋ ବୋଉ ସହିତ ବଟ ଭାଇନା ଫୋନ୍‌ରେ କିଛି ସମୟ କଥାବାର୍ତ୍ତା ହୋଇ ୰ଗୁରୁଜୀ ଓ ଗୁରୁମାଙ୍କ ପ୍ରତି କୃତଜ୍ଞତା ଜଣାଇଲେ । କହିବା ବାହୁଲ୍ୟ ଆମର ଦୀର୍ଘ ଦିନ ବ୍ୟବଧାନରେ ସ୍ମୃତି ପୁନଃ ଜୀବିତ କରିବା ଘଟଣା ସେଠାରେ ଉପସ୍ଥିତ ଥିବା ସମସ୍ତ ଯାତ୍ରୀଙ୍କ ସ୍ତମ୍ଭୀଭୂତ କରିଦେଇଥିଲା । ଯେତେବେଳେ "ବଟ ଭାଇନାଙ୍କ ଚପଲ ଉପାଖ୍ୟାନ" ମୋର ସ୍ମରଣକୁ ଆସୁଛି ପାଗଳିଙ୍କ ପରି ମନେ ମନେ ହସୁଛି । ତା'ପରେ ମୁଖ୍ୟବକ୍ତା ସାଜିଲେ ଭୁବନେଶ୍ୱର ବାସିନ୍ଦା ଶ୍ରୀ ମହାପାତ୍ର ମହୋଦୟ । ବାବୁଙ୍କର ସଂଳାପ - ସକାଳ ହୋଇଥିଲେ

Good Morning ରାତି ହୋଇଥିଲେ Good Night ବହୁତ ମଜେଦାର ଲୋକ । ଯାତ୍ରା ସମୟରେ ସବୁବେଳେ ହାସ୍ୟରୋଳ ସୃଷ୍ଟି କରୁଥାନ୍ତି । କିଛି କ୍ଷଣର ନୀରବତା ପରେ ଡ଼ାକ୍ତର ମହାଶୟଙ୍କର ଆଗମନ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଏଇ ଥର ତୀର୍ଥଯାତ୍ରାର ଡ଼ାକ୍ତର ମହୋଦୟ ଉତ୍ତମ ବ୍ୟବହାର ସଂପନ୍ନ ଜଣେ ସୁଚିକିତ୍ସକ । କ୍ୟାପିଟାଲ୍ ହସ୍‌ପିଟାଲରୁ ଅବସର ନେଇଛନ୍ତି । ପୂର୍ବ ଅଭ୍ୟାସାନୁଯାୟୀ ପ୍ରତିଦିନ ରୋଗୀମାନଙ୍କର ହାଲଚାଲ ବୁଝି ବୁଲି ବୁଲି ଔଷଧ ବାଣ୍ଟନ୍ତି । ସ୍ୱାସ୍ଥ୍ୟ ସମସ୍ୟା ବୁଝି ସାରିବା ପରେ ଡ଼ାକ୍ତର ମହାଶୟ ଭଗବତ୍ ପ୍ରସଙ୍ଗ ଆଲୋଚନା କଲେ । ସୁବକ୍ତା ଡ଼ାକ୍ତର ମହୋଦୟଙ୍କ ଠାରୁ ଧର୍ମାଲୋଚନା ଶୁଣି କେତେକ ସଂଶୟ ଦୂର କଲୁ । ରାତି ୧୧ ଘ. ୩୦ମି. ରେ ମଦୁରାଇ ଷ୍ଟେସନ୍‌ରେ ପହଞ୍ଚିବାକୁ ଥିବାଯୋଗୁଁ ଗପସପରେ ସମୟ ବିତାଇଲୁ । ନିର୍ଦ୍ଦିଷ୍ଟ ସମୟରେ ମଦୁରାଇ ଷ୍ଟେସନ୍‌ରେ ପହଞ୍ଚି ଅଟୋ ଯୋଗେ ମଦୁରାଇ ଷ୍ଟେସନ୍‌ରୁ ଆମ ପାଇଁ ନିର୍ଦ୍ଧାରିତ 'ହୋଟେଲ ସଂଗମ'ରେ ପହଞ୍ଚିଲୁ । ସେ ଦିନ ତୃତୀୟ ମହଲାରେ ୩୦୨ ନମ୍ବର କୋଠରୀରେ ଆମ ପାଇଁ ବ୍ୟବସ୍ଥା ହୋଇଥିଲା । ଜିନିଷ ହୋଟେଲ୍ ଲୋକଙ୍କ ସାହାଯ୍ୟରେ ଉପରକୁ ଉଠାଇ ବିଶ୍ରାମ ନେଲୁ ।

### ତା. ୨୫.୦୧.୨୦୧୧, ମଙ୍ଗଳବାର

ରାତିରେ ମୋର ଦେହ ସାମାନ୍ୟ ଅସୁସ୍ଥ ମନେହେଲା । ବଦହଜମ ଯୋଗୁଁ ସାମାନ୍ୟ ଜ୍ୱର ଓ ଝାଡ଼ା ଦେଖାଦେଇଥିଲା । ପ୍ରଥମେ ପଡୋଶୀ ପଟ୍ଟନାୟକ ବାବୁ ଓ ପରେ ଡ଼ାକ୍ତର ବାବୁଙ୍କଠାରୁ କିଛି ଔଷଧ ଖାଇଲି । ସାମାନ୍ୟ ଅରାମ ଅନୁଭବ କରିବାରୁ ମଇଳା ଲୁଗାସଫା କରି ମୀନାକ୍ଷି ଦେବୀ ଦର୍ଶନ ପାଇଁ ବାହାରିଲୁ । ଏଠାରେ ମଧ ମୀନାକ୍ଷି ମନ୍ଦିର ଅତି ନିକଟରେ । ମଦୁରାଇରେ ଆମ ତୀର୍ଥଯାତ୍ରୀଙ୍କ T. M. Lodge, ହୋଟେଲ ଷନ୍ମୁଗ ଟାୱାରସ୍ ଓ ହୋଟେଲ ସଂଗମରେ ରହିବା ବ୍ୟବସ୍ଥା ହୋଇଥିଲା । ଟି.ଏମ୍. ଲଜ୍‌ରେ ରହୁଥିବା ମହାରଣା ବାବୁ ଦର୍ଶନ ପାଇଁ ଯିବା ରାସ୍ତାରେ ମିଶିଲେ । ସେ ସକାଳ ଚା'ପାନ ସମୟରେ ଚା' ଦୋକାନରୁ ଶୁଣିଥିଲେ ଆଜି ମଙ୍ଗଳବାର । ମୀନାକ୍ଷି ଦେବୀଙ୍କ ବାହାଘର ବାର ତେଣୁ ସକାଳ ୯ଟା ପର୍ଯ୍ୟନ୍ତ ଶାଢ଼ୀ ଦୋକାନରେ ରିବେଟ୍ ମିଳୁଛି । ମହାରଣା ବାବୁ ଏକ ରକମ ଜୋର ଜବରଦସ୍ତ କରି ପ୍ରାୟ ୧୦/୧୨ଜଣ ତୀର୍ଥଯାତ୍ରୀଙ୍କୁ ଶାଢୀ କିଣିବା ପାଇଁ ପ୍ରବର୍ତ୍ତାଇଲେ । ମନ୍ଦିର ବନ୍ଦ ଯୋଗୁଁ ସମସ୍ତେ ଶାଢ଼ୀ ଦୋକାନରେ ପଶିଲୁ । ଶାଢୀ ମନୋନୀତ ନ ହେଉଣୁ ଦୋକାନୀମାନେ ବିଲ୍ କାଟି ଦେଉଥିଲେ । ଯାହାହେଉ ଖଣ୍ଡେ, ଦୁଇଖଣ୍ଡ ଶାଢ଼ୀ କିଣି

ସେହି ଦୋକାନରେ ରଖି ଦର୍ଶନ ପାଇଁ ବାହାରିଲୁ । ପରେ ଜାଣିଲୁ ସକାଳ ୯ଟା, ୧୦ଟା ଇତ୍ୟାଦି ଟିକେଟ୍ ପାଇଁ କିଛି ସମୟ ସୀମା ନାହିଁ । ଆମେ ସମସ୍ତେ ଠକାମିରେ ଶିକାର ହୋଇଥିବା ବିଷୟ ଜାଣିପାରିଲୁ । ମନ୍ଦିରରେ ପ୍ରବେଶ କଲୁ । ବିରାଟ ଆୟତନ ବିଶିଷ୍ଟ ମଦୁରାଇ ମୀନାକ୍ଷି ମନ୍ଦିର । ୪ ଦିଗର ସୁଉଚ୍ଚ ଦ୍ୱାର ଦେଖିବାକୁ ଏକାପରି । ଆମେ ଶାଢ଼ୀ କିଣି ପଶ୍ଚିମ ଦ୍ୱାର ଦେଇ ପ୍ରବେଶ କରିଥିଲୁ । ଏଠାରେ ଦକ୍ଷୀଣ ଭାରତୀୟ ମନ୍ଦିରଗୁଡ଼ିକ ଠାରୁ ଗୋଟିଏ ସ୍ୱତନ୍ତ୍ର ପରିପାଟୀ ଦୃଷ୍ଟିଗୋଚର ହେଲା । ଦ୍ରାବିଡ଼ ଶୈଳୀରେ ନିର୍ମିତ ସବୁ ମନ୍ଦିରର ଗଠନ ଏକାପରି । କିନ୍ତୁ ଏଠାରେ ଉନ୍ନତ ସୂକ୍ଷ୍ମ କଳାଶୈଳୀକୁ ସୁସ୍ପଷ୍ଟ କରିବା ପାଇଁ ଲାଲ, ନୀଳ ରଙ୍ଗରେ ଚିତ୍ରିତ କରାଯାଇଛି । ବାହାର ଓ ଭିତରର କଳା ନୈପୁଣ୍ୟ ଅତି ଚମତ୍କାର । ଏହି ମନ୍ଦିରର ନିୟମାନୁସାରେ ପ୍ରଥମେ ଦେବୀ ମୀନାକ୍ଷିଙ୍କୁ ଓ ପରେ ସୁନ୍ଦରେଶ୍ୱର ଦେବଙ୍କୁ ଦର୍ଶନ କରାଯାଏ । ତେଣୁ ଆମେ ଅଷ୍ଟଶକ୍ତି ମଣ୍ଡପ ଦ୍ୱାର ଦେଇ ପ୍ରବେଶ କଲୁ । କେତୋଟି ମଣ୍ଡପ ଦ୍ୱାର ଓ ପାହାଚ  ଅତିକ୍ରମ କରି ସୁବର୍ଣ୍ଣ ପଦ୍ମପୋଖରୀ ପାର୍ଶ୍ୱରେ ପହଞ୍ଚିଲୁ । ସେଠାରୁ ଦର୍ଶନ ପାଇଁ ଧାଡ଼ି ଆରମ୍ଭ ହୋଇଥିଲା । ଏକ ପାର୍ଶ୍ୱରେ ରହିଥିଲା ସ୍ୱର୍ଣ୍ଣ ପୋଖରୀ, ସ୍ୱର୍ଣ୍ଣ ପୋଖରୀ ଜଳଶୂନ୍ୟ । ଚତୁର୍ଦ୍ଦିଗରେ ସୁସଜ୍ଜିତ ପାହାଚ । ମଧ୍ୟ ଭାଗରେ ଏକ ସ୍ୱର୍ଣ୍ଣ କମଳର ଅବସ୍ଥାନ ପୋଖରୀର ଶୋଭା ବର୍ଦ୍ଧନ କରୁଥିଲା । ଧାଡ଼ିର ଅପର ପାର୍ଶ୍ୱରେ ଗମ୍ବୁଜ ଆକାରର ପ୍ରସ୍ତର ମାନଙ୍କରେ ଦେବୀ ମୀନାକ୍ଷି, ସୁନ୍ଦରେଶ୍ୱର ଦେବ ଓ ବିଭିନ୍ନ ଦେବଦେବୀଙ୍କ ପ୍ରତିମୂର୍ତ୍ତି ବିଦ୍ୟମାନ । ମୀନାକ୍ଷି ମନ୍ଦିରର ବିଜେ ବଖରା ସମ୍ମୁଖରେ ଏକ ତିନି ମହଲା ବିଶିଷ୍ଟ ମୁଖଶାଳା ପ୍ରବେଶଦ୍ୱାରରେ ଅବସ୍ଥାପିତ । ଦୁଇଟି ପିତ୍ତଳ ପ୍ରତିମୂର୍ତ୍ତି ଦ୍ୱାରପାଳ ରୂପେ ସ୍ଥାପିତ ଦେଖିବାକୁ ପାଇଲୁ । ବିରାଟ ଆକାର ବିଶିଷ୍ଟ ବିନୟଗର ଓ ମୁତ୍ତୁକୁମାରଙ୍କ ପ୍ରତିମୂର୍ତ୍ତି ଅତିକ୍ରମ କଲାପରେ ମୀନାକ୍ଷି ଦେବୀଙ୍କ ସମ୍ମୁଖରେ ପହଞ୍ଚିବାକୁ ହୁଏ । ଅପରୂପା ଲାବଣ୍ୟ ପ୍ରତିମା ଦେବୀ ମୀନାକ୍ଷି ଦେବୀଙ୍କର ଶୋଭା ଓ ଠାଣି ବେଶ୍ ମନଲୋଭା । ତଡ଼ିତ୍ ଦର୍ଶନ ବ୍ୟବସ୍ଥା ଥିବାରୁ ପଲକ ନ ପକାଇ ଦେବୀ ମା'ଙ୍କର ଦର୍ଶନ କଲୁ । ମୁକ୍କୁରୁଣି ଭିନୟଗରଙ୍କ ପରେ ସୁନ୍ଦରେଶ୍ୱର ଦେବଙ୍କୁ ଦର୍ଶନ କଲୁ । ତା'ପରେ ପ୍ରବେଶ କଲୁ ହଜାରେ ଖମ୍ବର ସଭାଗୃହରେ ହଜାରେ ଖମ୍ବ ସଭାଗୃହର ମୂଳ ବୈଶିଷ୍ଟ୍ୟ ହେଲା ସଭାଗୃହର ସ୍ତମ୍ଭଗୁଡ଼ିକ ଏଭଳି ଯୋଜନା ବଦ୍ଧ ଭାବରେ ନିର୍ମାଣ କରାଯାଇଛି ଯେ, ଯେକୌଣସି କୋଣରୁ ଦେଖିଲେ ଏହା ସିଧା ସଳଖ ଦେଖାଯିବ । ସଭାଗୃହର ମଧ୍ୟଭାଗରେ ଏକ ଅନୁଚ୍ଚ ମଣ୍ଡପରେ ଚିତ୍ତାକର୍ଷକ ନଟରାଜ ମୂର୍ତ୍ତି ସ୍ଥାପିତ । ଏହି ସଭାଗୃହର କୋଣ ଅନୁକୋଣ, ପ୍ରତ୍ୟେକ ସ୍ତମ୍ଭ, ପ୍ରାଚୀର, ଛାତର କଳାନୈପୁଣ୍ୟ ବର୍ଣ୍ଣନା କରିବା ଆମ ଭଳି କ୍ଷୁଦ୍ରମତି

ଦର୍ଶକର କଳ୍ପନାର ବାହାରେ । କଳାକୃତି ଗୁଡ଼ିକ ସୁରକ୍ଷିତ ଓ ସଂରକ୍ଷିତ ଥିବା ଯୋଗୁଁ ସରକାରୀ ଉଦ୍ୟମ ଓ ମନ୍ଦିର ପରିଚାରକଙ୍କୁ ପ୍ରଶଂସା କଲୁ । ଶିଳ୍ପ, ଶିଳ୍ପୀ, ସ୍ରଷ୍ଟା, ନିର୍ମାତା ରାଜା ମହାରାଜାମାନଙ୍କର ଅଦମ୍ୟ ଉଦ୍ୟମ ପ୍ରସ୍ତର ବୁକୁରେ ଫୁଟି ଉଠି ସେମାନଙ୍କୁ ଓ ସେମାନଙ୍କର କଳାକୁ କାଳଜୟୀ କରିପାରିଛି ବୋଲି ହୃଦୟଙ୍ଗମ କଲୁ । ଦକ୍ଷିଣ ଭାରତର ମନ୍ଦିରମାନଙ୍କରେ ଏକ ସ୍ୱତନ୍ତ୍ର ନିୟମ ପରିଲକ୍ଷିତ ହେଉ ଥିଲା । ମନ୍ଦିର ଭିତରେ ନିର୍ଦ୍ଦିଷ୍ଟ ସ୍ଥାନ ପର୍ଯ୍ୟନ୍ତ (ଠାକୁରଙ୍କ ସମ୍ମୁଖ ଠାରୁ କିଛି ଦୂର) ଅଣ ହିନ୍ଦୁମାନଙ୍କର ପ୍ରବେଶ ଅଧିକାର ଥିଲା । ବୋଧହୁଏ ଉତ୍କର୍ଷ କଳାକୁ ସର୍ବଜନବିଦିତ କରିବା ପାଇଁ ଏ ଭଳି ବ୍ୟବସ୍ଥା କରାଯାଇଛି । ହଜାରେ ଖମ୍ବର ସଭାଗୃହରେ ବହୁ ବିଦେଶୀ ବିଦେଶିନୀ ଗଣ ନାମୀଦାମୀ କ୍ୟାମେରାରେ କଳାକୃତି ଗୁଡ଼ିକୁ ସାଇତି ରଖିବାର ପ୍ରଚେଷ୍ଟା କରୁଥିଲେ । ଆମ ବେକରେ ଇସ୍କନ ବ୍ୟାଜ୍ ଝୁଲୁଥିବାର ଦେଖି ଆମ ପ୍ରତି ଆକୃଷ୍ଟ ହୋଇ ଆମର ଦଳଗତ ଫଟୋ ନେବା ପାଇଁ ଅନୁମତି ମାଗିଲେ । ଆମେ ମଧ୍ୟ ସେମାନଙ୍କ ସହ ମିଶି ଦଳଗତ ଫଟୋ ଉଠାଇ ଆଣିଲୁ । ମଧ୍ୟାହ୍ନ ଭୋଜନ ସମୟ ଆଗତ ହୋଇଯାଇଥିବାରୁ କାରୁକାର୍ଯ୍ୟ ନିକଟରୁ ଜୋରଜବରଦସ୍ତ ଆଖି ଉଠାଇ ଆଣି ମନ୍ଦିର ବାହାରକୁ ଆସିଲୁ । ଉତ୍ତର ଦ୍ୱାରସ୍ଥ ଶାଢ଼ୀ ଦୋକାନରୁ କିଣିଥିବା ଶାଢ଼ୀ ସଂଗ୍ରହ କରି ଲଜ୍‌ରେ ପହଞ୍ଚିଲୁ । ସେଦିନ ଦହି ଓ କ୍ଷୀରି ସହ ସ୍ୱାଦିଷ୍ଟ ପ୍ରସାଦର ବ୍ୟବସ୍ଥା ହୋଇଥିଲା । ପ୍ରସାଦସେବନ ପରେ କିଛି ସମୟ ପାଇଁ ବିଶ୍ରାମ ନେଲୁ । ଦିନ ୨ଟା ୩୦ ମି.ରେ ମଦୁରାଇ ସାଇଟ୍ ସିନ୍‌ରେ ବାହାରିଲୁ । ମୁଣ୍ଡପିଛା ଟ. ୧୦୦.୦୦ ଟିକଟରେ ଦୁଇଟି କ୍ୟାଣ୍ଟରରେ କିଛି ଯାତ୍ରୀ ଏକାଠି ହୋଇ ଯାତ୍ରାରମ୍ଭ କରି ପ୍ରଥମେ ପହଞ୍ଚିଲୁ ଏକ ବିରାଟ ପୁଷ୍କରିଣୀ ''ମାରିଆମ୍ମନ ପୁଷ୍କରିଣୀ'' ନିକଟରେ । ବିରାଟ ସରୋବର 'ମାରିଆମ୍ମନ ପୁଷ୍କରିଣୀ' । ମଧ୍ୟଭାଗରେ ଏକ ମନ୍ଦିର ଅବସ୍ଥିତ । ଶ୍ରୀକ୍ଷେତ୍ରର ଭଉଁରୀ ଯାତ୍ରା ଭଳି ଏଠାରେ ମଧ୍ୟ ସେହିଭଳି କିଛି ଯାତ୍ରାର ବ୍ୟବସ୍ଥା ହେଉଥିବା ମଧ୍ୟ ପରିଲକ୍ଷିତ ହୋଇଥିଲା । ସରୋବରର ଅପର ପାର୍ଶ୍ୱରେ ରାସ୍ତା ପାର ହେଲେ ମୁକ୍ତିଶ୍ୱର ମନ୍ଦିର । ଦେବ ଦେବ ମହାଦେବ ଓ ପାର୍ଶ୍ୱଦେବା ଦେବୀଙ୍କୁ ଦର୍ଶନ କରି ସାରିବା ପରେ ବସ୍ ଚାଲିଲା ରାଜ ପ୍ରସାଦ ଅଭିମୁଖେ । ମହାରାଜ ତିରୁମଲୈ ନାୟକରଙ୍କର ରାଜପ୍ରାସାଦ ଏକ ବିରାଟ ରାଜ ପ୍ରସାଦ । ଟ. ୧୦.୦୦ ଟିକଟରେ ମ୍ୟୁଜିୟମ ପରିଦର୍ଶନର ବ୍ୟବସ୍ଥା ରହିଛି । ବିଭିନ୍ନ ଯୁଦ୍ଧାସ୍ତ୍ର ଓ ରାଜକୀୟ ସାମଗ୍ରୀରେ ମ୍ୟୁଜିୟମ୍ ପରିପୂର୍ଣ୍ଣ । ମଦୁରାଇ ନାରିକେଳ ରସ ଓ ଶସ ପାନ, ଭୋଜନ ପରେ ସେଠାରୁ ବିଦାୟ ନେଇ ପହଞ୍ଚିଲୁ ଦକ୍ଷିଣ ବାଲାଜୀ ଓ ନରନାରାୟଣ ମନ୍ଦିର । ମନ୍ଦିର ଭିତରେ ଓ ବାହାରେ ଦକ୍ଷିଣ ଭାରତୀୟ କଳା ସଂସ୍କୃତି

ପରିଦୃଷ୍ଟ ହେଉଥିଲା । ପଞ୍ଚମରେ ପହଞ୍ଚିଲୁ ଗାନ୍ଧି ସଂଗ୍ରହାଳୟ । ଗାନ୍ଧିଜୀଙ୍କ ଜୀବନୀ ସମ୍ବଳିତ ଅନେକ ଫଟୋଚିତ୍ର ସଂଗ୍ରହାଳୟରେ ସଂରକ୍ଷିତ । ସଂଗ୍ରହାଳୟର ମୁଖ୍ୟ ପ୍ରବେଶ ଦ୍ୱାରା ବାରଣ୍ଡାରେ ଲିପିବଦ୍ଧ ହୋଇଥିବା ଲେଖାଟି ଏହିପରି - "Gandhiji has been killed. The second crusification in the history of the world has been enacted on a Friday the same day Jesus has done to death Nineteen Hundred Fifteen years ago". (Father, Forgive us !)

ସଂଗ୍ରହାଳୟ ଭିତରେ ବାହାର ବୁଲି ଦେଖିଲା ବେଳକୁ ସଂଧ୍ୟା ଉପନୀତ । ଡ୍ରାଇଭର ରାସ୍ତାରେ ଠିକ୍ ହାତୀ ବସିଲା ଭଳି ଗୋଟିଏ ପାହାଡ଼କୁ ଦେଖାଇ ତାହା ''ଏଲିଫେଣ୍ଟ ହିଲ୍'' ବୋଲି କହିଲେ । ତା'ପରେ ସେ ଦିନର ଯାତ୍ରା ଶେଷ । ସଂଧ୍ୟାରେ ପ୍ରବଚନରେ ଯୋଗ ଦେଲୁ ଓ ପ୍ରସାଦସେବନ ପରେ ବିଶ୍ରାମ ନେଲୁ ।

*ତା. ୨୬.୦୧.୨୦୧୧, ବୁଧବାର*

ସକାଳ ୫ଟା ନିତ୍ୟକର୍ମ ସାରି ନିର୍ଦ୍ଧାରିତ ବସ୍ ଯୋଗେ କନ୍ୟାକୁମାରୀ ଯାତ୍ରା କଲୁ । ପ୍ରକାଶ ଥାଉକି ଏଇଥର ବସ୍‌ଗୁଡ଼ିକରେ ସ୍ଥାନ ସଂରକ୍ଷଣ ପାଇଁ ଭୁଲ୍ ବୁଝାମଣା ଦେଖାଦେଉଥିଲା । ଏହିଭଳି ସ୍ଥାନାଭାବର ଶିକାର ହୋଇ ଜଣେ ଭଦ୍ର ମହିଳା ଅନ୍ୟ ବସ୍‌ରୁ ଆମ ବସ୍‌ରେ ପ୍ରବେଶ କଲେ । କୌଣସି କାରଣରୁ ଯାତ୍ରୀମାନେ ତଳକୁ ଓହ୍ଲାଇଥିବା ସମୟରେ ଆମ ନିର୍ଦ୍ଧାରିତ ସ୍ଥାନରେ ବସ୍‌କୁ ଉଠିଲା ବେଳକୁ (ଏଇ ଘଟଣା ପରେ ପରିଚିତ ହୋଇଥିବା) ବିଷୋୟୀ ବାବୁ ତାଙ୍କ ମା', ବାପାଙ୍କୁ ଆମ ସ୍ଥାନରେ ଜୋର ଜବରଦସ୍ତ ଆମକୁ ନ ପଚାରି ବସାଇ ଦେଇଥିଲେ । ଅନଧିକାର ପ୍ରବେଶ ଯୋଗୁଁ ଆମେ ମଧ୍ୟ ଉତ୍ତମ ମଧ୍ୟମ ଦୁଇପଦ ଶୁଣାଇ ପଛ ସିଟକୁ ଗଲୁ । ତିନି ଜଣିଆ ସିଟ୍‌ରେ ଆମର ଗୋଟିଏ ଜାଗା ଖାଲି ଥିଲା । ମୀରାଜୀଙ୍କ ଭଜନ ମନେପକାଇଲୁ । ''ଘାୟଲ କୀ ପୀଡ଼ା ଘାୟଲ ହୀ ଜାନେ, ଯୋ କୋଇ ଘାୟଲ ହୋଏ'' ଆମେ ଆମ ସ୍ୱସ୍ଥାନରୁ ତଡ଼ା ଖାଇଥିଲୁ । ସେହି ଭଦ୍ର ମହିଳାଙ୍କୁ ଆମ ପାଖକୁ ନିମନ୍ତ୍ରଣ କଲୁ । ସୂଚନା ଯୋଗ୍ୟ ଯେ ଭଦ୍ର ମହିଳା ଜଣକ ପୃଥୁଳକାୟ ପ୍ରୌଢ଼ା ମହିଳା ଥିଲେ । ଆମ ମନରେ ଚିନ୍ତା କେମିତି ବସିବା ? ଆଶ୍ଚର୍ଯ୍ୟର ବିଷୟ ସେହି ଭଦ୍ର ମହିଳା ଏଭଳି ଭାବେ ନିଜକୁ ଅଡ୍‌ଜଷ୍ଟ କରି ବସିଲେ ଯେ ଆମେ ଲଜ୍ଜା ଅନୁଭବ କଲୁ । ପରିଚୟ ମାଗି ଜାଣିଲୁ ସେ ଜୟପୁର ନିକଟସ୍ଥ ଜୟନଗର ଆଶ୍ରମ ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ, ସ୍ୱେଚ୍ଛାକୃତ ଅବସର ନେଇଛନ୍ତି । ଆମ ବନ୍ଧୁ ପ୍ରେମାନନ୍ଦ ଦାଶଙ୍କର ପରିଚିତ । ଟ୍ରେନିଂ ସମୟରେ "Life is adjustment" ପଢ଼ିଥିବା ଜଣେ

ପ୍ରକୃତ ଶିକ୍ଷକ ହିଁ ଏହିଭଳି ବ୍ୟବହାର ଦେଖାଇବା ସମ୍ଭବ, ଅନ୍ୟଠାରୁ ଆଶା କରିବା ବୃଥା । କିଛି ସମୟ ଆମ ପାଖରେ ବସି ଆମକୁ ଏକ ମହାନ୍ ଶିକ୍ଷା ଦେଇଗଲେ ସେ । କନ୍ୟାକୁମାରୀରେ ପ୍ରବେଶ କରିବା ୧୦୦ କି.ମି. ପୂର୍ବରୁ ଗାଡ଼ି ଅଟକାଇ ପ୍ରସାଦ ସେବନର ବ୍ୟବସ୍ଥା କରାଗଲା । ଜାତୀୟ ରାଜପଥ ୭ ନଂ ର ଛୋଟ ଜଳାଶୟ ଓ ପେଟ୍ରୋଲ ପମ୍ପ (ପିଇବା ପାଣିର ସୁବିଧା) ନିକଟରେ ବୃକ୍ଷ ଛାୟାରେ ପ୍ରସାଦ ବିତରଣ କାର୍ଯ୍ୟକ୍ରମ ଆରମ୍ଭ ହେଲା । ପୂର୍ବରୁ ରାସ୍ତାର ଅପର ପାର୍ଶ୍ୱରେ ଅନ୍ୟ ଏକ ଯାତ୍ରୀବାହୀ ଗାଡ଼ି ଅଟକି ଥିଲା । ଆମ ଗାଡ଼ି ସେଠାରେ ଅଟକିବାରୁ ଜାତୀୟ ରାଜପଥ ପେଟ୍ରୋଲିଂ କରୁଥିବା ପୋଲିସ୍ ଦଳ ଆମର ବିଶେଷ ସହାୟତା କରିଥିଲେ । ଆମ ବସ ସେହି ସ୍ଥାନ ଛାଡ଼ିବା ପର୍ଯ୍ୟନ୍ତ ସେମାନେ ଏକ ପ୍ରକାର ଜଗି ରହିଲେ । ନିକଟରେ କିଛି ବସ୍ତି ଦେଖାଯାଉନଥିବାରୁ ସେହି ସ୍ଥାନର ନାମ ପଚାରିବାରୁ ସେ ସ୍ଥାନର ନାମ ''କଙ୍ଗାଗୁଣ୍ଡନ'' ବୋଲି କହିଲେ । ମଧ୍ୟାହ୍ନ ୧୧ ଘ. ୧୦ ମି. ରେ କନ୍ୟାକୁମାରୀରେ ବସ୍ ପହଞ୍ଚିଲା । ବସ୍‌ଷ୍ଟାଣ୍ଡ ନିକଟରେ ଥିବା କାମରାଜ ନାଦେର ମଣ୍ଡପ ଓ ଗାନ୍ଧି-ମଣ୍ଡପ୍‌ର ଭିତର ଓ ବାହାର ବୁଲି ଦେଖିଲୁ । ଏଇଥର ତୀର୍ଥଯାତ୍ରାରେ ବିଚିତ୍ର ସଂଯୋଗ ରହିଥିଲା । ମାଘ ସୋମବାରରେ ରାମେଶ୍ୱର, ମଙ୍ଗଳବାରରେ ମୀନାକ୍ଷି ଦେବୀ, ସାଧାରଣତନ୍ତ୍ର ଦିବସରେ କନ୍ୟାକୁମାରୀସ୍ଥ ଗାନ୍ଧିମଣ୍ଡପ, ଛୁଟିଦିନ ଥିବାରୁ ଗାନ୍ଧି ମଣ୍ଡପରେ ପ୍ରବଳ ଭିଡ଼ ଜମିଥିଲା । ଭିତର ପାର୍ଶ୍ୱରେ ଛବି ଓ ଲେଖା ଦେଖି ଆସିବା ପରେ ମଣ୍ଡପ ବାହାରେ ଠିଆ ହୋଇ ତିନି ସମୁଦ୍ର ମିଳନର ଅପୂର୍ବ ଦୃଶ୍ୟ ଉପଭୋଗ କଲୁ । ମନ୍ଦିର ଯିବା ରାସ୍ତାରେ ଆମର କେତେ ଜଣ ଯାତ୍ରୀଙ୍କଠାରୁ ମନ୍ଦିର ବନ୍ଦ ହେବା ଖବର ପାଇ ସମୁଦ୍ରକୂଳ ବୁଲି ଆସିବା ଠିକ୍ କଲୁ । ମାତ୍ର ଟ. ୨୦.୦୦ ଟିକଟରେ ସ୍ୱାମୀ ବିବେକାନନ୍ଦ ଶିଳା ସ୍ମାରକୀ ନିକଟରେ ପହଞ୍ଚିଲୁ । ବିରାଟ ଆୟତନ ବିଶିଷ୍ଟ ସ୍ଥାନ ବିବେକାନନ୍ଦ ଶିଳା ସ୍ମାରକୀ, ଯୁଗପୁରୁଷ ଯୁବ ସନ୍ନ୍ୟାସୀ ସ୍ୱାମୀଜୀଙ୍କର ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି, ଧ୍ୟାନ ମଣ୍ଡପ, କନ୍ୟାକୁମାରୀ ପଦ ଦର୍ଶନ କରି ନୀଳ ସାଗରର ବୀଚିମାଳାର ସୌନ୍ଦର୍ଯ୍ୟରେ ଅବଗାହନ କଲୁ । ଅଶାନ୍ତ ସମୁଦ୍ର ସ୍ୱାମୀଜୀଙ୍କର ପଦସ୍ପର୍ଶରେ ଆମକୁ ପ୍ରଶାନ୍ତ ଜଣାପଡୁଥିଲେ । ମନ୍ଦିର ଖୋଲା ହେଲେ ଦର୍ଶନ ସାରି ମଦୁରାଇ ଫେରିବାକୁ ହେବ । ତେଣୁ ମନ କହୁଛି ଫେରିବା ପାଇଁ, ଆଖି କହୁଛି ଦେଖା ସରିନାହିଁ । ଆଖି ଓ ମନର ଦ୍ୱନ୍ଦ୍ୱ ଭିତରେ ମନକୁ ଦୃଢ଼ କରି ଆଖିକୁ ଦୃଶ୍ୟପଟରୁ ଫେରାଇ ଆଣି କିଛି ସ୍ୱାମୀଜୀଙ୍କ ଜୀବନୀ ସମ୍ବଳିତ ପୁସ୍ତକ କିଣି ନୌକାରେ ବସିଲୁ । ଦିନ ୩ଘ. ୧୦ ମି. ରେ କନ୍ୟାକୁମାରୀ ମନ୍ଦିର ସମ୍ମୁଖରେ ଧାଡ଼ିରେ ଠିଆ ହେଲୁ । ମନ୍ଦିର ଖୋଲା ହେଲା ୪ଟା ସମୟରେ । ଏଠାରେ ସର୍ବ ଦର୍ଶନ ବ୍ୟବସ୍ଥା

ଥିଲା । ଥରକୁ ଥର ମୋର ପ୍ରଧାନ ଶିକ୍ଷକ ଶ୍ରୀ ସୂର୍ଯ୍ୟକାନ୍ତ ଷଡ଼ଙ୍ଗୀ ମହୋଦୟ ଦେବୀ କନ୍ୟାକୁମାରୀଙ୍କ ନାକଦଣ୍ଡୀର ହୀରାକୁ ଲକ୍ଷ୍ୟ କରିବା ପାଇଁ ସ୍ମରଣ କରାଉ ଥିଲେ । ତେଣୁ ଆମର ଲକ୍ଷ୍ୟ ମା'ଙ୍କ ମୁଖମଣ୍ଡଳର ଅପୂର୍ବ ହୀରା ଉପରେ ଉଦ୍ଦିଷ୍ଟ ଥିଲା । ପ୍ରବଳ ଜନ ସମାଗମର ଠେଲାପେଲା ଭିତରେ କମ୍ ସମୟ ଦର୍ଶନ ସମୟରେ ଏହା କିପରି ସମ୍ଭବ ବୋଲି ମନରେ ସନ୍ଦେହ ଥିଲା । ଉଲ୍ଲେଖଯୋଗ୍ୟ ଯେ ଦକ୍ଷିଣ ଭାରତର ଅଧିକାଂଶ ମନ୍ଦିରର ବିଜେ ବଖରାରେ ଠାକୁରଙ୍କ ସମ୍ମୁଖରେ ବୈଦ୍ୟୁତିକ ଆଲୋକ ସଜ୍ଜାର ବ୍ୟବସ୍ଥା ନାହିଁ । ପ୍ରଦୀପର ସ୍ଥିର ଆଲୋକରେ ଅନିନ୍ଦ୍ୟ ସୁନ୍ଦରୀ ଦେବୀ କନ୍ୟାକୁମାରୀଙ୍କ ଲଳିତ ଠାଣି ଓ ଅଳଙ୍କାର ହୀରାର ଜ୍ୟୋତି ଆମ ଆଖିକୁ ଚମତ୍କୃତ କରି ଦେଲା । ଆମେ ଆଗ୍ରହରେ ହୀରା ଅବଲୋକନ କରିବା ଲକ୍ଷ୍ୟ କରି ସହୃଦୟ ପୂଜ୍ୟ ମହୋଦୟ କିଛିକ୍ଷଣ ଠିଆହୋଇ ଦେଖିବା ପାଇଁ ଅନୁମତି ଦେଲେ । ଭାବିଲୁ ମା'ଙ୍କର ଅପାର କରୁଣା, ଧାଡ଼ିରେ ଠେଲି ନ ଦେଇ ଦେଖିବାକୁ ଅନୁମତି ଦେଉଥିବା ପୂଜକଙ୍କ ହୃଦୟରେ ସେହି ମା' ହିଁ ବିରାଜମାନ କରିଛନ୍ତି । ମା' ତୁମେ ଜଗତର ସାହା ଭରସା ପରା । ମନ୍ଦିର ବେଢ଼ା ପରିକ୍ରମା କରି ବାହାରକୁ ବାହାରିଲା ବେଳକୁ ସଂଧ୍ୟା ୫ଟା । ସାଙ୍ଗସାଥୀ ଏବଂ ପରିବାର ଲୋକେ ଲାଲ, ନୀଳ ରଙ୍ଗର ବାଲି ଆଣିବା ପାଇଁ ପ୍ରତ୍ୟେକ ତୀର୍ଥଯାତ୍ରୀଙ୍କୁ ଅନୁରୋଧ କରିଥିଲେ । ଅଳ୍ପ ସମୟ ପାଇଁ ତ୍ରିବେଣୀ ସଂଗମର (ଭାରତ ମହାସାଗର, ବଙ୍ଗୋପସାଗରର ଓ ଆରବସାଗର) ସୌନ୍ଦର୍ଯ୍ୟ ଦର୍ଶନ ଓ ମଥାରେ ପାଣି ସିଞ୍ଚନର ଅପୂର୍ବ ସୁଯୋଗ ପାଇଥିଲେ ମଧ ବାଲି ସଂଗ୍ରହ କରିପାରି ନଥିଲୁ । ଅଳ୍ପ ସମୟରେ ମନ୍ଦିରର ଦ୍ରାବିଡ଼ କଳାଶୈଳୀର ଶୋଭା ସନ୍ଦର୍ଶନ କଲିଲୁ । ଭାରତବର୍ଷର ସମୁଦ୍ର ବେଳାଭୂମିମାନଙ୍କ ମଧ୍ୟରେ କନ୍ୟାକୁମାରୀ ଏକମାତ୍ର ସ୍ଥାନ ଯେଉଁଠାରେ ଉଭୟ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଦର୍ଶନ ହୋଇଥାଏ । ପ୍ରଭାତରେ ବଙ୍ଗୋପସାଗରରେ ସୂର୍ଯ୍ୟୋଦୟ ଓ ସଂଧ୍ୟାରେ ଆରବସାଗରରେ ସୂର୍ଯ୍ୟାସ୍ତର ମନଲୋଭା ଦୃଶ୍ୟ ଏଠାରେ ଉପଭୋଗ କରିହୁଏ, କିନ୍ତୁ ଆମେ ପ୍ରଭାତ ଓ ସଂଧ୍ୟା ଉଭୟ ଦର୍ଶନରୁ ବଞ୍ଚିତ ହୋଇଥିଲୁ । ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଅପେକ୍ଷା ନ କରି ବସ୍ ଚଢ଼ିବାକୁ ଆମ ପାଇଁ ନିର୍ଦ୍ଦେଶ ମିଳିଲା । ରାସ୍ତାରେ ବିରାଟ ଆୟତନ ବିଶିଷ୍ଟ ସାମୁଦ୍ରିକ ସେବା ସ୍ଥାନ INS, Kottabaman ବାହାରୁ ଦେଖିଲୁ । ପାହାଡ଼ ଉହାଡ଼ରେ ଅସ୍ତଗାମୀ ସୂର୍ଯ୍ୟଙ୍କ ଦର୍ଶନ ବସ୍ ଭିତରେ କଲୁ । ବିବେକାନନ୍ଦ ସ୍ମାରକୀ- କନ୍ୟାକୁମାରୀ ଓ ଧାଡ଼ିରେ ଠିଆ ହୋଇଥିବା ସମୟରେ ଜଣେ ଧାଡ଼ିରେ ଥାଇ ଜଣେ ଯାଇ ବଜାର କରିଥିବା ଦୁର୍ଲ୍ଲଭ ଶଙ୍ଖ ଓ କଉଡ଼ି ବିଷୟରେ ଚର୍ଚ୍ଚା କରୁ କରୁ ରାତି ୧୦ଘ. ୩୦ ମି. ରେ ବସ୍ ପହଞ୍ଚିଲା ମଦୁରାଇ ଲଜ୍ ନିକଟରେ । ରାସ୍ତା

ସାରା ତାମିଲନାଡୁ ସରକାରୀ ଓ ବେସରକାରୀ ସଂସ୍ଥା ଦ୍ୱାରା ସ୍ଥାପିତ ୪/୫ କୋଟି ଟଙ୍କା ବ୍ୟୟରେ ନିର୍ମିତ ହୋଇଥିବା କେତୋଟି ପବନ ଚକି ଦେଖିଥିଲୁ, ଏପରିକି କନ୍ୟାକୁମାରୀରେ ସମୁଦ୍ର ଭିତରେ ମଧ୍ୟ ସ୍ଥାନେ ସ୍ଥାନେ ପବନ ଚକି ପ୍ରତିଷ୍ଠିତ ହୋଇଥିବା ଦୃଶ୍ୟ ଦେଖିଲୁ ଓ କ୍ୟାମେରାରେ ଉତ୍ତୋଳନ କରି ଆଣିଲୁ । ନିତ୍ୟକର୍ମ ଶେଷପରେ ରାତ୍ରି ପ୍ରସାଦ ସେବନ କଲୁ । ସାରା ଦିନର କ୍ଲାନ୍ତି ଯୋଗୁଁ ଆରାମରେ ନିଦ୍ରା ଗଲୁ ।

***ତା. ୨୭.୦୧.୨୦୧୧, ଗୁରୁବାର***

ସକାଳ ନଅଟାରେ ପ୍ରସାଦ ସେବନ କରି ମଦୁରାଇ ଷ୍ଟେସନ ଅଭିମୁଖେ ଯାତ୍ରା କଲୁ । ଗୁରୁଭାୟୁର-ଚେନ୍ନାଇ ଏକ୍ସପ୍ରେସ୍‌ରେ ଦିନ ୧୧ ଘ. ୧୦ ମି. ରେ ବସିଲୁ । ଦିନବେଳା ରେଳଯାତ୍ରା ଥିଲା । ତେଣୁ ଚିତ୍ରକରର ତୂଳିକା ସ୍ପର୍ଶରେ ଚିତ୍ର ଆଙ୍କିଲା ପରି ଦୁଇପାର୍ଶ୍ୱରେ ଶ୍ରୀଫଳ ଉଦ୍ୟାନର କମନୀୟ ଶୋଭା ମନକୁ ଆକୃଷ୍ଟ କରୁଥିଲା । ପଣ୍ଡିତ ଗୋପବନ୍ଧୁ ଦାଶଙ୍କ 'ରେଳ ଉପରେ ଚିଲିକା ଦର୍ଶନ' ଭଳି ରେଳ ଉପରୁ ସୁନୀଳ ସାଗରର ଓ ବେଳାଭୂମି ସ୍ଥାନେ ସ୍ଥାନେ ଲଣ୍ଡା ପାହାଡ଼ ପ୍ରତୀୟମାନ ହେଉଥିଲା । ଦୂର ଦିଗ୍‌ବଳୟର ଅପରୂପ ସୌନ୍ଦର୍ଯ୍ୟରେ ବିମୁଗ୍ଧ ଥିବା ଅବସ୍ଥାରେ ଲକ୍ଷ୍ୟସ୍ଥଳ ତିରୁଚିରାପଲ୍ଲୀ ଷ୍ଟେସନ ଆସିଯାଇଥିଲା । ତିରୁଚିରାପଲ୍ଲୀ ଷ୍ଟେସନ୍‌ରେ ଦିନ ୨ଘ. ୪୦ ମି. ରେ ଓହ୍ଲାଇ ଲଗେଜ୍ ରଖି ନିର୍ଦ୍ଧାରିତ ବସ୍‌ଯୋଗେ ପ୍ରସିଦ୍ଧ ଶ୍ରୀ ରଙ୍ଗନାଥ ସ୍ୱାମୀଙ୍କ ଦର୍ଶନ ପାଇଁ ବାହାରିଲୁ । ଦ୍ରାବିଡ଼ କଳାଶୈଳୀରେ ନିର୍ମିତ ସୁଉଚ୍ଚ ଦ୍ୱାର ଅତିକ୍ରମ କରି ଭୋଗ ପ୍ୟାକେଟ୍ କିଣି ସର୍ବଦର୍ଶନ ଧାଡ଼ିରେ ଠିଆ ହେଲୁ । ଲମ୍ୱା ଧାଡ଼ିରେ ଅପେକ୍ଷା କରିଥିବା ସମୟରେ ମନ୍ଦିରର ବେଢ଼ାରେ ଥିବା କାରୁକାର୍ଯ୍ୟ ନିରୀକ୍ଷଣ କରୁଥିଲୁ । ଶ୍ରୀରଙ୍ଗନାଥ ସ୍ୱାମୀଙ୍କ ବେଢ଼ା ସୁବିସ୍ତୃତ । ମଝିରେ, ମଝିରେ ଧର୍ମଶାଳା ଭଳି ଯାତ୍ରୀ ରହିବା ଘର, ବିରାଟ ବିରାଟ ଗୋ-ଶାଳା ରହିଛି । ଶ୍ରୀରଙ୍ଗନାଥ, ମନ୍ଦିର ଧାଡିରେ ଅପେକ୍ଷା କରିବା ସମୟରେ ଏକ ବିରାଟ ଅପୂର୍ବ କାରୁକାର୍ଯ୍ୟ ସଂପନ୍ନ ରଙ୍ଗମଣ୍ଡପ ଆଖିରେ ପଡ଼ିଲା । ଧାଡ଼ିର ଭିଡ଼ ଭିତରେ ମାର୍ବଲ ଫଳକ ଲେଖାଗୁଡ଼ିକ ସ୍ପଷ୍ଟ ଭାବରେ ପଢ଼ିହେଉ ନଥିଲା । ତଥାପି ଜାଣିବାକୁ ପାଇଲୁ ବିଶାଳ ଧନସଂପତ୍ତି ରହିଥିବା ଏହି ମନ୍ଦିର ମାଲିକ୍ କାଫୁର ଓ ଅନ୍ୟକେତେ ଜଣ ମୁସଲମାନଙ୍କ ଦ୍ୱାରା ଲୁଣ୍ଠନ କରାଯାଇଛି । ଗୋଟିଏ ସ୍ଥାନରେ ଲେଖାଥିଲା - "Sri Ranganath was worshipped here" - "Ranga Mandapm" [Ranganath Yadav Raya, 1310-1320 AD) ଶ୍ରୀରଙ୍ଗନାଥ ସ୍ୱାମୀଙ୍କ ସମ୍ମୁଖରେ ପହଞ୍ଚିଲୁ । ଭକ୍ତ ସାଲବେଗଙ୍କ ଭଜନ ପରି- "ଆଜ ତୋ ବେଶ ବଡ଼ ତୋରା ରେ- ଶ୍ୟାମ ଗୋରା", ଶ୍ୟାମସୁନ୍ଦର

ଶ୍ରୀରଙ୍ଗନାଥଙ୍କ ଅନିନ୍ଦ୍ୟ ରୂପ ଲାବଣ୍ୟକୁ ଆକଣ୍ଠ ପାନ କରିବାରେ ଲାଗିଲୁ । ଶ୍ରୀରଙ୍ଗନାଥଙ୍କର ଶ୍ରୀରଙ୍ଗ ଅଧରର ଅଧା ଅଧା ହସ-ଅପୂର୍ବ ଠାଣି ଭକ୍ତ ମନକୁ ବିମୋହିତ କରୁଥିଲା । ଶୁଦ୍ଧ ସୁବର୍ଣ୍ଣର ପ୍ରତିମୂର୍ତ୍ତି ଶ୍ରୀରଙ୍ଗନାଥ, ଦୁଇ ପାର୍ଶ୍ୱରେ ଶ୍ରୀଦେବୀ ଓ ଭୂଦେବୀ ସିଂହାସନରେ ବିରାଜମାନ । ଶ୍ରୀରଙ୍ଗନାଥଙ୍କର ପଶ୍ଚାତ ଭାଗରେ ''ଶାନ୍ତାକାରଂ ଭୁଜଗ ଶୟନଂ ପଦ୍ମନାଭଂ ସୁରେଶଂ''ଙ୍କର ବିଶାଳ କଳା ମୁଗୁନି ପଥରର ପ୍ରତିମୂର୍ତ୍ତି । ପାର୍ଶ୍ୱରେ ଭକ୍ତ ଶିରୋମଣି ବିଭୀଷଣ ବିଦ୍ୟମାନ । ଚିତ୍ତଚୋରଙ୍କ ମୋହନ ରୂପ ଲାବଣ୍ୟର ଉପମା ଦେବାକୁ ଯାଇ କବି ଗୋପାଳକୃଷ୍ଣଙ୍କ ''ନବାନୁରାଗ'' କବିତାର ପଦଟିଏ ସ୍ମରଣ ଆସୁଛି ।

''ରାଧା : କେଣେ ବୋଲନ୍ତି ମୋହନ ?
ଲଳିତା : ସଂସାର ବାହାର ସରସ ସୁନ୍ଦର
ସ୍ୱରୂପ ନିତ୍ୟ ନୂତନରେ, ପ୍ରାଣମିତ''

ନବୀନ ନୀରଦ ଶ୍ୟାମଳ କାନ୍ତି ତନୁଧାରୀ ଶ୍ରୀରଙ୍ଗନାଥଙ୍କ ଠାରୁ ବିଦାୟ ନେଇ ମୁଖ୍ୟଦ୍ୱାର ନିକଟରେ ପହଞ୍ଚିଲୁ । ମନ୍ଦିର ସମ୍ମୁଖରେ ଠିଆ ହୋଇ ସୁଉଚ୍ଚ ତୋରଣର କଳା କୌଶଳ ଲକ୍ଷ୍ୟ କଲୁ । ପରେ ବହି ପଢ଼ି ଜାଣିଲୁ ଦକ୍ଷିଣ ଏସିଆର ସବୁଠାରୁ ଉଚ୍ଚ ଗୋପୁରମ୍ ଯାହାର ଉଚ୍ଚତା ୨୩୬ ଫୁଟ ଏହି ମନ୍ଦିରରେ ଅବସ୍ଥିତ । ସମୟାନୁବର୍ତ୍ତୀ ନିୟମ ଅନୁସାରେ ଆମେ ସିନା ଅଣଦେଖା, ଅଧାଦେଖା କରି ବାହାରକୁ ବାହାରି ଆସିଲୁ ଆମର ତୀର୍ଥଯାତ୍ରୀମାନଙ୍କର ବେଢ଼ା ପରିକ୍ରମା ଓ ଜିନିଷ କିଣା ଶେଷ ହୋଇ ନଥିଲା । ତେଣୁ ଆମେ ବାହାର ବୁଲିବାକୁ ଯାଇ ଯାହା ଦେଖିଲୁ ଆଖି ଖୋସି ହୋଇଗଲା । ଏକାଭଳି ସୁନ୍ଦର ସୁଉଚ୍ଚ ତୋରଣ ଯୁକ୍ତ ଛଅଟି ଦ୍ୱାର, ସବୁ ଦ୍ୱାର ଦେଖିବାକୁ ଏକାଭଳି । ସେହି ଦ୍ୱାର ମଧ୍ୟ ଦେଇ ସାଧାରଣ ଲୋକଙ୍କ ଯାନବାହନ ମଧ୍ୟ ଚଳାଚଳ କରୁଛି । ଦୁଇ ପାର୍ଶ୍ୱରେ ଧାଡ଼ି ଧାଡ଼ି ବିରାଟ ବିରାଟ ଦୋକାନ । ନବମ ଶ୍ରେଣୀର ଇତିହାସ ପାଠ୍ୟକ୍ରମରେ ପଢ଼ାଇଥିବା ବିଷ୍ଣୁ ମନ୍ଦିର ଦର୍ଶନରେ ମନ ତୃପ୍ତ ହୋଇ ପାରିଲା ନାହିଁ । ସଂଧ୍ୟା ୭ଟାରେ ଷ୍ଟେସନ୍‌ରେ ପହଞ୍ଚିଲୁ ଓ ୭ ଘ. ୫୫ ମି.ରେ ଏର୍ଣ୍ଣାକୁଲମ୍ ଏକ୍ସପ୍ରେସରେ ତ୍ରିଶୁର ଅଭିମୁଖେ ଯାତ୍ରା କଲୁ । ତ୍ରିଶୁର ଷ୍ଟେସନ୍‌ରେ ଭୋର ୪ଟା ୩୦ ମି. ରେ ପହଞ୍ଚି ଷ୍ଟେସନ୍‌ରେ Hotel Nandan ର ସ୍ୱାଦିଷ୍ଟ ଚା'ପାନ ପରେ ଗୁରୁବାୟୁର ଗେଷ୍ଟ ହାଉସକୁ ଯିବାପାଇଁ ନିର୍ଦ୍ଧାରିତ ଯାନର ଅପେକ୍ଷା କଲୁ ।

## ତା. ୨୮.୦୧.୨୦୧୧, ଶୁକ୍ରବାର

ତ୍ରିଶୁରଠାରୁ ଗୁରୁବାୟୁରର ଦୂରତା ୩୦ କି.ମି. । ଏଥର ଜଗନ୍ନାଥ, ବଳଭଦ୍ର ବସ୍ର ଯାତ୍ରୀମାନଙ୍କୁ ବାବାମାନଙ୍କ ତରଫରୁ କିଛି ନିର୍ଦ୍ଦିଷ୍ଟ ସୂଚନା ଦିଆଯାଇନଥିବାରୁ ସମୟେ ସମୟେ ପାଟିତୁଣ୍ଡ ସୃଷ୍ଟି ହେଉଥିଲା । ଏହିଭଳି ଗଣ୍ଡଗୋଳ ଭୋର ୫ଟାରେ ଉଗ୍ରରୂପ ଧାରଣ କଲା । କାରଣ ଗୁରୁବାୟୁରରେ ରହିବା ପାଇଁ ଦୁଇଟି ଲଜ୍‌ର ବ୍ୟବସ୍ଥା ହୋଇଥିଲା । ଗୋଟିଏ ଇଣ୍ଡିଆନ୍ ଟୁରିଷ୍ଟ ହୋମ୍ ଓ ଅନ୍ୟଟି ଶ୍ରୀକୃଷ୍ଣ ରେସିଡେନ୍‌ସି । ଗୋଟିଏ ବସ୍‌ରେ ଗୋଟିଏ ଲଜ୍‌ର ଲୋକ ବସିବା କଥା କିନ୍ତୁ ଯାତ୍ରୀମାନେ ଅଲଗା ଅଲଗା ହୋଇ ବସିଥିଲେ । ନିର୍ଦ୍ଦିଷ୍ଟ ଲଜ୍ ପାଇଁ ନିର୍ଦ୍ଦିଷ୍ଟ ବସ୍ ଜଣାଗଲା ପରେ ଗୋଟିଏ ବସ୍‌ରୁ ଅନ୍ୟ ଏକ ବସ୍‌କୁ ଲଗେଜ୍ ଓହ୍ଲାଇ ନେବା ସମୟରେ ପାଟିତୁଣ୍ଡ ଶୁଭୁଥିଲା । ଓଭରବ୍ରିଜ୍ ଚଢ଼ିବା ଓ ଓହ୍ଲାଇବା ଭୟରେ ଆମ ଭଳି କେତେ ଜଣ ରେଳ ଲାଇନ୍ ଅତିକ୍ରମ କରିଆସିଲୁ । ଆମେ ପହଞ୍ଚିଲା ବେଳକୁ ଦୁଇଟି ଯାକ ବସ୍ ଭର୍ତ୍ତି ହୋଇଯାଇଛି । ବାବା କ୍ୟାଣ୍ଟରଟି ଉଭୟ ଲଜ୍‌ରେ ପହଞ୍ଚାଇବ ବୋଲି ସୂଚନା ଦେଲେ ଓ ଆମେ ଆରାମ୍‌ରେ ବସି ଲଜ୍‌ରେ ପହଞ୍ଚିଲୁ । ଲଜ୍‌ରେ ପହଞ୍ଚିବା ପରେ ଦେଖିଲୁ ଉଭୟ ଲଜ୍ ସାମ୍‌ନା ସାମ୍‌ନି ଖାଲି ପାଟିତୁଣ୍ଡ ସାର ହେଲା । ସକାଳ ୬ଟାରେ ରୁମ୍ ଚାବି ଦେବା ବ୍ୟବସ୍ଥା ଥିଲା । ରୁମ୍ ଗୁଡ଼ିକ ବି ସଫା ହୋଇ ନ ଥିଲା । ଅଧଘଣ୍ଟାଏ ଅପେକ୍ଷା କରିବା ପରେ ରୁମ୍ ଚାବି ହସ୍ତଗତ ହେଲା । ସେଦିନ ଆମକୁ ତଳ ମହଲାର ୧ ନଂ ରୁମ୍ ମିଳିଥିଲା । ନିତ୍ୟକର୍ମ ସାରି ପାଖ ହୋଟେଲରୁ ଚା'ପାନ କରି ସାଙ୍ଗସାଥୀଙ୍କ ମେଳରେ ମନ୍ଦିର ଅଭିମୁଖେ ବାହାରି ପଡିଲୁ । ଏଠାରେ ମଧ୍ୟ ମନ୍ଦିର ଅତି ନିକଟତର ଗୁରୁବାୟୁର ''ଭୂ-ଲୋକ ବୈକୁଣ୍ଠ'' ନାମରେ ବିଖ୍ୟାତ । ଦକ୍ଷିଣ ଭାରତୀୟ ମନ୍ଦିର ମାନଙ୍କରେ ଧୋତି ପିନ୍ଧି ମନ୍ଦିର ପ୍ରବେଶ ବାଧ୍ୟତାମୂଳକ ତେଣୁ ଆମେ ଘରୁ ଧୋତି ନେଇ ଯାଇଥିଲୁ । ଆମ ସହଯାତ୍ରୀମାନେ କିଏ ଧୋତି କିଏ ଧଳା ଲୁଙ୍ଗି କିଣିବା ପାଇଁ ଦୋକାନରେ ପ୍ରବେଶ କଲେ । କିଣାକିଣି ଓ ପୋଷାକ ବଦଳାଇବା ସରିବା ପରେ ମନ୍ଦିର ଦ୍ୱାର ସମ୍ମୁଖରେ ପହଞ୍ଚିଲୁ । ମହିଳାମାନଙ୍କର ପୋଷାକ ପାଇଁ କିଛି କଟକଣା ନାହିଁ । ମାଗଣା ଦର୍ଶନ ବ୍ୟବସ୍ଥା ସେଠାରେ ଥିଲା । ଏଠାରେ ପ୍ରବେଶ ଦ୍ୱାର ନିକଟରେ ପୋଲିସ୍ ଚନଖି ବ୍ୟବସ୍ଥା ରହିଛି । ପୁରୁଷମାନେ ସାର୍ଟ ନ ପିନ୍ଧି ଖୋଲା ଦେହରେ ମନ୍ଦିର ପ୍ରବେଶ କରିବା ନିୟମ ପୋଲିସ୍ ବାବୁମାନଙ୍କ ଦ୍ୱାରା କଡ଼ାକଡ଼ି ଭାବେ ପାଳିତ ହେଉଥିଲା । ଚାରି ଦିଗରେ ୪ଟି ସୁଉଚ୍ଚ ତୋରଣଯୁକ୍ତ ଦ୍ୱାର । ଆମେ ପଶ୍ଚିମ ଦ୍ୱାର ଦେଇ ମନ୍ଦିରରେ ପ୍ରବେଶ କଲୁ । ଏହି ମନ୍ଦିର ଗଠନର ସ୍ୱତନ୍ତ୍ର ଶୈଳୀ ଲକ୍ଷ୍ୟ କଲୁ । ଠାକୁରଙ୍କ ବିଜେ ପ୍ରକୋଷ୍ଠ ଓ ସମ୍ମୁଖ ପ୍ରକୋଷ୍ଠ ଯଜ୍ଞଶାଳା

ଗୁଡ଼ିକ ତିଆରି ହୋଇଥିବା ଭଳି ଟିଣ ଛପର ଛାତ ଏବଂ ଅନ୍ୟାନ୍ୟ ପ୍ରକୋଷ୍ଠ ଗୁଡ଼ିକ ଟାଇଲ୍ ଛପର ହୋଇଥିବା ପରିଲକ୍ଷିତ ହେଲା । ମନ୍ଦିରର ଭିତର ଓ ବାହାର ପ୍ରାଚୀର ଗୁଡ଼ିକରେ କଳା ମୁଗୁନି ପଥରର ଅପୂର୍ବ କଳା କୌଶଳ ପରିଦୃଷ୍ଟ । ଗୋଲାକାରର ଧାଡ଼ିରେ ବୁଲି ବୁଲି ମନ୍ଦିରର ଅପେକ୍ଷାକୃତ ସଂକୀର୍ଣ୍ଣ ଦ୍ୱାର ଦେଇ ପ୍ରବେଶ କଲେ ରସରାଜ ଶ୍ରୀକୃଷ୍ଣ କମନୀୟ ରୂପ ଲାବଣ୍ୟ ମୂର୍ତ୍ତି ସଂଦର୍ଶନ କରିହୁଏ । ପୁରାଣରେ ଶୁଣିଛି ମୀରା ଭାବ, ଗୋପୀ ଭାବ ମନରେ ଆସିଲେ ଭାବ ବିନୋଦିଆ ଭାବ ଗ୍ରହଣ କରିବେ । ସେ ତ "ଭାବକୁ ନିକଟ ଅଭାବକୁ ଦୂର ।" ପ୍ରେମ ଚିନ୍ତାମଣିଙ୍କର ମୁଖ କମଳ ଦର୍ଶନ କରିବା ଅବସରରେ ଭକ୍ତ ଚରଣ ଦାସଙ୍କର କବିତାରେ ପଂକ୍ତିଟିଏ ମନେ ପଡ଼ିଲା -

"ଫୁଲରେ ଏହାଙ୍କ ଶରଧା
ଫୁଲେ ଦିଶନ୍ତି ତୋରା
ସ୍ଫୁରୁଛି କି ବାମ ନୟନ
ମୋତେ ଚାହିଁବେ ପରା ।"

ମୋତେ ଚାହାଁନ୍ତୁ କି ନ ଚାହାଁନ୍ତୁ ସେତେ ସମୟ ଅପେକ୍ଷା କରିବା ପାଇଁ ମହିଳା ପୋଲିସ୍ ମହାଶୟା ଅନୁମତି ଦେଇ ନ ଥିଲେ ତେଣୁ ବାଧ ହୋଇ ମୀରାବାଈଙ୍କର ଭଜନର ପଦଟିଏ ସ୍ମରଣ କରି ବିଦାୟ ମାଗିଲୁ ।

"ବସୋ ମେରେ ନୈନ ମେଁ ନନ୍ଦଲାଲ
ସାଂବରି ସୁରତି ମୋହନ ମୂରତି
ନୈନା ଉର ବିଶାଲ୍"

ମହିଳା ଧାଡ଼ିରେ ଆମେ ମାତ୍ର ଅଧଘଣ୍ଟାଏ ପରେ ଦର୍ଶନରୁ ଫେରିବା ପରେ ଠାକୁରଙ୍କ ବେଶ ବିନ୍ୟାସ ପାଇଁ ଦର୍ଶନ ବନ୍ଦ ହୋଇଗଲା । ପୁରୁଷମାନଙ୍କର ଧାଡ଼ିର ଆକାର ବେଳକୁ ବେଳ ବଢୁଥାଏ । ମନ୍ଦିର ଖୋଲା ହେବା ପରେ ସାଢ଼େ ତିନିଘଣ୍ଟା ସମୟ ଅପେକ୍ଷାର ଶେଷରେ ପୁରୁଷ ମାନଙ୍କର ଦର୍ଶନ ସମ୍ଭବ ହେଲା । ସେହି ସମୟରେ ମହିଳା ଯାତ୍ରୀମାନେ ଭିତର ବେଢ଼ାର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଅପେକ୍ଷା କରିଥିବା ସମୟରେ ପାଟଣାରୁ ଆସି ସେଠାରେ ୩ ମାସ ପାଇଁ ଅବସ୍ଥାନ କରିଥିବା ଜଣେ ବୃଦ୍ଧା ମହିଳା ଆମ ହାତରେ ଗରମ ଗରମ ଦହି ଅନ୍ନ ଭୋଗ ଦେଲେ ଏବଂ ଠାକୁରଙ୍କ ବେଶ ଭୂଷା, ରୀତିନୀତି ଓ ସଂଧ୍ୟା ୬ଟାରେ ମନ୍ଦିର କାନ୍ଥରେ ଅସଂଖ୍ୟ ପ୍ରଦୀପ ପ୍ରଜ୍ୱଳନ ବିଷୟରେ ସୂଚନା ଦେଲେ । ମନ୍ଦିର ବେଢ଼ାରେ ଅପେକ୍ଷା କରିଥିବା ସମୟରେ

ଏକ ବିଚିତ୍ର ଦୃଶ୍ୟ ଦୃଷ୍ଟିଗୋଚର ହେଲା । ବାଳକ ଓ ପୁରୁଷମାନେ ମନ୍ଦିର (ମୁଖ୍ୟ ମନ୍ଦିର) ଚତୁଃପାର୍ଶ୍ୱରେ "ଶୟନ ପ୍ରଦକ୍ଷିଣମ୍" କରୁଥିଲେ । ସେମାନଙ୍କର ଏହି ପୀଡ଼ାଦାୟକ ଅନନ୍ୟ ଭକ୍ତିଭାବ ନିକଟରେ ମଥା ନତ କଲୁ । ଦୀର୍ଘ ସମୟର ଅପେକ୍ଷା ପରେ ପୁରୁଷମାନଙ୍କ ଆଗମନ ହେଲା । ଠିଆ ହୋଇ ସେମାନଙ୍କର ହୋସ୍ ନ ଥାଏ, ତଥାପି ପ୍ରସାଦ କିଣିବା ଆଶାରେ ଧାଡ଼ିରେ ପଶିଲୁ ଟିକଟ ପାଇଁ ଧାଡ଼ି, କ୍ଷୀରି ପ୍ରସାଦ ପାଇଁ ଡବା ଆଣିବାକୁ ଧାଡ଼ି, ବାଳ ଭୋଗ ଧାଡ଼ି, ସବୁ ଅଲଗା ଅଲଗା ଲମ୍ବା ଧାଡ଼ି ପୁରୁଷଙ୍କ ଧାଡ଼ି ଅପେକ୍ଷା ମହିଳାଙ୍କ ଧାଡ଼ି ଛୋଟ ଦେଖାଯାଉଥିବାରୁ ମହିଳାମାନେ ପ୍ରସାଦ କିଣି ଆଣିଲୁ । ରୋଷେଇଶାଳରେ କାଠ ଚୁଲିରେ ବିରାଟ ବିରାଟ ହଣ୍ଡାରେ କ୍ଷୀରି ରନ୍ଧା ହେଉଥିବା ଦୃଶ୍ୟ ଦେଖିଲୁ । ମନ୍ଦିର ବେଢ଼ାରେ ସ୍ୱାଦିଷ୍ଟ କେରଳ କଫିର ସ୍ୱାଦ ଗ୍ରହଣ କଲୁ । ବେଢ଼ା ପରିକ୍ରମା କରିବା ପରେ ମାଗଣା ଅନ୍ନ ପ୍ରସାଦ ବିତରଣ ସ୍ଥାନକୁ ଲକ୍ଷ୍ୟ କଲୁ । ସେଠାରେ ପ୍ରାୟ ୬୦୦/୭୦୦ ଯାତ୍ରୀ ଧାଡ଼ି ବାନ୍ଧି ଠିଆ ହୋଇଥିଲେ । ସମସ୍ତ ଦୃଶ୍ୟ ଓ ଦର୍ଶନ ଶେଷ ହେଲା ପରେ ଲଜ୍‌ରେ ପହଞ୍ଚି ପ୍ରସାଦ ସେବନ କଲୁ । ପ୍ରସାଦ ସେବନ ସମୟରେ ଗୁରୁବାୟୁର ସାଇଟ୍ ସିନ୍ ବୁଲିଯିବା ପାଇଁ ସାଥୀ ଓ ସମୟ ଠିକ୍ କଲୁ । ପଟ୍ଟନାୟକ ବାବୁ, ସ୍ୱାଇଁ ବାବୁ, ବିଷୋୟୀ ବାବୁ, ତ୍ରିପାଠୀ ବାବୁ ଓ ଆମେ ଅଟୋ ଯୋଗେ ଠିକ୍ ୩ଟା ୩୦ ମି. ରେ ଲଜ୍‌ରୁ ବାହାରିଲୁ । ଗୁରୁବାୟୁର ମୁଖ୍ୟ ଆକର୍ଷଣର କେନ୍ଦ୍ରବିନ୍ଦୁ ହାତୀଶାଳାରେ ପ୍ରଥମେ ପହଞ୍ଚିଲୁ । ହାତୀଶାଳରେ ସମ୍ମୁଖ ଫାଟକ ଅତିକ୍ରମ କଲାପରେ ସୋ-କେସ୍‌ରେ ବିଜ୍ଞାପନ ପାଇଁ ଜିନିଷ ରଖାଗଲା ପରି ଏଠାରେ ମଧ୍ୟ ବିଶାଳକାୟ ୫/୬ ଟି ଦନ୍ତାହାତୀ ମାହୁନ୍ତମାନଙ୍କ ସହ ସ୍ୱଚ୍ଛନ୍ଦରେ ବିଚରଣ କରିବା ଦୃଶ୍ୟ ଉପଭୋଗ କଲୁ । ତା'ପରେ ମୁଣ୍ଡପିଛା ଟ. ୩୦.୦୦ ଓ କ୍ୟାମେରା ପାଇଁ ଟ. ୫୦.୦୦ ର ଟିକଟ ସଂଗ୍ରହ କରି ଭିତରେ ପ୍ରବେଶ କଲୁ । ସେଠାରେ ୬୪ଟି ହାତୀର ସମାବେଶ । ଏକ ଆରେକ ଠାରୁ ଅଧିକ ସୁନ୍ଦର । ସୁଠାମ, ସୁନ୍ଦର, ସୁବଳ ଓ ସୁଦନ୍ତ ବିଶିଷ୍ଟ ହାତୀ ପାଖରେ ଆଖି ଲାଖି ରହିଯାଉଥାଏ । ମାହୁନ୍ତ ମାନଙ୍କଠାରୁ ହାତୀ ମାନଙ୍କର ନାଁ, ବୟସ ଓ ଗୁଣ ବିଷୟରେ ଜାଣିବାକୁ ପାଇଲୁ । ସ୍ମୃତିକୁ ସାଇତି ରଖିବା ପାଇଁ "ହାତୀ ମୋର ସାଥୀ" ଫଟୋ ଚିତ୍ର ଉତ୍ତୋଳନ କରି ଆଣିଲୁ । ଦ୍ୱିତୀୟରେ ବାହାରିଲୁ ଗୁରୁବାୟୁର ସ୍ୱାମୀ ଶ୍ରୀକୃଷ୍ଣ ଚନ୍ଦ୍ରଙ୍କର ଆଶୀର୍ବାଦ ଉଦ୍ଦେଶ୍ୟରେ ସୁସଜ୍ଜିତ ହାତୀ ଶୋଭା ଯାତ୍ରାରେ ବାହାରିବା ଚିତ୍ତାକର୍ଷକ ଦୃଶ୍ୟ ସମୁଦ୍ର କୂଳକୁ ଯିବା ରାସ୍ତାରେ ଦେଖିବାକୁ ପାଇଲୁ । ଗୁରୁବାୟୁର ସମୁଦ୍ର କୂଳର ସ୍ୱାତନ୍ତ୍ର୍ୟ ବେଳାଭୂମିର ନାରିକେଳ ବନ । ସାଗର କୂଳରୁ କମ୍ ସମୟ ମଧ୍ୟରେ ଫେରିବା ଇଚ୍ଛା ନ ଥିଲେ ମଧ୍ୟ ଅନ୍ୟ ଦର୍ଶନୀୟ ସ୍ଥାନ ଭ୍ରମଣ ଲକ୍ଷ୍ୟ ଥିବାରୁ



ଗୁରୁବାୟୁର (କେରଳ) ହାତୀଶାଳ ତା. ୨୮.୦୧.୨୦୧୧

ବାଧ ହୋଇ ଫେରିଲୁ । ଗୁରୁବାୟୁର ର ବିଖ୍ୟାତ ଈଶ୍ୱର ମନ୍ଦିର ମାମିୟୁର ମନ୍ଦିର, ଚାମୁଣ୍ଡେଶ୍ୱରୀ ମନ୍ଦିର, ପାର୍ଥସାରଥୀ ମନ୍ଦିର ଦର୍ଶନ କରି ଫେରିଲୁ । ସଂଧ୍ୟାରେ ମନ୍ଦିରର ପ୍ରଦୀପ ପ୍ରଜ୍ୱଳନ ସଜ୍ଜା ଦେଖିବା ଉଦ୍ଦେଶ୍ୟରେ ବସାକୁ ନଯାଇ ପାଖ ହୋଟେଲରୁ ଜଳଖିଆ ସେବନ କରି ଦର୍ଶନାଭିମୁଖୀ ହେଲୁ । ମନ୍ଦିରରେ ପ୍ରବେଶ ହେଲା ବେଳକୁ ମୁଖ୍ୟ ମନ୍ଦିର କାନ୍ଥର ଛୋଟ ଛୋଟ ଘରା ଭିତରେ ହଜାର ହଜାର ସଂଖ୍ୟକ ପ୍ରଦୀପ ଅଦିନ ଦୀପାବଳୀର ଭ୍ରମ ସୃଷ୍ଟି କଲା । ମନ୍ଦିର କଳା ପ୍ରସ୍ତର ନିର୍ମିତ ତେଣୁ ଦୀପ ଆଲୋକରେ କାରୁକାର୍ଯ୍ୟ ଝଲସି ଉଠୁଥାଏ । ଧାଡ଼ିରେ ସାମିଲ୍ ହେଲୁ ସଂାଧ ଦର୍ଶନ ଉଦ୍ଦେଶ୍ୟରେ । ସେଠାରେ ଥିବା ପ୍ରକାଣ୍ଡ ବିବାହ ମଣ୍ଡପ ଦେଖିଲୁ । ସକାଳେ ପୁରୁଷମାନେ ସେହି ସ୍ଥାନରେ ଧାଡ଼ିରେ ଅପେକ୍ଷା କରି ବିବାହ ରୀତିନୀତି ଦେଖିଥିଲେ । ସେମାନଙ୍କର କହିବା ପ୍ରକାରେ ସେଠାରେ ନିରାଡ଼ମ୍ବରରେ ଗଣ ବିବାହ ସଂପନ୍ନ ହେଉଥିଲା । ବରକନ୍ୟା ଉଭୟଙ୍କର ମୀନକ ଧାରଣ, ଫୁଲ ହାର ବିନିମୟ ସମୟରେ ପୁରୋହିତଙ୍କର ମନ୍ତ୍ରୋଚ୍ଚାରଣ, ବ୍ୟାଣ୍ଡ ବାଜା ଓ ଯୁଗଳ ଫଟୋ ଉତ୍ତୋଳନ ପରେ ବିବାହ ଶେଷ । ବାସ୍ତବିକ ଏହି ପରଂପରା ଅତି ସୁବିଧା ଜନକ ବୋଲି ମନେକଲୁ । ବ୍ୟାରିକେଟ୍‌ର ଲମ୍ବାଧାଡ଼ିରେ ଠିଆ ହୋଇ ବିରକ୍ତି ଅନୁଭବ କଲା ବେଳକୁ ଦୁଇଟି ମନଲୋଭା ଦୃଶ୍ୟ ଉପଭୋଗ କଲୁ । ପ୍ରଥମଟି ସେଠାରେ ଥିବା ସ୍ଥାୟୀ ନାଟ ମଣ୍ଡପରେ

ନର୍ତ୍ତକୀମାନଙ୍କ ଦ୍ୱାରା ନୃତ୍ୟ ପରିବେଷଣ । ୫/୬ ବର୍ଷ ବୟସର ବାଳିକାଠାରୁ ଆରମ୍ଭ କରି ମହିଳାମାନଙ୍କ ଦ୍ୱାରା ଗୁରୁବାୟୁର ମନ୍ଦିରର ବିଶେଷ ନୃତ୍ୟ କୃଷ୍ଣାଟମ୍ ଓ କଥାକଲୀ ନୃତ୍ୟ ଅଭିନୀତ ହେଉଥିଲା । ମନୋମୁଗ୍ଧକର ନୃତ୍ୟ ଓ ଶୁଦ୍ଧ ସଂସ୍କୃତ ସଂଗୀତ ଗାୟନ ଶୈଳୀ ଆମ କ୍ଳାନ୍ତ ଶରୀର ଓ ଅବସନ୍ନ ମନକୁ ସତେଜ ଓ ସରସ କରୁଥିଲା । ଧାଡ଼ିରେ ଠିଆ ହୋଇ ସେ ଅପୂର୍ବ ସୁଯୋଗ ଲାଭ କରିଥିବାରୁ ନିଜକୁ ଭାଗ୍ୟବାନ ମନେ କରୁଥିଲୁ । ନୃତ୍ୟାଭିନୟରୁ ଆଖି ଫେରାଇ ଆଣି ମନ୍ଦିର ଦିଗରେ ଆଖ ବୁଲାଇଲା ବେଳକୁ ଦ୍ୱିତୀୟ ବିସ୍ମୟକର ଦୃଶ୍ୟ ଅବଲୋକନ କଲୁ । ସୁନ୍ଦର ସୁସଜ୍ଜିତ ଅଳଙ୍କାର ମଣ୍ଡିତ ହାତୀ ପୃଷ୍ଠରେ ଗୁରୁବାୟୁର ଶ୍ରୀକୃଷ୍ଣ ଚନ୍ଦ୍ରଙ୍କର ବିଜେ ପ୍ରତିମାଙ୍କର ବେଢ଼ା ପରିକ୍ରମାର ଦର୍ଶନ ଏତେ ପାଖରୁ ହେବା ବିଷୟ ଆମେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲୁ । ଠାକୁରଙ୍କର ବେଢ଼ା ପରିକ୍ରମା ଶେଷ ହେବା ପରେ ସର୍ବ ଦର୍ଶନ ଅନୁମତି ମିଳିଲା । ଭୀଷଣ ଠେଲାପେଲା ଅତିକ୍ରମ କରି ମନସିଜ-ମନ ମୋହନ ଘନ ଶ୍ୟାମ ସୁନ୍ଦରଙ୍କୁ ନୟନ ମନ ତୃପ୍ତ କରି ଦର୍ଶନ ସାରି ବେଢ଼ା ପରିକ୍ରମ କଲୁ । ମନ୍ଦିର ଭିତରେ ତୁଳାଭରଣ ଦାନ ଓ ଅଙ୍ଗଦାନ ପାଇଁ ରଖାଯାଇଥିବା ରୂପାର ହାତ, ଗୋଡ଼ ଇତ୍ୟାଦି ବିଭିନ୍ନ ଅଙ୍ଗକୁ ଦର୍ଶନ କଲାବେଳକୁ ପୋଲିସ୍‌ର ତଡ଼ାଖାଇ ବାହାରକୁ ବାହାରିଲୁ । ଦୁଇଟି ଅବିସ୍ମରଣୀୟ ଦୃଶ୍ୟର ଦର୍ଶନ ଦିନସାରାର ପରିଶ୍ରମକୁ ଲାଘବ କରି ଦେଇଥିଲା । କିଛି ଭୋଗ ପ୍ରସାଦ କିଣି ବସାକୁ ଫେରିଲୁ । ରାତ୍ରି ପ୍ରସାଦ ସେବନ କରି ବିଶ୍ରାମ ନେଲୁ । ଉଲ୍ଲେଖଯୋଗ୍ୟ ଅନ୍ୟ କୌଣସି ତୀର୍ଥଗାଡ଼ି ତୀର୍ଥଯାତ୍ରା କାର୍ଯ୍ୟକ୍ରମରେ ଗୁରୁବାୟୁର ଯାତ୍ରା ସାମିଲ କରି ନଥାନ୍ତି । ତେଣୁ ଇସ୍କନ କର୍ତ୍ତୃପକ୍ଷଙ୍କର ସୁଦୟାରୁ ଶ୍ରୀକୃଷ୍ଣ ଓ ବିଶାଳକାୟ ଦନ୍ତାହାତୀ ମାନଙ୍କର ଦର୍ଶନ ସୁଯୋଗ ଲାଭ କରିଥିବାରୁ ବାବାମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଇଲୁ ।

### *ତା. ୨୯.୦୧.୨୦୧୧, ଶନିବାର*

ସକାଳ ୫ଟାରେ ନିତ୍ୟକର୍ମ ସାରି ଲଗେଜ୍ ସହିତ ନିର୍ଦ୍ଧାରିତ ବସ୍ ଆରୋହଣ କଲୁ । ଲକ୍ଷ୍ୟସ୍ଥଳ ଏର୍ଣ୍ଣାକୁଲମ୍ ରାସ୍ତାରେ ଓହ୍ଲାଇ କିଛି ଦର୍ଶନୀୟ ସ୍ଥାନ ଦେଖିବା ବ୍ୟବସ୍ଥା ହୋଇଥିଲା । ପ୍ରଥମେ ପହଞ୍ଚିଲୁ ଦିନ ୧୦ଘ୫୫ମି.ରେ ଦକ୍ଷିଣାମାନ୍ୟ ପୂର୍ଣ୍ଣାନଦୀ ତଟେ ଜଗଦ୍‌ଗୁରୁ ଶ୍ରୀ ଆଦି ଶଙ୍କରାଚାର୍ଯ୍ୟ ଆଶ୍ରମ । (788-820 A.D)ପୂର୍ଣ୍ଣାନଦୀର ବର୍ତ୍ତମାନ ନାମ ପେରିୟାର୍ ଯେଉଁ ଯୁଗ ପ୍ରବର୍ତ୍ତକ ଜ୍ଞାନ ପ୍ରବୃଦ୍ଧ ଜଗ୍‌ଦଗୁରୁଙ୍କର ପରିକଳ୍ପନା ଭାରତବର୍ଷର ଚତୁର୍ଦ୍ଧାମ, ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ ସେହି ମହାନ୍ ମହାପୁରୁଷଙ୍କର ପବିତ୍ର ଜନ୍ମପୀଠ କାଲାଡ଼ି ମାଟିକୁ ପ୍ରଣାମ କଲୁ । ପ୍ରଥମେ

ମା’ ପାର୍ବତୀ ଦେବୀଙ୍କ ମନ୍ଦିରରେ ପ୍ରବେଶ କଲୁ । ଅପରୂପା ପ୍ରତିମା ଦେବୀ ମା’ଙ୍କର । ଶଙ୍କରାଚାର୍ଯ୍ୟ ରଚିତ “ଗତିସ୍ତ୍ୱଂ ଗତିସ୍ତ୍ୱଂ ତ୍ୱମେକା ଭବାନୀ” ମା’ଙ୍କ ସମ୍ମୁଖରେ ପାଠ କଲୁ । ସିନ୍ଦୁର ଓ ଆଳତୀ ସଂଗ୍ରହ କଲୁ । ମା’ଙ୍କର ମନ୍ଦିରର ମୁଖଶାଳାରେ ଲିଖିତ ଶ୍ଳୋକ ଧାଡ଼ିଟି ଏହିପରି ଥିଲା -

“ନମସ୍ତେ ଶାରଦେ ଦେବୀ
କାଲଟି ପୁର ବାସିନୀ,
ଦକ୍ଷିଣାଭିମୁଖୀ ଦେବୀ
ଶୁଦ୍ଧ ଜ୍ଞାନ ପ୍ରଦାୟିନୀ” ।

ତା’ପରେ ଭୋଳା ଶଙ୍କରଙ୍କର ଦର୍ଶନ କଲୁ । ବିଭୂତି ଧାରଣ କଲୁ । ବାବାଙ୍କର ମନ୍ଦିର ମୁଖଶାଳାରେ ଲିଖିତ ଥିଲା -

“ଶ୍ରୁତି ସ୍ମୃତି ପୁରାଣାନାମାଳୟେ
କରୁଣାଳୟମ୍ ।
ନମାମି ଭଗବତ୍‌ପାଦ ଶଙ୍କରଂ
ଲୋକ ଶଙ୍କରମ୍” ।

ହର-ପାର୍ବତୀ ମନ୍ଦିର ଉପରୁ ପୂର୍ଣ୍ଣାନଦୀର ପ୍ରାକୃତିକ ଶୋଭା ଦର୍ଶନ କଲୁ । ଦୁଇ ମନ୍ଦିର ତଳକୁ ଖସିଲେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ବିଶାଳ ମୂର୍ତ୍ତି । ନିକଟରେ ଜଗଦ୍‌ଗୁରୁଙ୍କର ପିତା, ମାତାଙ୍କର ପ୍ରସ୍ତର ମୂର୍ତ୍ତି ମଧ୍ୟ ବିଦ୍ୟମାନ । ବେଢ଼ା ଭିତରେ ଶ୍ରୀ ଗଣେଶ, କାର୍ତ୍ତିକେୟ, ଲକ୍ଷ୍ମୀ ନାରାୟଣ ଇତ୍ୟାଦି ପାର୍ଶ୍ୱ ଦେବ ଦେବୀଙ୍କୁ ଦର୍ଶନ କରି ଇସ୍କନ ବାବାଙ୍କର ନିର୍ଦ୍ଦେଶରେ ବସ୍‌ରେ ବସିଲୁ । ବସ୍ ରହିବା ସାମ୍‌ନାରେ ବହି ଦୋକାନ । ବନ୍ଦ ହୋଇଥିବା ଦେଖି ହତାଶ ହେଲୁ । କିନ୍ତୁ ଆଦିଗୁରୁଙ୍କ ଅପାର କରୁଣାରୁ ଆମ ଯାତ୍ରୀମାନେ ସମବେତ ହୋଇ ନଥିବାରୁ ବହି ଦୋକାନ ଖୋଲୁ ଖୋଲୁ କେତେ ଜଣ ଯାତ୍ରୀ ଅଚାନକ ପ୍ରବେଶ କରି କିଛି ବହି ଓ କ୍ୟାସେଟ୍ କିଣି ଆଣିଲୁ ।

ବସ୍ ଛୁଟିଲା ରାଜପଥରେ । ଭାରତର ବିଭବଶାଳୀ ରାଜ୍ୟ କେରଳ । ବସାରୁ ବାହାରିବା ଠାରୁ ଏର୍ଣ୍ଣାକୁଲମ୍ ଷ୍ଟେସନରେ ପହଞ୍ଚିବା ପର୍ଯ୍ୟନ୍ତ ଆମେ କୌଣସି ଠାରେ ପଡ଼ିଆ ଜମି ଦେଖିବାକୁ ପାଇ ନ ଥିଲୁ । ଚାରିଆଡ଼େ ବସ୍ତି, ସହର, ଘରଦ୍ୱାର, କୋଠାବାଡ଼ି, ସ୍କୁଲ, କଲେଜ, କମ୍ପାନୀ, କାରଖାନା, ଯାନ୍ତ୍ରିକ ସଭ୍ୟତାର ଏତାଦୃଶ ଅବତାର ଦେଖି ଶ୍ରୀ ରାଧାମୋହନ ଗଡ଼ନାୟକଙ୍କର ‘ମାଟିର ମଣିଷ’ କବିତାର

କେତେ ଧାଡ଼ି ମନେ ପଡ଼ିଲା ।

"ଯନ୍ତ୍ର ତତେ କି ମନ୍ତ୍ର ଦେଉଛି
ମାଟିର ମଣିଷ ଆରେ
ମୁଗ୍ଧ ତୋହର ଚିର ଗହନେ
ଚିନ୍ତି ପାରୁନୁ ବାରେ" ?

ବିକାଶୋନ୍ମୁକୀ ଭାରତବର୍ଷର ଯନ୍ତ୍ର ବିଭବ ଦୃଶ୍ୟ ପରେ ପରେ ବସ୍ ଅଟକିଲା ଭାରତର ଏକମାତ୍ର ବାମନ ଦେବ ମନ୍ଦିର ନିକଟରେ । ବାମନ ଦେବ ମନ୍ଦିର ଅଧିଷ୍ଠିତ ସ୍ଥାନରେ ନାମ ଥିରିକାକରା THIRIKAKARA । ଇସ୍କନ ବାବା ପ୍ରଥମେ ଦୌଡ଼ି ଯାଇ ଦେଖିଲା ବେଳକୁ ମନ୍ଦିର ବନ୍ଦ, ପୁଣି ୩ଟାରେ ଖୋଲା ହେବ । ପ୍ରଥମେ ପ୍ରସାଦ ସେବନ ତା'ପରେ ବିଚାର କରିବାକୁ ନିର୍ଦ୍ଦେଶ ମିଳିଲା । ସେ ଦିନ ପଲଉ, ଶିମ୍ବ ତରକାରୀ, ଟମାଟ ଖଟା ଓ ଛଣା ଭଜାର ବ୍ୟବସ୍ଥା ହୋଇଥିଲା । ଇସ୍କନ ବାବାଙ୍କୁ କୃତଜ୍ଞତା ପୂର୍ବକ ପ୍ରଶ୍ନ କଲୁ "ବାବା" ! ଏତେ ପରିଶ୍ରମ କରି ରାସ୍ତା ପାଇଁ ଏତେ ସବୁ ଆୟୋଜନ କାହିଁକି କଲେ ? ଦହି ଭାତ, ସନ୍ତୁଳାରେ ଚଳି ଯାଆନ୍ତା ନି ? ବାବା ତାଙ୍କର ଉଦାରପଣ ଯୋଗୁଁ ନୀରବ ରହିଲେ । କ୍ଷୁଧା ନିବାରଣ ପରେ ଭ୍ରମଣ ଚିନ୍ତା ପଡ଼ିଲା । କିଏ କ'ଣ, କିଏ କ'ଣ ମତ ଦେଲେ । ଶେଷରେ ଠିକ୍ ହେଲା କୋଚି ସମୁଦ୍ର କୂଳ ବୁଲି ଆସି ବାମନଦେବଙ୍କ ଦର୍ଶନ ସାରି ଷ୍ଟେସନ ଫେରିବା, ନିର୍ଦ୍ଧାରିତ ବସ୍ ଯୋଗେ ସମୁଦ୍ରକୂଳରେ ପହଞ୍ଚିଲୁ । କୋଚି ସମୁଦ୍ରକୂଳର ନାମ "ଚେରୁଚି ବିଚ୍" ସେଠାରେ ପହଞ୍ଚିବା ପରେ ସମୁଦ୍ରରେ ୩ ଘଣ୍ଟାର ନୌଯାତ୍ରା ପାଇଁ ଟିକେଟ୍ ସଂଗ୍ରହ କଲୁ । ଆରବସାଗର କୂଳର ଏକ ବିରାଟ ବନ୍ଦର କୋଚି ବନ୍ଦର । ସହରର କଳକାରଖାନା ନିର୍ଗତ ଜଳ କୋଚି ସମୁଦ୍ର ଜଳକୁ କଳାଭ୍ରମର ରଙ୍ଗରେ ସଜାଇ ଦେଇଥିଲା । ଦୁର୍ଗନ୍ଧ ମଧ୍ୟ ଅତି କଟୁ ଥିଲା । ଦ୍ୱିପହରର ମୁଣ୍ଡଫଟା ଖରାରେ ବୋଟ୍‌ରେ ନୌ-ବିହାର ଆରମ୍ଭ କଲୁ । ଆମ ନାବିକ ବଡ଼ କୁହାଳିଆ ଥିଲା । ଏଣୁ ତେଣୁ କରି କହି ଆମକୁ ଭୁଲାଇ ଦର୍ଶନୀୟ ସ୍ଥାନ (ତାଲିକାରେ ଲେଖାଥିବା) ଦେଖାଇବା ବଦଳରେ ଧୀର ମନ୍ଥର ଗତିରେ ଖାଲି ସମୁଦ୍ରରେ ବୁଲାଇବାକୁ ଲାଗିଲା । ଆମ ଯାତ୍ରୀଗଣ ଯେତେ ପାଟି କଲେ ମଧ୍ୟ ସେ ନ ଶୁଣିଲା ପରି ରହୁଥିଲା । ବୋଧହୁଏ ସେହି ନାବିକ ମହାଶୟ ରାମାୟଣର କେଉଟ ହୋଇଥିଲେ ଉତ୍ତର ଦେଇଥାଆନ୍ତେ 'ବଧିର ନୁହଁଇ ବୀର ବୋଇଲା ତହୁଁ ଧୀବର' । ନୌକାର ଗତି ବଢ଼ାଇବା ପାଇଁ ପାଟିତୁଣ୍ଡ କରିବାରୁ ହର୍ଣ୍ଣ ବଜାଇଲା । ଓହ୍ଲାଇଲା ପରେ କହିଲା ନୌକାର ଗତି ସେତିକ ଆଉ

ବଢେଇ ହେବ ନାହିଁ । ପାଟିତୁଣ୍ଡ, ହାସ୍ୟ ରୋଳ, ନିଜ ନିଜ କ୍ୟାମେରା ସଞ୍ଚାଳନ କରି ଯାତ୍ରୀଗଣ ନୌ-ଯାତ୍ରାକୁ ହୃଦୟ ଭରି ଉପଭୋଗ କରିବା ମନେ ହେଉଥିଲା । ଟ. ୧୦୦.୦୦ ମୂଲ୍ୟର ଟିକଟରେ ୩ ଘଣ୍ଟା ଯାତ୍ରା ସ୍ଥିର ହୋଇଥିଲା । ପ୍ରଥମେ ପହଞ୍ଚିଲୁ ଗୋଟିଏ ଦ୍ୱୀପରେ । ତାହା ଡଚ୍ ପ୍ୟାଲେସ୍ ଥିଲା । ଛୋଟ ବଡ଼ ରାଜପ୍ରାସାଦ ବାହାରୁ ଦେଖିଲୁ, କେତେ ଜଣ ଯାତ୍ରୀ ମ୍ୟୁଜିୟମ୍ ଟିକଟ ପାଇଁ ଧାଡ଼ିରେ ଠିଆ ହୋଇଥିଲେ କିନ୍ତୁ ନାବିକଙ୍କ ଡ଼ାକରାରେ ଫେରି ଆସିଲେ । ତାଲିକାରେ ଆରବ ସାଗର ପ୍ରବେଶସ୍ଥଳ ଲେଖାଥିଲା, ନେଲା ନାହିଁ । ଭାରତୀୟ ଜାହାଜ, ଦୁବାଇରୁ ଆସିଥିବା ବିରାଟ ବିରାଟ ଜାହାଜ, ସମୁଦ୍ର ମଧ୍ୟରୁ ସହରର କୋଠାବାଡ଼ିର ଦୃଶ୍ୟ ଇତ୍ୟାଦି ଦେଖି ବାମନ ଦେବ ମନ୍ଦିରକୁ ଫେରିଲୁ । ''ଜୟତୁ ପତିତ ପାବନ, ବଳି ଦ୍ୱାରେ ବାମନ'' । ବାମନ ଦେବଙ୍କର କମନୀୟ ମୂର୍ତ୍ତି ଓ ଅନ୍ୟ ପାର୍ଶ୍ୱ ଦେବଦେବୀ ଦର୍ଶନ କରି ରାତି ୭ଟାରେ ଏର୍ଣ୍ଣାକୁଲମ୍ ଷ୍ଟେସନ୍‌ରେ ପହଞ୍ଚିଲୁ । ସେଦିନ ମଦନ ବାବା ଓ ରୋଷେଇଆ ଦଳ ରାତ୍ରିପ୍ରସାଦ ପ୍ରସ୍ତୁତି ପାଇଁ ଗୁରୁବାୟୁରରେ ରହିଯାଇ ଥିଲେ । ରୁଟି ଓ ତରକାରୀ ସହ ସେମାନେ ପରେ ପହଞ୍ଚିଥିଲେ । ପ୍ରସାଦ ବିତରଣ ସମୟରେ ଜଣେ Sport s Coach ଓ ତିନିଜଣ ଛାତ୍ରଙ୍କ ସହ ଦେଖାହୋଇଥିଲା । ସେହି ସ୍ଥାନରେ ଧାଡ଼ି ଧାଡ଼ି ହୋଇ ଲୁହା ଚୌକି ପଡିଥାଏ । ଗୋଟିଏ ଚୌକିରେ ଶିକ୍ଷକ ମହାଶୟ ଓ ତଳେ ଜଣେ ପିଲା ବସି ମନ ଖୁସିରେ କଥା ହେଉଥାନ୍ତି । କିଛି ସମୟପରେ ଖାଦ୍ୟ ପଦାର୍ଥ ଓ ପାନୀୟ ଧରି ଅନ୍ୟ ଦୁଇଜଣ ପିଲା ସେଠାରେ ପହଞ୍ଚିଲେ । ସମସ୍ତେ ଏତେ ଖୁସି ଜଣାପଡୁଥାନ୍ତି ଯେ ଶେଷରେ ଆମେ ସେମାନଙ୍କର ଖୁସିର କାରଣ ନ ପଚାରି ରହିପାରିଲୁ ନାହିଁ । ସେମାନଙ୍କର ବିଶେଷ ଖୁସିର କାରଣ ଥିଲା ସେମାନେ India Sports Meet ରେ ସଫଳତା ହାସଲ କରିଛନ୍ତି । ସେମାନେ ଏର୍ଣ୍ଣାକୁଲମ୍ ପାଟଣା ଏକ୍ସପ୍ରେସ୍‌ରେ ବୁଲି ବୁଲି ଦୀର୍ଘ ପଥ ଅତିକ୍ରମ କରି ଆଲାହାବାଦରେ ପହଞ୍ଚିବେ । ଯୁକ୍ତଦୁଇ ଶ୍ରେଣୀର ତିନୋଟି ଛାତ୍ର ଓ କୋଚ୍ ମହୋଦୟଙ୍କର ଭଦ୍ର ଓ ବିନୟ ବ୍ୟବହାର ଆମକୁ ଆପ୍ୟାୟିତ କରିଥିଲା । ଗପସପ, ମଜା ମଉଜରେ ଅଳ୍ପ ସମୟ ବିତାଇବା ପରେ ରାତି ୧୦ ଘ. ୪୫ ମି.ରେ ଟ୍ରେନ୍ ପହଞ୍ଚିଲା । ଏର୍ଣ୍ଣାକୁଲମ୍-ପାଟନା ଏକ୍ସପ୍ରେସ୍‌ରେ ଚଢ଼ି ତ୍ରିପତି ଅଭିମୁଖେ ଯାତ୍ରା କଲୁ । ତ୍ରିପତିରେ ଓହ୍ଲାଇବା ସମୟ ଦିନ ୧୨ ଘ. ୧୦ମି. ହୋଇଥିବାରୁ ସୁଖ ନିଦ୍ରାରେ ହଜିଗଲୁ ।

ଜଗଦ୍‌ଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟ ଜନ୍ମସ୍ଥାନ ଦର୍ଶନ ପରେ ଆଦି ଶଙ୍କର କୁଳଦେବ କ୍ଷେତ୍ରମ୍ ଶ୍ରୀକୃଷ୍ଣ ମନ୍ଦିରରେ ଜଗନ୍ମୋହନ ଶ୍ରୀକୃଷ୍ଣ ଓ ପାର୍ଶ୍ୱଦେବଦେବୀ ଦର୍ଶନ କଲୁ ।

**ତା. ୩୦.୦୧.୨୦୧୧, ରବିବାର**

ରେଳ ବଗିରେ ଯଥା ସମ୍ଭବ ନିତ୍ୟକର୍ମ ଶେଷକରି ଦିନ ୧୦ ଘଣ୍ଟାରୁ ଏକ ଘଣ୍ଟା ବ୍ୟାପୀ ଆମ ବସିବା ସ୍ଥାନରେ ସୂର୍ଯ୍ୟକାନ୍ତ ବାବାଙ୍କ ମୁଖରୁ ହରିକୀର୍ତ୍ତନ ଓ ହରିକଥା ଶ୍ରବଣ କଲୁ । ବିଭିନ୍ନ ଉଦାହରଣ ମାଧ୍ୟମରେ ବାବା ହରିନାମ ଓ ଏକାଦଶୀର ମାହାତ୍ମ୍ୟ ବିଷୟରେ ବୁଝାଇଥିଲେ । ''ପରୋପକାର'' ଉପରେ ବ୍ୟାଖ୍ୟା କରି ବାବା କହିଥିଲେ-

''ସହେ ଯିଏ କଷ୍ଟ ତା' ପାଇଁ ମୁକୁଟ
ସାଇତି ରଖନ୍ତି ହରି ।
ଏ ଜୀବନ ଅନ୍ତେ ପିନ୍ଧାଇ ଦିଅନ୍ତି
ସ୍ୱୟଂ ପ୍ରଭୁ ଚକ୍ରଧାରୀ ।''

ରେଳ ଉପରେ ସତ୍‌ସଙ୍ଗର ପରିସମାପ୍ତି ଘଟିଲା । ଆମ ଗନ୍ତବ୍ୟ ସ୍ଥଳ ତ୍ରିପତି ଷ୍ଟେସନ ପହଞ୍ଚିଗଲା । ଦିନ ୧୨ଘ.୧୦ମି.ରେ ଆମ ପାଇଁ ନିର୍ଦ୍ଧାରିତ "ଧ୍ରୁବତାରା ଲଜ୍" କୁ ଅଟୋରେ ଗଲୁ । ସାମନାରେ 'ଶ୍ରୀନିବାସ ଲଜ୍'ରେ ମଧ୍ୟ ଆମ ଯାତ୍ରୀଙ୍କ ପାଇଁ ରହିବା ବ୍ୟବସ୍ଥା ହୋଇଥିଲା । ହୋଟେଲ୍ ଧ୍ରୁବତାରାରେ ଲିଫ୍‌ଟର ବ୍ୟବସ୍ଥା ଥିଲେ ମଧ୍ୟ ପ୍ରଥମ ମହଲାରୁ ଲିଫ୍‌ଟଟି କାମ କରୁଥିଲା । ତେଣୁ ହୋଟେଲ ପିଲା ସାହାଯ୍ୟରେ ପ୍ରଥମ ମହଲାକୁ ଲଗେଜ୍ ନେଲୁ । ତା'ପରେ ଲିଫ୍‌ଟରେ ଦ୍ୱିତୀୟ ମହଲାର ୨୦୭ ନମ୍ବର ରୁମ୍‌ରେ ପ୍ରବେଶ କଲୁ । ରୁମ୍‌ରେ ପ୍ରବେଶ କରିବା ସଂଗେ ସଂଗେ ଏକାଦଶୀ ପ୍ରସାଦ ସେବନ ପାଇଁ ଇସ୍କନ ମନ୍ଦିର ଯିବା ପାଇଁ ଆମ ଦାୟିତ୍ୱରେ ଥିବା ବାବା ୫ମିନିଟରେ ପ୍ରସ୍ତୁତ ହୋଇ ବାହାରିବାକୁ ନିର୍ଦ୍ଦେଶ ଦେଲେ । ସ୍ୱାଇଁ ଦମ୍ପତି ଓ ଆମେ ଦୁହେଁ ଦଶମିନିଟ୍‌ରେ ତଳକୁ ଓହ୍ଲାଇଲା ବେଳକୁ ବାବା ନିଖୋଜ । କାଉଣ୍ଟରରେ ଇସ୍କନ ମନ୍ଦିର ଠିକଣା ବୁଝିଲୁ । ମୁଣ୍ଡପିଛା ଟ୧୦.୦୦ ଭଡ଼ା ଦେଇ ଅଟୋରେ ଇସ୍କନ ମନ୍ଦିର ଅଭିମୁଖେ ବାହାରିଲୁ । ଆମେ ଦୁଇ ଦମ୍ପତି ସେହିଦିନ ଏତେ ତରବରରେ ଘରୁ ବାହାରିଥିଲୁ ଯେ ଶ୍ରୀମତୀ ସ୍ୱାଇଁ ସିନ୍ଦୁର ଲଗାଇବା ଓ ଆମେ ଔଷଧ ଓ INHALER ନେବା ଭୁଲିଯାଇଥିଲୁ । ଦିନ ଗୋଟାଏରେ ମନ୍ଦିର ବନ୍ଦ ହେବା ଶୁଣି ପ୍ରଥମେ ଫୁଲ, ଭୋଗ ନେଇ ଦର୍ଶନ ପାଇଁ ବାହାରିଲୁ । ରବିବାର ଛୁଟିଦିନ ଏବଂ ଏକାଦଶୀ ତିଥି ହୋଇଥିବାରୁ ସେଦିନ ମନ୍ଦିରରେ ଭିଡ଼ ଜମିଥାଏ । ମନ ଭରି ଆଖି ପୁରାଇ ଦର୍ଶନ ସାରିବା ପରେ ନାମ ସଂକୀର୍ତ୍ତନରେ ଅଳ୍ପ ସମୟ ବସିଲୁ । ତା' ପରେ ବାହାରିଲୁ ଇସ୍କନ ବାବାଙ୍କ ଅନ୍ୱେଷଣରେ । ବାବା ଆମର ପରିଚୟ ଦେଲେ କିମ୍ବା

ଟୋକେନ୍ ନେଲେ ଆମେ ପ୍ରସାଦ ପାଇବୁ । ତେଣୁ ବାବାଙ୍କୁ ଖୋଜି ଖୋଜି ତ୍ରି-ତଳ ପ୍ରସାଦ ଥରେ/ଦୁଇଥର ପ୍ରଦିକ୍ଷଣ କଲୁ । କେତେ ସମୟ ପରେ ସୂର୍ଯ୍ୟକାନ୍ତ ବାବା ପହଞ୍ଚିଲେ । ସେ ଆମକୁ ମନ୍ଦିର ପାବଛରେ ବସାଇ ଦାୟିତ୍ୱରେ ଥିବା ବାବାଙ୍କୁ ଖୋଜି ବାହାରିଲେ । ପରେ ଜାଣିଲୁ ସୂର୍ଯ୍ୟକାନ୍ତ ବାବାଙ୍କର ନିର୍ଜଳ ଉପବାସ ଥିଲା । ବହୁ ସମୟ ଖୋଜାଖୋଜି ପରେ ଆମ ବାବା ମିଳିଲେ । ତୃତୀୟ ମହଲାରେ ସେହି ସ୍ଥାନରେ ଏକାଦଶୀ ଉପବାସ କରିବା ଭକ୍ତଙ୍କ ପାଇଁ ଏକାଦଶୀ ପ୍ରସାଦ ସେବନର ବ୍ୟବସ୍ଥା ହୋଇଥିଲା । ନିଜେ ବାବା ଆମକୁ ପ୍ରସାଦ ବିତରଣ କଲେ । କେତେଜଣ ଦକ୍ଷିଣ ଭାରତୀୟ ଭକ୍ତଙ୍କ ସହ ସେଠାରେ ସୁସ୍ୱାଦୁ କ୍ଷୀରି, ଛଣାଭଜା, ଟମାଟ ଖଟା ଓ ଦକ୍ଷିଣ ଭାରତୀୟ ଦହି ପ୍ରସାଦ ସେବନ କରି ସନ୍ତୋଷ ଲାଭ କଲୁ । ପ୍ରସାଦ ସେବନ କକ୍ଷର କାନ୍ଥରେ ଲେଖାଥିଲା -

"By wasting one grain of Prasadan one has to take. ten births."

(AGNI PURANA)

ବିରାଟ ଆୟତନ ବିଶିଷ୍ଟ ଇସ୍କନ ମନ୍ଦିର । ମନ୍ଦିରର ମୁଖ୍ୟ ଦେବତା ରାଧାକୃଷ୍ଣ, ଲଳିତା, ବିଶାଖା ସହ କୃଷ୍ଣ । ନିକଟରେ କେତେ ଦେବ ଦେବୀ ପୂଜିତ ଓ କେତେ ମନ୍ଦିର କାମ ଚାଲିଛି । ପ୍ରାୟ ସବୁ କୋଠାଗୁଡ଼ିକ ଦୁଇ ତିନି ମହଲା ବିଶିଷ୍ଟ । ତିରୁପତି ଇସ୍କନ ମନ୍ଦିରର ଦ୍ରୁତ ନିର୍ମାଣ ପଦ୍ଧତିରେ ଆଶ୍ଚର୍ଯ୍ୟ ପ୍ରକାଶ କରି ଜଣେ ତୀର୍ଥଯାତ୍ରୀ ଓ ବାବା କଥାବାର୍ତ୍ତା ହେଲେ ସେମାନେ ତିନିବର୍ଷ ତଳେ ମନ୍ଦିର ପ୍ରତିଷ୍ଠା ଉତ୍ସବରେ ଯୋଗ ଦେଇଥିଲେ । ମାତ୍ର ତିନିବର୍ଷରେ ଏତେ ସବୁ କାମ ଶେଷ ହୋଇଯାଇଛି । ପ୍ରସାଦ ସେବନ ପରେ ଆମେ ଦୁଇ ପରିବାର ଭାବିଲୁ ଆଜି ଏକାଦଶୀରେ ହିଁ ତିରୁପତି ବାଲାଜୀଙ୍କୁ ଦର୍ଶନ କରିବାକୁ ଯିବୁ । ଆମ ଭଳି ଦୁର୍ବଳ ସ୍ୱାସ୍ଥ୍ୟଙ୍କ ମତରେ କୌଣସି ସ୍ଥାନରେ ଦୁଇଦିନ ରହିବା ବ୍ୟବସ୍ଥା ଠିକ୍ ହୋଇଥିଲେ ମଧ୍ୟ ପ୍ରଥମ ଦିନ ହିଁ ଦର୍ଶନ ଶେଷ କରିବା ଉଚିତ୍ । ତେଣୁ ଇସ୍କନ ମନ୍ଦିରରୁ ବାହାରିଲୁ ତ୍ରିପତି ବାଲାଜୀଙ୍କ ଦର୍ଶନ ଉଦ୍ଦେଶ୍ୟରେ । ମନ୍ଦିର ମୁଖ୍ୟ ଫାଟକ ଦାୟିତ୍ୱରେ ରହିଥିବା ପରିଚାରକ ମାନଙ୍କଠାରୁ ବସ୍‌ଷ୍ଟାଣ୍ଡର ଦୂରତା ଓ ଉପରକୁ ଯିବା ବ୍ୟବସ୍ଥା ବୁଝିଲାବେଳକୁ ଇସ୍କନ ବାବା କେତେଜଣ ସେଠାରେ ଉପସ୍ଥିତ ହେଲେ ଓ ନିକଟରେ ବସ୍‌ଷ୍ଟାଣ୍ଡ ବୋଲି କହିଲେ । ବାବାମାନଙ୍କ ପଦାଙ୍କ ଅନୁସରଣ କରି ଅଗ୍ରସର ହେଲୁ । ବାଟ ଚାଲୁ ଚାଲୁ ରାସ୍ତା ସରୁ ନ ଥାଏ । ଉଠାଣି ରାସ୍ତାରେ ପ୍ରାୟ ୧.୧/୨କି.ମି ରାସ୍ତା ଗଲାପରେ ବସ୍‌ଷ୍ଟାଣ୍ଡ ଆସିଲା । ଦିନ ୩ଟାରେ ଛାଡ଼ିବା ପାଇଁ ବସ୍ ପାଇଁ ଟିକଟ କଲୁ । ଯିବା ଆସିବା ପାଇଁ ଟିକଟର ମୂଲ୍ୟ ମୁଣ୍ଡପିଛା ଟ୫୪.୦୦.ଟିକଟର ବୈଧତା (Validity)

ତିନି ଦିନ ପାଇଁ । କ୍ୟାଲେଣ୍ଡର ଲେଖାଥିବା ଟିକଟରେ ତାରିଖ ଓ ସମୟକୁ ଛୋଟ କଣା (Punching) କରାଯାଏ । Punching hour ର ୧ଘଣ୍ଟା ପର୍ଯ୍ୟନ୍ତ ଟିକଟର ଅବଧି ରହିଥାଏ ନଚେତ୍ ଟିକଟ ବାତିଲ ହୋଇଯାଏ । ଏଠାରେ ତଳେ ଥିବା ସହରର ନାମ ତିରୁପତି ଓ ଦେବତା ବିଜେ ହୋଇଥିବା ପାହାଡ଼ର ନାମ ତିରୁମଲ୍ଲା । ଆନ୍ଧ୍ରପ୍ରଦେଶର ସମୟାନୁବର୍ତ୍ତୀ ଅନୁଶାସନ ପ୍ରକାରେ ଠିକ୍ ଦିନ ୩ଟାରେ ବସ୍ ଷ୍ଟାଣ୍ଡ ଛାଡ଼ିଲା । ତିରୁପତି ଠାରୁ ତିରୁମଲ୍ଲାର ଦୂରତା ୨୦କି.ମି । ଏକ ପାର୍ଶ୍ୱରେ ପାହାଡ଼ ଓ ବୃକ୍ଷରାଜିର ଅପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟ ଭରା ଜଙ୍ଗଲ, ନିମ୍ନ ପ୍ରଦେଶରେ ମାନବ କଳା କୌଶଳରେ ନିର୍ମିତ ସୁଉଚ୍ଚ ସୁରମ୍ୟ ସୌଧ ପୂର୍ଣ୍ଣ କଂକ୍ରିଟ୍ ଜଙ୍ଗଲର ଶୋଭା ଦର୍ଶନ କରୁ କରୁ ଗାଡ଼ି ମନ୍ଦିର ନିକଟରେ ଓହ୍ଲାଇବା ସ୍ଥାନରେ ପହଞ୍ଚି ସାରିଥିଲା । ବସ୍‌ରୁ ଓହ୍ଲାଇ ସର୍ବ ଦର୍ଶନ ପାଇଁ ଦୌଡ଼ିଲୁ । ଆଗରୁ ଶୁଣିଥିଲୁ ସଂଧ୍ୟା ପର୍ଯ୍ୟନ୍ତ ସର୍ବ ଦର୍ଶନର ସୁବିଧା ରହିଛି । ଦୌଡ଼ି ଦୌଡ଼ି ପଶିଗଲୁ ୧୬ନଂ ରୁମରେ । ଆଗରୁ ୧୫ଟି ଗ୍ୟାଲେରୀ ପ୍ରକାରର ଶୀତ ତାପ ନିୟନ୍ତ୍ରିତ ଓ ଦୂରଦର୍ଶନ ବ୍ୟବସ୍ଥା ରହିଥିବା ପ୍ରକୋଷ୍ଠ ଗୁଡ଼ିକରେ ଯାତ୍ରୀମାନଙ୍କର ପ୍ରବଳ ଭିଡ଼ ଜମିଥିଲା । ମାର୍ବଲ ନିର୍ମିତ ଏହି ଶୀତ ତାପ ନିୟନ୍ତ୍ରିତ ପ୍ରକୋଷ୍ଠରେ ୧୦ମିନିଟ୍ ବିଶ୍ରାମ ନେଲା ପରେ ନିତ୍ୟକର୍ମ ସାରି ଥଣ୍ଡା ପାନୀୟ ଗ୍ରହଣ କରି ଆଶ୍ୱସ୍ତି ବୋଧ କଲା ପରେ କୋଠରୀ ବାହାରକୁ ଯାଇ ନୋଟିସ୍ ବୋର୍ଡ଼ ଦେଖିଲାବେଳକୁ ଜଣାଗଲା ଆଜି ପାଇଁ ସର୍ବଦର୍ଶନ ବନ୍ଦ । ଆସନ୍ତାକାଲି ଅର୍ଥାତ୍ ତା ୩୧/୦୧/୧୧ ସକାଳ ୪ଟାରେ ଦର୍ଶନ ଆରମ୍ଭ ହେବ । ବୁଦ୍ଧି ହଜିଗଲା ଆମ୍ଭମାନଙ୍କର । ସେତେବେଳକୁ ଆମେ ୨୫/୩୦ ଜଣ ଇସ୍କନ ଯାତ୍ରୀ ଏକାଠି ହୋଇ ସାରିଥିଲୁ । ଉତ୍ତମ ବ୍ୟବସ୍ଥା ସମ୍ପନ୍ନ ବିଶ୍ରାମ କକ୍ଷରୁ ଆସିବା ପାଇଁ ଇଚ୍ଛା ହେଉ ନ ଥିଲେ ମଧ୍ୟ ଦର୍ଶନ ଲାଳସାରେ ବାହାରକୁ ବାହାରିଲୁ । ୨୦୦୦ ମସିହାରେ ଆମେ ଯେଉଁ ସ୍ଥାନରେ ଟାଇଲ ଛପର ଘର, କାଠ/ସିମେଣ୍ଟ ବେଞ୍ଚ୍ ଦେଖିଥିଲୁ ଏବେ ସେଇଠି ସୁରମ୍ୟ ଶୀତ ତାପ ନିୟନ୍ତ୍ରିତ ବିଶ୍ରାମ କକ୍ଷ ଦେଖିଲୁ । ଓଡ଼ିଶାର ମଠ ମନ୍ଦିର କୀର୍ତ୍ତି ରାଜିର ରକ୍ଷଣା ବେକ୍ଷଣ ଓ ଯତ୍ନ ସହ ଆନ୍ଧ୍ର ପ୍ରଦେଶର କୀର୍ତ୍ତି ସମୂହର ତତ୍ତ୍ୱାବଧାନ ବିଷୟରେ ତୁଳନା କଲୁ । ହାୟରେ ହତଭାଗ୍ୟ ଓଡ଼ିଶା ! ଖଟୁଲି ସହିତ ଦିଅଁଙ୍କୁ ଖାଇବା ଓଡ଼ିଆ ! ସମବେତ ସମସ୍ତ ଯାତ୍ରୀ ଅଭିଯାନ ଆରମ୍ଭ କଲୁ ଟିକଟ ବୁକିଂ କାଉଣ୍ଟର ଦିଗରେ । ସେଠାରେ ଜାଣିବାକୁ ପାଇଲୁ ମାତ୍ର ଦୁଇ ତିନି ଘଣ୍ଟା ଧାଡ଼ିରେ ଠିଆ ହେଲେ ଟ୩୦୦.୦୦ଙ୍କା ଟିକଟରେ ଦର୍ଶନ ସମ୍ଭବ ହୋଇପାରିବ । ତର୍କ ବିତର୍କ, ବାଦାନୁବାଦ, ଚର୍ଚ୍ଚା ଆଲୋଚନା ପରେ ଠିକ୍ କଲୁ ଧନୀର ବଂଧୁ ବାଲାଜୀ ଦେବଙ୍କୁ ଧନ ବିନିମୟରେ ହିଁ ଦର୍ଶନ କରିହେବ । କିଛି କ୍ଷଣ ପୂର୍ବରୁ ଓଡ଼ିଶା ସହିତ

ତୁଳନା କରି ଯେଉଁ ନୈରାଶ୍ୟ ଭାବ ଜାଗ୍ରତ ହୋଇଥିଲା ତାହା ଭୁଲ ପ୍ରମାଣିତ ହେଲା । କିଛି ବର୍ଷ ପୂର୍ବେ ଶ୍ରୀମନ୍ଦିରରେ ପାରମାଣିକ ଦର୍ଶନର ବ୍ୟବସ୍ଥା କରାଯାଇଛି ତେଣୁ ମାତ୍ର ଟ୨୫.୦୦ ମୂଲ୍ୟର ଟିକଟ ପାଇଁ ବହୁବାର ଦାବି ଚଳି ଆସୁଥିଲା । ଚାରି ମାସ ତଳେ ପ୍ରଶାସନର ନିଷ୍ପତ୍ତି ଟିକଟର ମୂଲ୍ୟ ଟ୧୦୦.୦୦ ହେବାରୁ ଦାବି ଆନ୍ଦୋଳନ ଏତେ ପ୍ରବଳ ହେଲା ଯେ କାର୍ଯ୍ୟକାରୀ କରିବା ତ ଦୂରର କଥା ପ୍ରଶାସନ ନିଷ୍ପତ୍ତିରୁ ଓହରିଯିବାକୁ ବାଧ ହେଲେ । ଏଠାରେ ସ୍ୱତନ୍ତ୍ର ଟିକଟର ବ୍ୟବସ୍ଥା ସର୍ବଜନ ଆଦୃତ । ଧାମ ଧାମରେ ପାର୍ଥକ୍ୟ, ନାମ ନାମରେ ପ୍ରଭେଦ, ଠାକୁର ଠାକୁରଙ୍କୁ ନିୟମରେ ତଫାତ୍ - ଏହା ହିଁ ସୃଷ୍ଟିର ଧାରା । ଏହାକୁ ଖଣ୍ଡନ କରିବା ସାଧ କାହାର ନାହିଁ । ଆସନ୍ତାକାଲି ପର୍ଯ୍ୟନ୍ତ ଅପେକ୍ଷାକୁ ଭୟ କରି ଫଟାଫଟ୍ ଟିକଟ ସଂଗ୍ରହ କରି ଧାଡ଼ିରେ ଠିଆ ହେଲୁ । ଆମ ତୀର୍ଥ ସାଥୀ ଶ୍ରୀ ରାମଚନ୍ଦ୍ର ସାହୁ ବାବୁ ସବୁ ବିଷୟର ପ୍ରାଞ୍ଜଳ ବିବରଣୀ ଲେଖିବା ପାଇଁ ମୋତେ ସମୟେ ସମୟେ ସ୍ମରଣ କରାଉଥାନ୍ତି । ଅପରାହ୍ଣ ୩ଘ.୪୫ମି.ରୁ ୪ଘ.୧୫ମିନିଟ୍ ପର୍ଯ୍ୟନ୍ତ ବିଚାର ବିମର୍ଷ । ୪ଘ.୪୫ମି.ରେ ଟିକଟ ସଂଗ୍ରହ । ତା' ପରେ ୬ଘ.୧୫ମି. ପର୍ଯ୍ୟନ୍ତ ଧାଡ଼ିରେ ଦଣ୍ଡାୟମାନ ହେଲୁ । ଦକ୍ଷିଣ ଭାରତୀୟ ମନ୍ଦିରର ଧାଡ଼ି ଦର୍ଶନ ବ୍ୟବସ୍ଥା ଉପରେ ପୂର୍ବରୁ ଆମର ଆଶଙ୍କା ରହିଥିଲା ଏବଂ ସବୁ ମନ୍ଦିରରେ ଆମେ ଏହି ବ୍ୟବସ୍ଥାର ସମ୍ମୁଖୀନ ହୋଇ ଅପେକ୍ଷା କରୁଥିଲୁ । ତେଣୁ ଧାଡ଼ିରେ ଠିଆ ହୋଇ ଜୋତାଷ୍ଟାଣ୍ଡରେ ଜୋତା ରଖି ଟୋକେନ୍ ଫେରାଇ ଜୋତା ଫେରି ପାଇବା ସମୟ ସାପେକ୍ଷ ହେବ ବୋଲି ଭାବି ସୂକ୍ଷ୍ମ ବୁଦ୍ଧି ପ୍ରୟୋଗ କରି 'ହାତୀ ରାମଜୀ ମଠ' ନାମକ ଏକ ସ୍ଥାନକୁ ଚିହ୍ନ ରଖି ଏକ ଉଦ୍ୟାନର ପାଚେରୀ ପାର୍ଶ୍ୱରେ ବିଶେଷ ଜନଗହଳି ନ ଥିବା ସ୍ଥାନରେ ଜୋତା ରଖିଲୁ । ସେଠାରେ କେତେ ଗୁଡ଼ିଏ ଜୋତା ମଧ ଆଗରୁ ରଖାଯାଇଥିଲା । ପରେ ଦର୍ଶନ ସାରି ଫେରିଲା ବେଳକୁ ଆମ ଦଂପତିଙ୍କର ଜଣଙ୍କର ଲେଖାଏଁ ଚପଲ ନାହିଁ । ବାଲାଜୀ ପ୍ରଭୁଙ୍କର ଇଚ୍ଛା ଯୋଗୁଁ ମୋ ସ୍ୱାମୀ, ଶ୍ରୀମତୀ ସ୍ୱାଇଁ ଓ ଶ୍ରୀମତୀ ସାହୁଙ୍କୁ ନୂଆ ଜୋତା କିଣିବାକୁ ପଡ଼ିଥିଲା । ସେଠାରେ ମହିଳା ଜଣେ ଜୋତା ଗୁଡ଼ିକୁ ଓଲଟ ପାଲଟ କରି ପୁରୁଷ ଜଣକୁ ଇସାରା ଦେବାର ଦେଖିବାକୁ ପାଇଲୁ । ଭାବିଲୁ ସେହିମାନେ ହିଁ ବର୍ତ୍ତମାନ ଆମ ଜୋତାର ମାଲିକ ବନିଗଲେ । ଏ ବୃତ୍ତି ମଧ ମନ୍ଦ ନୁହେଁ । 'ପେଟ ପୋଷ, ନାହିଁ ଦୋଷ' ନୀତି ଏମାନଙ୍କ ପାଇଁ କାମ କରୁଛି । ସଂଧ୍ୟା ୬ଘ. ୧୫ମିନିଟ୍ ପର୍ଯ୍ୟନ୍ତ ଧାଡ଼ିରେ ଠିଆ ହୋଇଥିବା ସମୟରେ ପର୍ବତର ପାଦ ଦେଶରୁ ଆରମ୍ଭ କରି ମନ୍ଦିର ଶିଖର ପର୍ଯ୍ୟନ୍ତ ବିଦ୍ୟୁତ୍ ଆଲୋକରେ ଆଲୋକିତ ହୋଇସାରିଥିଲା । ଭିଡ଼ର ଠେଲାପେଲା ଭିତରେ ଚତୁର୍ଦ୍ଦିଗକୁ ଆଖି ବୁଲାଇଲା ବେଳକୁ ମନ୍ଦିର ବାହାରେ ଗୋଟିଏ

ସ୍ଥାନରେ ବିରାଟ ଦୋଳିରେ ବିଜେ ପ୍ରତିମାଙ୍କୁ ଝୁଲାଯାଉଥିବାର ଦୃଶ୍ୟ ଦେଖିଲୁ । ଆମେ ଏକ ପାର୍ଶ୍ୱରେ ରହିଥିଲୁ । ସମ୍ମୁଖ ଭାଗରେ ଏହି ମନୋମୁଗ୍ଧକର କାର୍ଯ୍ୟକ୍ରମର ଦର୍ଶନ ପାଇଁ ଅସଂଖ୍ୟ ଭକ୍ତଙ୍କ ଭିଡ଼ ଜମିଥିଲା । ସୁନ୍ଦର ସୁଲଳିତ କଣ୍ଠରେ ଭଜନ ଗାନ ମଧ୍ୟ ଶୁଭୁଥିଲା । ତା'ପରେ ପ୍ରତୀକ୍ଷାର ଅନ୍ତ ଘଟିଲା ବୋଲି ଭାବିଲୁ । ବିଜେ ବଖରା ନିକଟରେ ପ୍ରବେଶ ହେବା ସ୍ଥାନରେ ସର୍ବଦର୍ଶନ ଓ ଯେତେ ପଇସାର ଟିକଟ ଯାତ୍ରୀଙ୍କର ଦର୍ଶନ ସବୁ ଏକାଠି ହେବା ବ୍ୟବସ୍ଥା ରହିଛି । ତେଣୁ ଏଠାରେ ପରିସ୍ଥିତି ଅଣ ଆୟତ୍ତ । ଲଣ୍ଡିତ ମସ୍ତକ ଛୋଟ ଛୋଟ ପିଲାଙ୍କର ବିରକ୍ତିକର କାନ୍ଦ ପରିବେଶକୁ ସରଗରମ୍ କରୁଥିଲା । ପ୍ରବଳ ଜନ ସମାଗମ ଭିତରେ ଆମକୁ କେତେଜଣ ଠେଲିଲେ ଆମେ କେତେଜଣଙ୍କୁ ପେଲିଲୁ । ଅଣ ନିଃଶ୍ୱାସୀ ହୋଇ ଗଜରାଜ, ମୃଗୁଣୀ ଓ ଦ୍ରୌପଦୀଙ୍କ ଭଳି କାତର ପ୍ରାର୍ଥନା କରିବାକୁ ଲାଗିଲୁ । ଶାସ୍ତ୍ରରେ ଲିଖିତ - 'ପ୍ରୟାସ ଶେଷ ହେଲେ ପ୍ରାର୍ଥନା ଆରମ୍ଭ ହୁଏ' । ନିର୍ଜୀବ ଦ୍ୱାରପାଳମାନଙ୍କୁ ନିବେଦନ କଲୁ - ''ଅରେ ଦ୍ୱାରପାଲୋ ! କନ୍ହେୟାସେ କହ ଦୋ, କି ଦର ପେ ସୁଦାମା ଗରିବ ଆ ଗୟା ହୈ'' । ଆମର ମୂଢ଼ମତିର, ପ୍ରାର୍ଥନାର ପ୍ରଭାବ ହେଉ ଅବା ନିର୍ଜୀବ ଦ୍ୱାରପାଳଙ୍କ ସୂଚନା ଅନୁଯାୟୀ ହେଉ ଶ୍ରୀ ଶ୍ରୀ ବାଲାଜୀ ଦେବଙ୍କ ଦର୍ଶନର ସୁଯୋଗ ମିଳିଲା । ଆଖି ପୁରାଇ ଥରେ ଆପାଦ ମସ୍ତକ ଦେଖି ଭକ୍ତ ମାନଙ୍କର ଠେଲାପେଲାକୁ ଖାତିର ନ କରି ସନ୍ତୋଷଜନକ ଦର୍ଶନ ଲାଭ କଲୁ ଓ ବାହାରକୁ ଆସି ସ୍ୱଚ୍ଛନ୍ଦରେ ନିଃଶ୍ୱାସ ନେଲୁ । ଏକାଦଶୀରେ ''ଶୁକ୍ଳାମ୍ବରଧର ବିଷ୍ଣୁ ଶଶୀବର୍ଣ୍ଣଂ ଚତୁର୍ଭୁଜଂ''ଙ୍କର ଦର୍ଶନର ସଂକଳ୍ପ ପୂରଣ ହୋଇଯାଇଥିବାରୁ ଉଦ୍ୟୋକ୍ତା ଇସ୍କନ ବାବାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଇଲୁ । ତା' ପରେ ମାଗଣା ଲଡୁ ପ୍ରସାଦ ବିତରଣର ଧାଡ଼ି ଖୋଜିବାରେ ଲାଗିଲୁ । ଟ୩୦୦.୦୦ ବିନିମୟରେ ଦର୍ଶନ ଟିକଟ କରିଛୁ । ଯେତେ ଲମ୍ବା ଧାଡ଼ି ହେଲେ ମଧ୍ୟ ଟିକଟ ସହିତ ସଂଲଗ୍ନ ଚାରୋଟି ଲଡୁ ସଂଗ୍ରହ କରି ଫେରିବୁ ବୋଲି ମନେ ମନେ ଠିକ୍ କଲୁ । ପୁରୁଷମାନେ ଠିକଣା ବୁଝି ଲଡୁ ପାଇଁ ଆଗଭର ହେଲେ ଆମେ ମହିଳାମାନେ ଏକ ବାରଣ୍ଡାରେ ଅପେକ୍ଷା କଲୁ । ଅପେକ୍ଷା କରିଥିବା ସମୟରେ ଦୋଳିରେ ଝୁଲିଥିବା ବିଜେ ପ୍ରତିମାଙ୍କର ହାତୀ ପିଠିରେ ଭ୍ରମଣ କରିବା ଦୃଶ୍ୟ ଦର୍ଶନ କଲୁ । ତା'ପରେ ସମସ୍ତେ ଏକାଠି ହୋଇ ତଳକୁ ଓହ୍ଲାଇବା ପାଇଁ ବସ୍ ସଂଧାନରେ ବାହାରି ପଡ଼ିଲୁ । ସେତେବେଳକୁ ୭ଘ.୩୦ମି. ହୋଇସାରିଥାଏ । ବସ୍ ରହିବା ସ୍ଥାନର ଠିକଣା ଆମ ତୀର୍ଥ ଯାତ୍ରୀମାନେ ଓ ସ୍ଥାନୀୟ ଲୋକମାନେ ଭିନ୍ନ ଭିନ୍ନ ଭାବରେ କହୁଥାଆନ୍ତି । ତେଣୁ ୧ରୁ ୧.୧/୨କି.ମି. ଲକ୍ଷ୍ୟହୀନ ଭାବରେ ବୁଲିବା ପରେ ଶେଷରେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲୁ । ରାତି ବଢୁଥାଏ, ସବୁ ଯାତ୍ରୀ ତଳକୁ ଓହ୍ଲାଇବା

ପାଇଁ ବ୍ୟସ୍ତ । ବସ୍‌ଟିଏ ପହଞ୍ଚିଲେ ମାଡ଼୍ ପିଟ୍ ହୋଇ ଚଢ଼ିବାର ଦେଖାଯାଉଥିଲା । ଏହିଭଳି ୩/୪ଟି ବସ୍ ଛାଡ଼ିଲା ପରେ ଅତ୍ୟନ୍ତ କଷ୍ଟରେ ଗୋଟିଏ ବସ୍‌ରେ ଚଢ଼ିବା ସୁଯୋଗ ପାଇଲୁ । ସ୍ଥାନ ମଧ ପାଇଗଲୁ । ରାତ୍ରିକାଳୀନ ପାର୍ବତ୍ୟ ଦୃଶ୍ୟ ଓ ସହରୀ ସଭ୍ୟତାର ଆଲୋକସଜ୍ଜାର ସୌନ୍ଦର୍ଯ୍ୟ ଉପଭୋଗ କରୁ କରୁ ରାତି ୯ଘ.୩୦ମିରେ ଶ୍ରୀନିବାସ ଛକ ପହଞ୍ଚି ଯାଇଥିଲା । ବର୍ତ୍ତମାନ ମୁଖ୍ୟ ଚିନ୍ତା ଚପଲ କିଣା । ପାଖରେ ଚପଲ ଦୋକାନ ନଥିଲା । କିଛି ବାଟ ଗଲା ପରେ ଶ୍ରୀମତୀ ସ୍ୱାଇଁଙ୍କର ମନ ପସନ୍ଦ ଚପଲ ମିଳିଲା । କିନ୍ତୁ ଆମେ ଦୁହେଁ ଅଟୋରେ ଯିବା ଆସିବା ଟ୪୦.୦୦ ଭଡ଼ା ଦେଇ ମହାତ୍ମାଗାନ୍ଧି ବଜାରକୁ ଗଲୁ । ଅଟୋବାଲାର ପରିଚିତ ଦୋକାନରୁ ଆରାମଦାୟକ ଚପଲ ହଳେ କିଣି ଲଜ୍ ନିକଟକୁ ଫେରିଲୁ । ରାତ୍ରି ଭୋଜନ ପାଇଁ କିଛି ପାଚିଲା ଫଳ କିଣା କିଣି କରି ବସାକୁ ଫେରିଲୁ । ଶ୍ରୀମତୀ ସ୍ୱାଇଁ ସେ ଦିନ ଅସୁସ୍ଥ ଅନୁଭବ କରୁଥିବାରୁ ଶଙ୍ଖୋଳା ପଚାରା ପାଇଁ ତାଙ୍କ ରୁମକୁ ଗଲୁ । କଥାବାର୍ତ୍ତା ପରେ ପ୍ରସାଦ ନେଇଆସିଲୁ । ନିତ୍ୟକର୍ମ ପରେ ଫଳାହାର କରି ରାତ୍ରି ବିଶ୍ରାମ ନେଲୁ ।

### ତା. ୩୧.୦୧.୨୦୧୧, ସୋମବାର

ଦିନ ୧୧ଘ. ୩୦ମିନିଟରେ ପ୍ରସାଦ ସେବନ ପରେ ତିରୁପତି ସହରର ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଭ୍ରମଣରେ ବାହାରିଲୁ । ପ୍ରଥମେ ପହଞ୍ଚିଲୁ ଇସ୍କନ ମନ୍ଦିରରେ । ପୂର୍ବ ଦିନ ମନ୍ଦିର ସହ ପରିଚିତ ହୋଇଥିବାରୁ ବୁଲାବୁଲି କରି ଦେଖିବା ସୁବିଧା ହୋଇଥିଲା । ଦର୍ଶନ ଓ ମାଗଣା ଖେଚୁଡ଼ି ପ୍ରସାଦ ସେବନ ପରେ ପହଞ୍ଚିଲୁ କପିଳେଶ୍ୱର ମନ୍ଦିର ନିକଟରେ । ବିରାଟ ଆୟତନ ବିଶିଷ୍ଟ କପିଳେଶ୍ୱର ମନ୍ଦିର ବେଢ଼ାରେ (୧) ଅଭୟହସ୍ତ ବୀର ଆଞ୍ଜନେୟ ମନ୍ଦିର (୨) ୬୦୦ ବର୍ଷର ପୁରୁଣା ଲକ୍ଷ୍ମୀନାରାୟଣ ମନ୍ଦିର (୩) ଗଣେଶ ମନ୍ଦିର (୪) କପିଳେଶ୍ୱର ମନ୍ଦିର (୫) କାମାକ୍ଷା ଦେବୀ ମନ୍ଦିର (୬) ବେଣୁ ଗୋପାଳ ମନ୍ଦିର ଦର୍ଶନ କଲୁ । ଦିନ ୧ଘ.୩୦ମିନିଟରେ ପହଞ୍ଚିଲୁ କୋଦଣ୍ଡରାମ ମନ୍ଦିର ନିକଟରେ । ସେଠାରେ ପୂର୍ବରୁ କେବେ ଦେଖି ନଥିବା ପାର୍ଶ୍ୱ ଦେବତା ରୂପେ ପ୍ରତିଷ୍ଠିତ ବିଶ୍ୱକେଶନ ମନ୍ଦିର ଆଗ୍ରହରେ ଦେଖିଲୁ । ଅନ୍ୟ ପାର୍ଶ୍ୱ ଦେବଦେବୀ ଓ ରାମାନୁଜାଚାର୍ଯ୍ୟଙ୍କ ମନ୍ଦିର ଦର୍ଶନ ପରେ ଗୋବିନ୍ଦ ରାଜ ମନ୍ଦିର ଦିଗରେ ଅଗ୍ରସର ହେଲୁ । ''ଗୋବିନ୍ଦ, ଗୋବିନ୍ଦ, ଗୋବିନ୍ଦ ତହୁଁ ଝରୁଛି ମକରନ୍ଦ'' ! ଭାଗବତ ବାଣୀ ସ୍ମରଣ କରି ଶ୍ରୀ ଗୋବିନ୍ଦରାଜ ସ୍ୱାମୀଙ୍କ ପଦାବ୍ଜରୁ ମକରନ୍ଦ ପାନ କରି ପାର୍ଶ୍ୱରେ ଅବସ୍ଥାପିତ ପୁଣ୍ଡରିକାମ୍ମା ବାଲୀ ମନ୍ଦିର ଓ ଶ୍ରୀ ମହାଲକ୍ଷ୍ମୀ ଆମ୍ମା ମନ୍ଦିର ଦର୍ଶନ କଲୁ । ଏଠାରେ ସର୍ବ ଦର୍ଶନ ବ୍ୟବସ୍ଥା, ସାମାନ୍ୟ

ଭିଡ଼ ଜମି ଥିଲା । ତେଣୁ ପ୍ରତ୍ୟେକ ମନ୍ଦିରରେ ଦର୍ଶନ ନୟନମନକୁ ତୃପ୍ତ କରିଥିଲା । ତା'ପରେ ପହଞ୍ଚିଲୁ ରକ୍ମିଣୀ ସତ୍ୟଭାମା ମନ୍ଦିରରେ । ସେଠାରେ ପାର୍ଶ୍ୱ ଦେବତା ରୂପେ ପୂଜାପାଉଥିବା ପାର୍ଥସାରଥୀ ଓ ଅନ୍ଦାଲ ଆମ୍ମାଙ୍କୁ ଦର୍ଶନ କଲୁ । ତା'ପରେ ବସ୍ ଚାଲିଲା ବାଲାଜୀ ଶାଦୀ ମଣ୍ଡପମ୍ ଦିଗରେ । ବାଲାଜୀ ଶାଦୀ ମଣ୍ଡପମ୍‌ରେ ବାଲାଜୀ ଦେବଙ୍କର ବିରାଟ ପ୍ରସ୍ତର ମୂର୍ତ୍ତି ଦର୍ଶନର ସୌଭାଗ୍ୟ ଲାଭ କଲୁ । 'ଭାଗବତ କଥା' ପ୍ରବଚନରେ ଶୁଣିଥିବା ପଂକ୍ତି ମନେ ପକାଇ ବାଲାଜୀ ଦେବଙ୍କର ଚେହେରାର ଆପାଦ ମସ୍ତକରେ ବରବେଶର ସୌନ୍ଦର୍ଯ୍ୟ ଅନ୍ୱେଷଣ କଲୁ । ପଂକ୍ତିଟି ଏହିପରି -

''ମୈୟା ମେରା ଶରପେ
ଶେହରା ସଜା ଦୋ,
ଶେହରା ସଜାଦୋ
ମୋହେ ହଲଦୀ ଲଗାଦୋ
ମୋହେ ରାଧା ରାନୀକା ଦୁଲହା ବନାଦୋ'' ।

'କୃଷ୍ଣ ସ୍ତୁ ଭଗବାନ ସ୍ୱୟଂ' ବିଶ୍ୱାସରେ ଦୃଢ଼ୀଭୂତ ମୂଢ଼ ମନ ଆମର ଶାଦୀ ମଣ୍ଡପମ୍ ରେ ସ୍ଥାପିତ ବାଲାଜୀ ଦେବଙ୍କ ମୁଖ ମଣ୍ଡଳରେ ପ୍ରେମ ନିବେଦନର ନିଦର୍ଶନ ଲକ୍ଷ୍ୟ କରିଥିଲା । ଭାଗବତ କଥାବାଚକ ମାନଙ୍କର ସୁଲଳିତ କଣ୍ଠର ମଧୁର ମୂର୍ଚ୍ଛନା ସେହି ସମୟରେ ଆମ ମନକୁ ମଧ୍ୟ ରସାଣିତ କରିଥିଲା । ଚିତ୍ତଚୋର ନଟନାଗର ଦିନେ ମା'ଙ୍କୁ ପରା ଅଳି କରିଥିଲେ -

''ରାଧିକା ଗୋରୀ ସେ, ବିରଜକୀ ଛୋରୀ ସେ, କରଲେ ମେରା ବିହା'' ।

ପ୍ରେମ ଭକ୍ତି ପ୍ଲାବିତ ଭକ୍ତଗଣ ଡ୍ରାଇଭରଙ୍କ ଡ଼ାକରାରେ ବସ୍‌ରେ ଉଠିଲେ । ମନ୍ଦିର ଦର୍ଶନ କରିବା ସମୟରେ ଏଠାରେ ଏକ ଭିନ୍ନ ପ୍ରଜାତିର ମାଙ୍କଡ଼ ଦେଖିବାକୁ ମିଳିଥିଲା । ଏମାନେ ମଥୁରା, ଅଯୋଧ୍ୟାର ମାଙ୍କଡ଼ଙ୍କ ପରି ଆକ୍ରମଣକାରୀ ନୁହଁନ୍ତି, ଧାଡ଼ି ବାନ୍ଧି ସେମାନେ ବିଚରଣ କରୁଥିଲେ। ସେମାନଙ୍କର ଲାଞ୍ଜ ଏତେ ଲମ୍ବା ଥିଲା ଯେ ଚାଲିଲାବେଳେ ତଳେ ଘୋଷାରି ହୋଇଯାଉଥିଲା । ପରେ ବସ୍ ଅଟକିଲା ଅଗସ୍ତେଶ୍ୱର ସ୍ୱାମୀ ମହାଦେବ ମନ୍ଦିର ନିକଟରେ । ବାଲାଜୀ ଦେବଙ୍କ ବିବାହରେ ଯୋଗଦେବା ପରେ ଏଠାରେ କୈଳାସବାସୀ ମହାଦେବ ଆଶ୍ରମ ନିର୍ମାଣ କରି ବିଶ୍ରାମ ନେଇଥିଲେ ବୋଲି ଡ୍ରାଇଭର ବୁଝାଇଥିଲେ । ଏହି ସ୍ଥାନର ନାମ ''ମୁକୋଟୀ'' ବୋଲି ମଧ୍ୟ କହିଥିଲେ । ପାର୍ଶ୍ୱରେ ଏକ ବିରାଟକାୟ ପିତ୍ତଳ ଧାତୁ ନିର୍ମିତ ବିଘ୍ନ ବିନାଶକ ଶ୍ରୀ ଗଣେଶ ମୂର୍ତ୍ତି ଦର୍ଶନ କଲୁ । ଶେଷରେ ପଦ୍ମାବତୀ ଓରଫ ମାଙ୍ଗାମ୍ମା

ମନ୍ଦିରରେ ପହଞ୍ଚିଲୁ । ପଦ୍ମାବତୀ ଆମ୍ମନ ବୋଲି ମନ୍ଦିରର ସ୍ଥାନର ନାମ ତିରୁଚନ୍ନାର Tiruchannaur ବୋଲି ଲେଖାଥିବ ଦେଖିଲୁ । ଏଠାରେ ଟିକଟର ମୂଲ୍ୟ ଟ. ୪୦.୦୦ । ତରବରରେ ଟିକଟ କିଣି ଧାଡ଼ିରେ ଠିଆ ହେବା ପାଇଁ ଧାଇଁଲୁ । ମାତ୍ର ଅଧଘଣ୍ଟାଏ ଅପେକ୍ଷା କରିବା ପରେ ଜଗଜ୍ଜନନୀ ପଦ୍ମାବତୀ ମାଙ୍ଗାମ୍ମାଙ୍କ ଦର୍ଶନ ଲାଭ କଲୁ । ପୁରାଣ ଶାସ୍ତ୍ରାନୁଯାୟୀ ମା' ଆମର ଧନଦାତ୍ରୀ ଦେବୀ ଓ ତ୍ରିପତି ବାଲାଜୀ ଦେବ ଋଣ ଗ୍ରହୀତା ତେଣୁ ବିଭବଶାଳିନୀ ମା'ଙ୍କ ନିକଟରେ ମଧ ଭକ୍ତଙ୍କ ପାଇଁ କିଛି ବ୍ୟବସ୍ଥା ହୋଇଥିବା ଆଶା କରି ପ୍ରସ୍ଥାନ ପୂର୍ବରୁ ଟିକଟ ଓଲଟାଇଲା ବେଳକୁ ମାଗଣା ଚାରୋଟି ଲଡୁ ପ୍ରସାଦ ପ୍ରଦାନ ବିଷୟ ଲେଖାଯାଇଛି । ପୂର୍ବ ମନ୍ଦିରରେ ଦେଖିଥିବା ମାଙ୍କଡ଼ଙ୍କ ଭଳି ଆମ ଯାତ୍ରୀଗଣ ମାଙ୍କଡ଼ ଡ଼ିଆଁ କରି ପହଞ୍ଚିଲୁ ଲଡୁ ସଂଗ୍ରହ ଧାଡ଼ିରେ । ଧାଡ଼ିରେ ଠିଆ ହୋଇ କଥା ହେଲୁ । ବାବାଙ୍କର ଟ. ୩୦୦.୦୦ ରେ ୪ଟି ଲଡୁ । ମା'ଙ୍କର ଟ. ୪୦.୦୦ ରେ ୪ଟି ଲଡୁ । ଯେତେହେଲେ ମାଆ-ମାଆ । 'ପେଟ ଚିହ୍ନିବା ମାଆ ।' ମାଆର ତୁଳନା ନାହିଁ । ସେ ଦିନ ସାଇଟ୍ ସିନ୍ ଦର୍ଶନରେ ଯବନିକା ହେଲା । ଅଧିକାଂଶ ମନ୍ଦିରରେ ମାଗଣା ପ୍ରସାଦ ବିତରଣର ବ୍ୟବସ୍ଥା ଥିଲା । ମାଗିଆଣି ଅଯଥା ନଷ୍ଟ ନ କରିବା ପାଇଁ ଗୋଟିଏ ପତ୍ର ଠୋଲା ଆଣି ଆମେ ଦୁଇଜଣ ସେବନ କରୁଥିଲୁ, ତଥାପି ପେଟ ପୁରିଯାଇଥିଲା । ଖାଲି ଯାହା ଚା'ପାନର ଅବଶ୍ୟକତା ଥିଲା । ଆଜି ପର୍ଯ୍ୟନ୍ତ ସାଇଟ୍ ସିନ୍‌ରେ ନେଇଥିବା ଡ୍ରାଇଭରଙ୍କ ମଧ୍ୟରୁ ଏଠାକାର ଡ୍ରାଇଭର ଅତି ଉତ୍ତମ ଥିଲେ । ବସ୍ ନେଇ ପହଞ୍ଚାଇଲେ ରାଣୀଗୁଣ୍ଟା ଷ୍ଟେସନ୍‌ରେ । କାଚେଓ୍ଵାଡ଼ା ଏକ୍ସପ୍ରେସରେ ରାତି ୮ ଘ. ୧୫ମି. ରେ ଚଢ଼ିଲୁ । ଟ୍ରେନ୍‌ରେ ରାତ୍ରି ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ । ସୂଚନାଯୋଗ୍ୟ ଆମ ଓଡ଼ିଶା ରାସ୍ତା ଚାକୁଣ୍ଡି, କୃଷ୍ଣଚୂଡ଼ା ଓ ସୁନାରି ଫୁଲ ଗଛ ମଣ୍ଡିତ ଥିବା ସ୍ଥଳେ ଆନ୍ଧ୍ରପ୍ରଦେଶରେ ଫଳଛାୟା ସମନ୍ୱିତ ଅଶ୍ୱତ୍ଥ ଓ କୟାଁଗଛ ପୂର୍ଣ୍ଣ ।

### ତା. ୧୧.୦୨.୨୦୧୧, ମଙ୍ଗଳବାର

କୁର୍ନୁଲ ଷ୍ଟେସନ୍‌ରେ ରାତି ୩ ଘଣ୍ଟା ୩୦ ମି. ରେ ଓହ୍ଲାଇଲା ପରେ ଷ୍ଟେସନ୍‌ରେ ସ୍ନାନ ଶୌଚାଦି ଶେଷ କରି ନିର୍ଦ୍ଧାରିତ ବସ୍‌କୁ ଅପେକ୍ଷା କଲୁ । ୧୮୦ କି.ମି. ଦୂର ଶ୍ରୀଶୈଳମ୍ ଯାତ୍ରା ଉଦ୍ଦେଶ୍ୟରେ ଦୁଇଟି ବସ୍ ସକାଳ ୬ଟାରେ ଷ୍ଟେସନ୍‌ରୁ ବାହାରିଲା । ଗତ ୨୦୦୯ ମସିହାରେ ଗ୍ରୀଷ୍ମାବକାଶ ଅବସରରେ ଆମେ ହାଇଦ୍ରାବାଦରୁ ଶ୍ରୀଶୈଳମ୍ ଯାତ୍ରା କରିଥିଲୁ । ଏଥରେ କୁର୍ନଲରୁ ଯାତ୍ରାରମ୍ଭ କଲୁ । ହାଇଦ୍ରାବାଦରୁ ଶ୍ରୀଶୈଳମ୍‌ରେ ପହଞ୍ଚିବାକୁ ହେଲେ ନିଘଞ୍ଚ ନାଲକୋଣ୍ଡା ଜଙ୍ଗଲ,

କେତେଗୁଡ଼ିଏ ବାଘ ସଫାରୀ ଓ ଉଚ୍ଚ ପାର୍ବତ୍ୟ ରାସ୍ତା ଅତିକ୍ରମ କରିବାକୁ ହୁଏ । କ୍ରିଷ୍ଣା ନଦୀର ପ୍ରାକୃତିକ ଶୋଭା, ଅମାନିଆ ବଣ ଝରଣାର ଝିରିବା ଦୃଶ୍ୟ ଓ ସବୁଜ ବନାନୀର ସୌନ୍ଦର୍ଯ୍ୟ ଉପଭୋଗ କରି ହୁଏ । କୁର୍ନଲରୁ ଶ୍ରୀଶୈଳମ୍ ରାସ୍ତାରେ ପାର୍ବତ୍ୟ ରାସ୍ତା ସେତେ ଉଚ୍ଚ ନୁହେଁ ଓ ରାସ୍ତା ସାରା ଗାଁ, ସହର, ବସ୍ତି ଗଢ଼ି ଉଠିଛି । କେବଳ ଶ୍ରୀଶୈଳମ୍ ନିକଟବର୍ତ୍ତୀ କିଛି ରାସ୍ତା ଘଞ୍ଚ ଜଙ୍ଗଲ ପୂର୍ଣ୍ଣ । ଜଙ୍ଗଲରୁ ବାଉଁଶ, ଚନ୍ଦନ ଓ ଶାଳ ଗଛଗୁଡ଼ିକୁ ଚିହ୍ନଟ କରି ବଳରାମ ବାବା ସହରବାସୀ ତୀର୍ଥଯାତ୍ରୀମାନଙ୍କୁ ଦେଖାଉଥାନ୍ତି, ଯେଉଁମାନେ ଗ୍ରାମ ଓ ଜଙ୍ଗଲଠାରୁ ଦୂରରେ ରହି ଅଣ ନିଃଶ୍ୱାସୀ ହୋଇପଡୁଛନ୍ତି । ସେମାନେ ଦେଶୀ କୁକୁଡ଼ାଟିଏ ରାସ୍ତା ଉପରକୁ ଆସିଲେ 'ବଣ କୁକୁଡ଼ା' ବୋଲି ପାଟି କରୁଥାଆନ୍ତି । ପାର୍ବତ୍ୟ ରାସ୍ତା ଅତିକ୍ରମ କରି ଦିବା ୧ଘ. ୩୦ ମି.ରେ ବସ୍ ଶ୍ରୀଶୈଳମ୍ ଗେଷ୍ଟ ହାଉସ୍‌ରେ ପହଞ୍ଚିଲା । ନୂଆରେ ସହର ଗଢ଼ି ଉଠିଥିବା ସ୍ଥାନରେ ମନ୍ଦିର ନିକଟରେ "ବିଶାଖା ଶାରଦାପୀଠମ୍ ଶ୍ରୀଶୈଳମ୍ ଶାଖା- ଭକ୍ତ କୁଟୀର-୦୧"ର ଦ୍ୱିତୀୟ ମହଲାର ୨୦୬ ନମ୍ବର ରୁମ୍‌ରେ ଶ୍ରୀ ସ୍ୱାଇଁବାବୁ ଘର ଓ ଆମର ରହିବା ବ୍ୟବସ୍ଥା କରାଯାଇଥିଲା । ନବ ନିର୍ମିତ କୋଠରୀ ଗୁଡିକର ଖଟ, ଚେୟାର ଓ ଟେବୁଲ୍‌ର ଜରି ପ୍ୟାକ୍ ଅଧା ଅଧା ଖୋଲା ହୋଇଥାଏ । ଏଠାରେ ସ୍ଥାନାଭାବରୁ ଆମ ଯାତ୍ରୀମାନଙ୍କ ପାଇଁ "ଗୌରୀ ଲଜ୍"ନାମକ ଏକ ଲଜ୍‌ର ମଧ୍ୟ ବ୍ୟବସ୍ଥା ହୋଇଥିଲା । ସ୍ନାନ ଶୌଚ ପରେ ମୁଖ୍ୟ ଫାଟକ ନିକଟସ୍ଥ ମୁକ୍ତ ପ୍ରାଙ୍ଗଣରେ ପ୍ରସାଦ ସେବନ କରି ଅଧ ଘଣ୍ଟାଏ ବିଶ୍ରାମ ନେଲୁ । ତା'ପରେ ଜଗଦ୍‌ଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ନିରୂପିତ ଦ୍ୱିତୀୟ ଜ୍ୟୋତିର୍ଲିଙ୍ଗ ଶ୍ରୀ ଶ୍ରୀ ମଲ୍ଲିକାର୍ଜୁନ ସ୍ୱାମୀଙ୍କର ଦର୍ଶନ ପାଇଁ ବାହାରିଲୁ । ଟ. ୧୦୦.୦୦ ଟିକଟରେ ଧାଡ଼ିରେ ଠିଆହୋଇ ଶ୍ରୀ ମଲ୍ଲିକାର୍ଜୁନ ସ୍ୱାମୀ ଓ ମା' ଭ୍ରମରାମ୍ବା ଦେବୀ ମାତାଙ୍କ ସମ୍ମୁଖରେ ଭକ୍ତମାନଙ୍କ ଦ୍ୱାରା କରାଯାଇଥିବା 'କୁଙ୍କୁମ ପୂଜା'ର ବିଧି ବିଧାନ ସବୁ ଦର୍ଶନ କଲୁ । ବିସ୍ତୃତ ବେଢ଼ା ପରିକ୍ରମା ପରେ ବଜାରରୁ କିଛି ଉପହାର ସାମଗ୍ରୀ ଓ କ୍ୟାସେଟ୍ କିଣି ଘରମୁହାଁ ହେଲୁ । ଧର୍ମଶାଳାର ଦ୍ୱାରଦେଶରେ ଥିବା ଛୋଟ ଚା' ଦୋକାନରୁ ଚା'ପାନ ସମୟରେ କେତେଜଣ ତୀର୍ଥସାଥୀଙ୍କ ସହ ଆଳାପ ଆଲୋଚନା କଲୁ । ସଂଧ୍ୟା ୮ଟା ସମୟରେ ଧର୍ମଶାଳାରେ ପହଞ୍ଚିଲା ବେଳକୁ କେତେକ ଅସହିଷ୍ଣୁ ଯାତ୍ରୀଙ୍କ ମୁଖରୁ "ଆହୁରି ରେଷେଇ ସରିନି" ବୋଲି ପ୍ରଶ୍ନ କରିବା ଶୁଣିବାକୁ ମିଳୁଥିଲା । କିଛି ସମୟ ବିଶ୍ରାମ ପରେ ତଳକୁ ଓହ୍ଲାଇଲୁ । ସକାଳର ପଲଉ ପାଇଁ ପରିବା କଟା କାର୍ଯ୍ୟକ୍ରମରେ ରୋଷେଇଆ ପିଲା ଓ ସ୍ୱେଚ୍ଛାସେବୀ ଯାତ୍ରୀମାନଙ୍କୁ ଅଳ୍ପ ସମୟ ପାଇଁ ସହଯୋଗ କଲୁ । ରାତ୍ରି ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ ।

**ତା. ୦୨.୦୨.୨୦୧୧, ବୁଧବାର**

ଶ୍ରୀଶୈଳମ୍‌ର ସାଇଟ୍ ସିନ୍ ପୂର୍ବରୁ ଦେଖିଥିବାରୁ ଆମେ ଯିବା ପାଇଁ ମନ ବଳାଇଲୁ ନାହିଁ । ଏପରିକି ଠିକ୍ ସମୟରେ ବସ୍ ଛାଡ଼ିବା ପୂର୍ବରୁ ପହଞ୍ଚି ନ ପାରିବା ଭୟରେ (ଧାଡ଼ି ଦର୍ଶନ ଯୋଗୁଁ) ମନ୍ଦିର ମଧ୍ୟ ଯାଇପାରିଲୁ ନାହିଁ । ଗତ ଦୁଇ ବର୍ଷରେ ଶ୍ରୀଶୈଳମ୍ ପୀଠର ଅଭୂତପୂର୍ବ ଉନ୍ନତି ଲକ୍ଷ୍ୟ କଲୁ । ଗତ ୨୦୦୯ର ଯାତ୍ରା ସମୟରେ ରାସ୍ତାରେ ମଧ୍ୟାହ୍ନ ଭୋଜନ ଗ୍ରହଣ କରିଥିବା 'ଚେଞ୍ଚୁଲକ୍ଷ୍ମୀ ହୋଟେଲ ସଂସ୍ଥା' ଦ୍ୱାରା ଏଠାରେ ବିରାଟ ଆକର୍ଷଣୀୟ ପ୍ରମୋଦ ଉଦ୍ୟାନ (Park) ଓ ଉନ୍ନତମାନର ଆଧୁନିକ ଶୈଳୀର ହୋଟେଲ୍ ପ୍ରତିଷ୍ଠା ହୋଇଛି । ନିତ୍ୟକର୍ମ ଶେଷପରେ ସେହି ଶାରଦାପୀଠରେ ଅବସ୍ଥାପିତ 'ବନଦୁର୍ଗା'ଙ୍କର ପୂଜା ଆରତୀ ଦର୍ଶନ କଲୁ । ସେଠାରେ ପୀଠ ମଲିକଙ୍କ ସହ କଥାବାର୍ତ୍ତା ହେବାରୁ ଜଣାଗଲା ସେ ଗଂଜାମ ଜିଲ୍ଲା ଅନ୍ତର୍ଗତ ସୋରଳ ଗ୍ରାମ ସ୍ଥାୟୀ ବାସିନ୍ଦା । ସୋରଳ ବର୍ତ୍ତମାନ ରେଳ ମାନଚିତ୍ରରେ Surla Road ନାମରେ ପରିଚିତ । ମାଲିକ ଜଣକ କରୁଥିବାରୁ ସେମାନେ ଦୀର୍ଘ ଦିନରୁ ଗାଁ ଛାଡ଼ି ଆସିଛନ୍ତି, କିନ୍ତୁ ବର୍ତ୍ତମାନ ସୁଦ୍ଧା ସେମାନଙ୍କ ଦାଦାମାନେ ସେଠାରେ ରହୁଛନ୍ତି । ଏଠାରେ ମାଲିକ ଚିହ୍ନା ହୋଇଥିଲେ ମଧ୍ୟ ବ୍ୟବହାର ଅପ୍ରୀତିକର ଥିଲା । ଅନ୍ୟାନ୍ୟ ରହଣି ସ୍ଥାନରେ ଅପରିଚିତ ଲୋକଙ୍କ ଗହଣରେ ଆମେ ସବୁ ପ୍ରକାର ସାହାଯ୍ୟ, ସହଯୋଗ ଓ ସହାନୁଭୂତି ପାଇଥିଲୁ କିନ୍ତୁ ଏଠାରେ ଠିକ୍ ତା'ର ଓଲଟା । ଏହି ଓଡ଼ିଶାବାସୀ ମାଲିକ ସକାଳ ୮ଟାରେ କୋଠରୀ ଗୁଡ଼ିକର ବିଦ୍ୟୁତ୍ ସଂଯୋଗ ଛିନ୍ନ କରି ଦିଅନ୍ତି । ଯାତ୍ରୀମାନେ ଅଭିଯୋଗ କଲେ ମଧ୍ୟ ନୀରବ ରହନ୍ତି । ଅନୁଷ୍ଠାନର ସୌନ୍ଦର୍ଯ୍ୟ ବ୍ୟାଘାତ ହୋଇଯିବା ବାହାନା ଦେଖାଇ ବାରଣ୍ଡାରେ ଲୁଗା ଶୁଖାଇବାକୁ ବାରଣ କରନ୍ତି । ଭାବିଲୁ ବେଶି ଚିହ୍ନା ପରିଚୟ ଲୋକଙ୍କ ବୈରାଗ୍ୟ ବେଶି । ଅଧିକ କିଛି ପାଟିତୁଣ୍ଡ ନକରି ବିକଳ୍ପ ବ୍ୟବସ୍ଥା ଗ୍ରହଣ କଲୁ । ମଧ୍ୟାହ୍ନ ୧୨ଟା ସୁଦ୍ଧା ଶ୍ରୀଶୈଳମ୍ ଛାଡ଼ିବା ପାଇଁ ଇସ୍କନ ବାବାଙ୍କର କଡ଼ା ନିର୍ଦ୍ଦେଶ ଥାଏ । ପାହାଡ଼ିଆ ରାସ୍ତାରେ ସମୟେ ସମୟେ ସାମାନ୍ୟ ମରାମତି ଆବଶ୍ୟକ କରୁଥିବା ନିର୍ଦ୍ଧାରିତ ବସ୍‌ରେ ସୁରକ୍ଷିତ ଫେରିବା ବିଷୟ ନେଇ ବାବାମାନେ ଚିନ୍ତିତ ଜଣାପଡୁଥିଲେ । ରାତି ୧୨ଘଣ୍ଟା ୫୨ ମିନିଟ୍‌ରେ ରେଳ ସମୟ ହୋଇଥିଲେ ମଧ୍ୟ ସଂଧ୍ୟା ପୂର୍ବରୁ ଷ୍ଟେସନ୍‌ରେ ପହଞ୍ଚିଲେ ନିରାପଦ ବୋଲି ସବୁ ଯାତ୍ରୀମାନେ ଠିକ୍ କରି ତରବରରେ ପ୍ରସାଦ ସେବନ କରି ବସ୍‌ରେ ଚଢ଼ିଲେ କିନ୍ତୁ ଏଠାରେ ମଧ୍ୟ ପୂର୍ବ ଅଭ୍ୟାସର ପୁନରାବୃତ୍ତି ଘଟିଲା । କେତେ ଜଣ ଯାତ୍ରୀଙ୍କର ଦର୍ଶନ ଜନିତ ବିଳମ୍ବ ଯୋଗୁଁ ବସ୍ ଦିନ ୧ଘ. ୩୦ମି. ରେ ଶ୍ରୀଶୈଳମ୍ ଛାଡ଼ିଲା । ଗାଡ଼ିଗୁଡ଼ିକର ଅବସ୍ଥା ବିଷୟରେ ପଦେ କହିଲେ ସଂଦେହ ଦୂର ହେବ । ଡ୍ରାଇଭର ଓ ହେଲ୍‌ପର

ପିଲା ଗାଡ଼ିରେ ପାଣି ରଖିବା ବିଷୟ ଭାବୁ ନ ଥିଲେ । ଜଙ୍ଗଲ ରାସ୍ତା ମଝିରେ ପାଣି ଅଭାବରୁ ଗାଡ଼ି ଏପରି ଗରମ ହୋଇ ପଡ଼ିଲା ଯେ, ଗାଡ଼ି ଚଳାଇବା ପାଇଁ ଅକ୍ଷମ ହୋଇପଡ଼ିଲା । ଇଂଜିନ୍ ଥଣ୍ଡା ହେବାରୁ ଯାତ୍ରୀମାନଙ୍କର ପିଇବା ପାଣିରୁ ପାଣି ଢ଼ାଳି କିଛି ବାଟ ଚାଲିଲା । ତା'ପରେ ପୁଣି ସେଇ ଅବସ୍ଥା । ବହୁ ଖୋଜା ଖୋଜି କରି ହେଲ୍‌ପର ପିଲା ବାଲ୍‌ଟିଏ ପାଣି ଆଣିବାରୁ ଗାଡ଼ି ଚାଲିବା ସମ୍ଭବ ହେଲା । ଅନ୍ୟ ବସ୍‌ଟିର ଅବସ୍ଥା ତଥୈବଚ । ଡ୍ରାଇଭରମାନଙ୍କର ଦାୟିତ୍ୱହୀନତା ଉପରେ ଯାତ୍ରୀମାନଙ୍କର କଟୁ ମନ୍ତବ୍ୟ ଶୁଣି ସେମାନେ ଶୁଣି ନ ଶୁଣିଲାପରି ରହିଲେ । ରାତି ୮ଟାରେ କୁର୍ନଲ ଷ୍ଟେସନ୍‌ରେ ପହଞ୍ଚିଲୁ । ସେହି ସ୍ଥାନରେ ସାମାନ୍ୟ ଥଣ୍ଡା ଅନୁଭୂତ ହେଉଥିଲା । ଅପେକ୍ଷା କଲୁ ରାତି ଗୋଟାଏରେ ଆସିବା ଟ୍ରେନ୍‌କୁ । ସେ ଦିନ ରାତ୍ରି ପ୍ରସାଦ ପ୍ରସ୍ତୁତି ହୋଇପାରି ନଥିବାରୁ ଚୁଡ଼ା ଚିନିର ବ୍ୟବସ୍ଥା କରାଯାଇଥିଲା । ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ବିକଳ୍ପ ବନ୍ଦୋବସ୍ତ କରିଥିବା ଯୋଗୁଁ ଇସ୍କନ ବାବାଙ୍କୁ ସାଧୁବାଦ ଜଣାଇ ସାଦରେ ପ୍ରସାଦ ଗ୍ରହଣ କଲୁ । ସେଠାକାର ଛୋଟିଆ ଛୋଟିଆ ଚୋରମାନଙ୍କ ପ୍ରତି ସତର୍କ ରହିବାକୁ ବାବାମାନେ ବାରମ୍ବାର ଚେତାବନୀ ଦେଉଥିଲେ । କ୍ଳାନ୍ତି ମେଣ୍ଟାଇବା ପାଇଁ ପ୍ରଭୁ ପଦ୍ମଧରବାବା ଆମ ନିକଟରେ ଏକ ସିମେଣ୍ଟ୍ ଚେୟାରରେ ବସି ପ୍ରସାଦ ବଣ୍ଟନ ତଦାରଖ କରୁଥିବା ସମୟରେ ଏକ ମଦ୍ୟପ ଭିକାରୁଣୀର ମାତାଲ ଅବସ୍ଥାରେ ତଳେ ପଡ଼ିଯିବା ଖବରକୁ ବିବରଣୀରେ ଲିପିବଦ୍ଧ କରିବା ପାଇଁ ସୂଚନା ଦେଇଥିଲେ । ଦକ୍ଷିଣ ଭାରତ ତୀର୍ଥଯାତ୍ରାର ରେଳ ସମୟ ସାରଣୀରେ ଏହି ରାତିଟି ବିରକ୍ତିକର ଥିଲା । ରାତି ଗୋଟାଏ ପର୍ଯ୍ୟନ୍ତ ଟ୍ରେନ ଅପେକ୍ଷାରେ ରହିଲୁ । ଯଥା ସମୟରେ ଟ୍ରେନ୍‌ର ଆଗମନ ପରେ (କାଚେଗୁଡ଼ା ଯଶୱନ୍ତପୁର ଏକ୍ସପ୍ରେସ୍) ରେ ଉଠିଲୁ ଓ ପରଦିନ ସକାଳ ୬ଘ. ୨୦ମି. ଧର୍ମାଭରମ୍ ଷ୍ଟେସନ୍‌ରେ ପହଞ୍ଚିଲୁ । ଶ୍ରୀଶୈଳମ୍ ଫେରିବା ରାସ୍ତାରେ ପେଦ୍ଦ ଢୋର୍ନାଲା ଗ୍ରାମରେ ଶ୍ରୀ ଆୟାପ୍ପା ସ୍ୱାମୀ ମନ୍ଦିର ପରିଦର୍ଶନ କଲୁ ।

### ତା. ୦୩.୦୨.୨୦୧୧, ଗୁରୁବାର

ସକାଳ ୬ ଘଣ୍ଟା ୨୦ ମିନିଟ୍‌ରେ ଧର୍ମାଭରମ୍ ଷ୍ଟେସନ୍‌ରେ ପହଞ୍ଚିଲୁ । ଲଜ୍‌କୁ ପହଞ୍ଚିବା ପାଇଁ ବସ୍ ଅପେକ୍ଷାରେ ରହିଲୁ । ସେଠାରେ ଦୁଇଟି ଲଜ୍‌ର ବ୍ୟବସ୍ଥା ହୋଇଥିଲା । ଆମ ଉଦ୍ଦିଷ୍ଟ ଲଜ୍‌ର ନାଁ ହୋଟେଲ୍ ଚୈତନ୍ୟ ଇଣ୍ଟରନ୍ୟାସନାଲ୍, ଅନ୍ୟଟି ଧର୍ମାଭରମ୍ ଲଜ୍ । ନିର୍ଦ୍ଧାରିତ ଛୋଟ ବସ୍‌ରେ ୧ ଘଣ୍ଟାର ଯାତ୍ରାପରେ ହୋଟେଲ୍‌ରେ ପହଞ୍ଚିଲୁ । ଆମ ପାଇଁ ଦ୍ୱିତୀୟ ମହଲାର ୧୦୯ ନଂ ରୁମ୍‌ରେ ରହିବା

ବ୍ୟବସ୍ଥା କରାଯାଇଥିଲା । ସ୍ନାନାଦି ନିତ୍ୟକର୍ମ ସମାପନ ପରେ ନିକଟରେ ଥିବା ସାଇବାବାଙ୍କ ଆଶ୍ରମ 'ପ୍ରଶାନ୍ତି ନିଳୟମ୍' ଅଭିମୁଖେ ଯାତ୍ରା କଲୁ । ମୁଖ୍ୟ ଫାଟକରେ ଓଡ଼ିଶା ସେବାଦଳଙ୍କ ସହ ଦେଖାହେଲା । ସେମାନଙ୍କଠାରୁ ବାବାଙ୍କର ଦର୍ଶନ, ହୋଟେଲ୍ ଓ କେଣ୍ଟିନ୍ ସମୟ ଓ ସୁବିଧା ବିଷୟ ଅବଗତ ହେଲୁ । ମୁଖ୍ୟ ଫାଟକର ସମ୍ମୁଖଭାଗରେ ଅବସ୍ଥାପିତ ଅଗ୍ରପୂଜ୍ୟ ବିନାୟକଙ୍କର ଦର୍ଶନ କଲୁ । ଧର୍ମାଭରମ୍ ଲଜ୍‌ରେ ପ୍ରସାଦ ସେବନ ବ୍ୟବସ୍ଥା ହୋଇଥିବାରୁ ସେଠାରେ ପହଞ୍ଚି ପ୍ରସାଦ ସେବନ କଲୁ । ତା'ପରେ ଦିନ ୧୨ଟା ସମୟରେ ପୁଣି ସତ୍ୟସାଇବାବାଙ୍କର ଆଶ୍ରମକୁ ଫେରିଲୁ । ପୁରୁଷମାନଙ୍କର ଟେକାଟିଏ ଥୋଇ ଦର୍ଶନ ପାଇଁ ସ୍ଥାନ ସଂରକ୍ଷଣ ପଦ୍ଧତି ଥିବାରୁ ଆମ ତୀର୍ଥଯାତ୍ରୀମାନେ ପଥରଟିଏ ରଖି ବାରଣ୍ଡାରେ ବିଶ୍ରାମ ନେଲେ । ମହିଳାଙ୍କ ପାଇଁ ସେପରି କିଛି ବ୍ୟବସ୍ଥା ନାହିଁ । ଆମେ ବାବାଙ୍କର ପ୍ରାର୍ଥନା ମଣ୍ଡପର ସମ୍ମୁଖ ଭାଗରେ ଅପେକ୍ଷା କଲୁ । ଦିନ ୨ଟା ବେଳକୁ ପ୍ରାର୍ଥନା ମଣ୍ଡପର ନିକଟବର୍ତ୍ତୀ ସ୍ଥାନକୁ ଧାଡ଼ିରେ ବସିବା ପାଇଁ ଡ଼ାକରା ଦେଲା । ତା'ପରେ ଦିନ ୪ ଘ. ୩୦ମିନିଟ୍‌ରେ ମଣ୍ଡପର ବାରଣ୍ଡାରେ ପ୍ରତି ଧାଡ଼ିରେ ୩ ଜଣ ଲେଖାଏଁ ବସିବା ପାଇଁ ନିର୍ଦ୍ଦେଶ ମିଳିଲା । ଦୀର୍ଘ ସମୟ ବିତିଯାଇଥିଲା ଏବଂ ପୁଣି ରାତି ସାଢ଼େ ସାତ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ବୋଲି ଭାବି ଶୌଚାଳୟ ଅନ୍ୱେଷଣରେ ମୁଁ ଓ ଶ୍ରୀମତୀ ସ୍ୱାଇଁ ବାହାରିଲୁ । ଆମ ପଛେ ପଛେ ଭଲଭାବେ ଚାଲି ପାରୁ ନ ଥିବା ଢ଼େଙ୍କାନାଳ ମାଉସୀ ଚାଲିଲେ । ମାଉସୀଙ୍କର ପାଟି ଖାଇବା ପାଇଁ କେତେବେଳେ ବନ୍ଦ ନ ଥାଏ ଆଉ ସବୁ ବସ୍ ରହିବା ସ୍ଥାନରେ ତଳକୁ ଓହ୍ଲାଇ ପାଣି ଖୋଜିବା ଦେଖାଯାଏ । ସେ ସେଦିନ ଆମ ଭାଗ୍ୟରେ ଜୁଟିଗଲେ । ବହୁଲୋକଙ୍କୁ ବୁଝାବୁଝି କରି ଶେଷରେ ଜଣେ ସହୃଦୟ ବାଳକର ସାହାଯ୍ୟରେ ଛୋଟ ପର୍ବତ ଉପରେ ଥିବା ଶୌଚାଳୟରେ ଆମେ ପହଞ୍ଚିଲୁ । ମାଉସୀଙ୍କ ବିଳମ୍ବ ଯୋଗୁଁ ଆମେ ପୂର୍ବ ବସିବା ସ୍ଥାନ ହରାଇଲୁ ଓ ପଛରେ ବସିଲୁ । ଆମ ତୀର୍ଥଯାତ୍ରୀ ମାନଙ୍କର ଅଭଦ୍ର ଓ ଅଶାଳୀନ ଆଚରଣ ଯୋଗୁଁ ଓଡ଼ିଶା ସ୍ୱେଚ୍ଛାସେବୀ ଦଳ ନୀରବତା ରକ୍ଷା ଲାଗି ବୁଝାଉଥିଲେ । ତଥାପି ସେମାନେ ନ ବୁଝିବାରୁ କହୁଥିଲେ – ''ଆପଣମାନେ ଓଡ଼ିଆରେ କଥା ହେଉଛନ୍ତି ଆମେ ଓଡ଼ିଆରେ ବୁଝାଇଲେ ବୁଝୁନାହାଁନ୍ତି'' । ବାସ୍ତବିକ ଏହା ବଡ଼ ହାସ୍ୟାସ୍ପଦ ପ୍ରସଙ୍ଗ ଥିଲା । ସଂଧ୍ୟା ୫ଘ୩୦ମି.ରେ ପ୍ରାର୍ଥନା ମଣ୍ଡପ ଭିତରେ ଗୋଟିଏ ଦିଗରୁ ପୁରୁଷ ଓ ଅନ୍ୟ ଦିଗରୁ ମହିଳା ମାନଙ୍କର ଶୃଙ୍ଖଳିତ ଭାବେ ପ୍ରବେଶ କାର୍ଯ୍ୟକ୍ରମ ଚାଲିଲା । ସୂଚନା ଯୋଗ୍ୟ ଯେ ଏଠାରେ ଦର୍ଶନ, ଭୋଜନ ଓ ବଜାର ସବୁ ସ୍ଥାନରେ ପୁରୁଷ ଓ ମହିଳା ଧାଡ଼ି ଅଲଗା ଅଲଗା । ଏଠାରେ ମହିଳା ମାନଙ୍କର ଶାଢ଼ୀର ପଣତକାନି ଘୋଡ଼େଇବା ନିୟମ ରହିଛି । ଶାଢ଼ୀ ପିନ୍ କରିବା ନିଷେଧ କରାଯାଇଛି ।

ଠିକ୍ ସଂଧ୍ୟା ୬ଟାରେ ଆରମ୍ଭ ହେଲା ବେଦପାଠ । ସତ୍ୟସାଇ ଶିକ୍ଷାନୁଷ୍ଠାନର ୧୫/୧୬ ବର୍ଷର ଛାତ୍ରଗଣଙ୍କର ସୁମଧୁର, ସୁଲଳିତ ଓ ସୁସ୍ପଷ୍ଟ ବେଦଧ୍ୱନି ଦୂର କରିଦେଇଥିଲା । ମନ୍ତ୍ରୋଚ୍ଚାରଣର ପ୍ରଭାବ ମନକୁ ଅତୀତାଭିମୁଖୀ କରିଦେଲା । ନବମ ଶ୍ରେଣୀରେ ପଢ଼ିଥିବା ସ୍ୱଭାବ କବି ଗଂଗାଧର ମେହେରଙ୍କ ରଚିତ ''ଆଶ୍ରମେ ପ୍ରଭାତ'' କବିତାର ଦୁଇଧାଡ଼ି ମନେ ପଡ଼ିଗଲା ।

''ମୁନି - ମୁଖ ବେଦସ୍ୱନ ପୂର୍ଣ୍ଣକଲା ଶ୍ୟାମ ବନ
ଉଠିଲା ଭେଦି ଗଗନେ ଉଚ୍ଚ ଓଁକାର,
ବୈକୁଣ୍ଠେ ଦେଇ ତୃପତି ଅନନ୍ତ ଶ୍ରୁତିକି ଗତି
ବିହିଲା କି ସରସ୍ୱତୀ - ବୀଣା ଝଙ୍କାର
ବେଳୁ ବେଳ ବନ ଉଜ୍ଜ୍ୱଳ
ମନ୍ତ୍ର ବଳେ ଯେହ୍ନେ ବଢ଼ି ଆସିଲା ବଳ'' ।

''ବେଳୁ, ବେଳ ବନ ଉଜ୍ଜ୍ୱଳ'' ହେଲା ପରି ମନ୍ତ୍ରବଳରେ ଆମ କ୍ଳାନ୍ତ ଶରୀର ଓ ଅବସନ୍ନ ମନ ପ୍ରସନ୍ନ ହୋଇଗଲା । ସୂଚନାଯୋଗ୍ୟ ପୃଥିବୀର ସବୁ ଦେଶର ଲୋକଙ୍କର ସମାଗମ ସେଠାରେ ହୋଇଥିଲା । ବିଶେଷତଃ ଋଷୀୟ ମହିଳାମାନଙ୍କର ସଂଖ୍ୟା ଅଧିକ ଥିଲା । ସେମାନଙ୍କ ପକ୍ଷେ ହିନ୍ଦୀ ଓ ଇଂରାଜୀ ଉଭୟ ଭାଷା ଅବୋଧ ଥିବାରୁ ସେମାନଙ୍କ ନିକଟରେ ଥିବା ବହି ଯାହାକୁ ସେମାନେ ସେଦିନର ପ୍ରାର୍ଥନା ସହ ମିଶାଉଥିଲେ ତାହା ମାଗିବାରେ ଅସୁବିଧା ହେଲା । ତାଙ୍କର ବହି ଦେଖା ବନ୍ଦ ହେବାରୁ ଠାରି କରି ମାଗି ଦେଖିଲି । ବହିଟିର ନାମ 'ଶ୍ରୁତି', ସେଥିରେ ଗଣେଶ ସୂକ୍ତମ୍, ଶ୍ରୀସୂକ୍ତମ୍, ଭୂସୂକ୍ତମ, ପୁରୁଷ ସୂକ୍ତମ୍ ଭଳି ବେଦର ଅଂଶ ବିଶେଷ ରହିଛି । ଇଂରାଜୀ ଓ ହିନ୍ଦୀ ଅକ୍ଷରରେ ଉଚ୍ଚାରଣ ପଦ୍ଧତି ସହ ଲେଖା ହୋଇଛି । ସୁସ୍ପଷ୍ଟ ସୁନ୍ଦର ଅକ୍ଷର ଓ ସୁଲଭ ମୂଲ୍ୟ ବହିର ପ୍ରକାଶକ 'ସତ୍ୟସାଇ ଟ୍ରଷ୍ଟ' । ସକାଳୁ ବହି ଷ୍ଟଲରୁ କିଣିବା ପାଇଁ ଠିକ୍ କଲୁ । ବେଦପାଠ ପରେ ସଂଧ୍ୟା ୭ଟାରୁ ସତ୍ୟସାଇ ଭଜନ ଆରମ୍ଭ ହେଲା । ସେଦିନ ଥିଲା ବାବାଙ୍କର ଜନ୍ମବାର ଗୁରୁବାର । ୧ମଠାରୁ ୫ମ ଶ୍ରେଣୀ ପର୍ଯ୍ୟନ୍ତ ସ୍କୁଲ ପିଲାଙ୍କୁ ପ୍ରାର୍ଥନା ସଭାରେ ଯୋଗଦେବା ପାଇଁ ସୁଯୋଗ ମିଳିଥିଲା । ୧୯୮୫ ମସିହାରେ ଥରେ ତିନିଦିନ ବ୍ୟାପୀ ''ସତ୍ୟସାଇ ବାଳ ବିକାଶ ତାଲିମ'' ଯାଇ ମୋ' ମନରେ ବାବାଙ୍କର ଶିକ୍ଷାଦାନ ପଦ୍ଧତି ଉପରେ ବିଶେଷ ଆକର୍ଷଣ ରହିଥିଲା । ଗଣବେଶ (Uniform)ରେ ସେହି କଣ୍ଢେଇ ଭଳି ଦେଖାଯାଇଥିବା ଛାତ୍ରଛାତ୍ରୀଗଣଙ୍କର ସୁସଜ୍ଜିତ ଧାଡ଼ିରେ ନୀରବ ଉପବେଶନ ତଥା ମୁଣ୍ଡ ହଲାଇ ପ୍ରାର୍ଥନା

ଗାୟନ ଶୈଳୀ ଆମର ଅପେକ୍ଷା କଷ୍ଟକୁ ଲାଘବ କରିଦେଉଥିଲା। ପ୍ରାର୍ଥନା ମଣ୍ଡପର ପ୍ରବେଶ ଦ୍ୱାର ଫାଟକକୁ ୧୦ ହଜାର ଭକ୍ତଙ୍କ ସତୃଷ୍ଣ ଚାହାଣୀ ନଜରକୁ ଆସୁଥିଲା । ତା'ପରେଦାମୀ ବିଦେଶୀ କାର୍‌ଟିଏ ଫୁଲରେ ସଜା ହେବାର ଦେଖାଗଲା । ମଣ୍ଡପର ସମ୍ମୁଖ ବେଦୀରୁ ଗାଲିଚା ଗୁଡ଼ିକୁ ଉଠାଇ ଦିଆଗଲା । ସେବାଦଳର କର୍ମୀ ମାନଙ୍କଠାରୁ ବେଳେବେଳେ ନୈରାଶ୍ୟ ବାଣୀ ଶୁଣିବାକୁ ମିଳୁଥିଲା ''ବାବାଙ୍କ ଦେହ ସେତେ ଭଲ ରହୁନାହିଁ, ତେଣୁ ସେ ପ୍ରାୟ ଦର୍ଶନ ଦେବା ପାଇଁ ଆସୁ ନାହାଁନ୍ତି'' । ପ୍ରକାଶ ଥାଉ କି ଦକ୍ଷିଣ ଭାରତ ତୀର୍ଥଯାତ୍ରାର କାର୍ଯ୍ୟକ୍ରମରେ ପୁଟପର୍ତ୍ତି ଭ୍ରମଣ ବିଷୟରେ ଅବଗତ ହେବା ଦିନଠାରୁ ଆମର ଏକମାତ୍ର ଚିନ୍ତା ''ବାବାଙ୍କର ଦର୍ଶନ ପାଇପାରିବା ତ'' ! କାରଣ ମନ୍ଦିରରେ ଠାକୁରଙ୍କ ଦର୍ଶନର ନିର୍ଦ୍ଦିଷ୍ଟ ସମୟ ସାରଣୀ ଥାଏ ହେଲେ ବାବା ତ ଜୀବନ୍ତ ଠାକୁର, ସେ ଇଚ୍ଛା କଲେ ଦର୍ଶନ ଦେଇପାରନ୍ତି, କିଛି ଅସୁବିଧା ହେଲେ ଭକ୍ତଗଣଙ୍କୁ ଦର୍ଶନରୁ ବଞ୍ଚିତ କରିପାରନ୍ତି। ଅପେକ୍ଷାର ସମୟ ମଧ୍ୟାହ୍ନ ୧୨ଟାରୁ ସଂଧ୍ୟା ୭ଟା ବାଜିଲା । ବାବା କ'ଣ ସତରେ ନିରାଶ କରିଦେବେ । ଯଦିଓ ଆମେ ଏ ପର୍ଯ୍ୟନ୍ତ ସାଇ-ଶିଷ୍ୟ ହୋଇନାହୁଁ ତଥାପି କୋଟି କୋଟି ଲୋକଙ୍କର ଶ୍ରଦ୍ଧା ଓ ବିଶ୍ୱାସର ଯୁଗପୁରୁଷଙ୍କ ଚରଣରେ ଆମେ ପୂର୍ଣ୍ଣମାତ୍ରାରେ ଆନ୍ତରିକ ଶ୍ରଦ୍ଧା ଓ ବିଶ୍ୱାସ ରଖିଛୁ । କୋଟି କୋଟି ମସ୍ତକ ଯାହାଙ୍କ ପଦରଜ ପାଇବା ପାଇଁ ବ୍ୟାକୁଳ ଆମେ କିବା ଛାର ମଣିଷ ! ତେଣୁ ସେହି ବେଳାର ଏକମାତ୍ର ଅଭୀଷ୍ଟ ଦେବ ସାଇବାବାଙ୍କର ଉଦ୍ଦେଶ୍ୟରେ ଆକୁଳ ପ୍ରାର୍ଥନା ଜଣାଇଲୁ । ସେଥିରେ ମଧ୍ୟ ଏକ ଆତ୍ମ ଗର୍ବ ଭରି ରହିଥିଲା । ଗାଁକୁ ଗଲେ ଜଣାଇବୁ ଦେହ ଅସୁସ୍ଥ  ସତ୍ତ୍ୱେ ବାବା ଆମକୁ ଦର୍ଶନ ଦେଲେ । ସବୁ ପ୍ରତୀକ୍ଷାର ଅନ୍ତ ପରେ ଠିକ୍ ସାଢ଼େ ୭ଟାରେ ବାବାଙ୍କର ଶୁଭ ଆଗମନ ହେଲା । କାର୍‌ରେ ହ୍ୱିଲ୍ ଚେୟାର୍‌ରେ ବସି ବାବା ଆମ ପାର୍ଶ୍ୱ ଦେଇ ଅତିକ୍ରମ କଲେ । ବହୁ ସମୟ ପୂର୍ବରୁ ଆମେ ଅପେକ୍ଷା କରିଥିବାରୁ ପ୍ରଥମ ଧାଡ଼ିରେ ବସିବା ସୁଯୋଗ ପୁରୁଷମାନେ ପାଇଥିଲେ ଆମେ ଦ୍ୱିତୀୟ ଧାଡ଼ିରେ।  ଆମର ପ୍ରଥମ ଧାଡ଼ିରେ ବିଦେଶିନୀମାନେ ବସିଥିଲେ । ବାବା ସମଗ୍ର ପ୍ରାର୍ଥନା ମଣ୍ଡପକୁ ପ୍ରଦକ୍ଷିଣ କରି ପୂଜା ମଣ୍ଡପରେ ପ୍ରବେଶ କଲେ । ରାସ୍ତାରେ ଗଲାବେଳେ ବାବା ଭକ୍ତମାନଙ୍କ ଉଦ୍ଦେଶ୍ୟରେ ବିଭୂତି ପୁଡ଼ିଆ ବଣ୍ଟନ କରୁଥାଆନ୍ତି । ହ୍ୱିଲ୍ ଚେୟାରରୁ କାର୍ ଭିତରୁ ଓହ୍ଲାଇଲା ପରେ ବାବାଙ୍କର ଭଜନ ଚାଲିଲା । ଫଟୋରେ ଯେପରି ବାବାଙ୍କୁ ଦେଖିଥିଲୁ, ତା'ଠାରୁ ବାବାଙ୍କର ସ୍ୱାସ୍ଥ୍ୟ ଦୁର୍ବଳ ଥିଲା ଭଳି ଜଣାପଡୁଥିଲା । କିନ୍ତୁ ବାବା ବଡ଼ ସକ୍ରିୟ ଓ ଫୁର୍ତ୍ତି ଥିଲା ଭଳି ଜଣାପଡୁଥିଲେ । ଦୁର୍ବଳ ହାତ ଦୁଇଟିକୁ ହଲାଇ ଭକ୍ତମାନଙ୍କୁ ଅଭିବାଦନ ଜଣାଉଥିଲେ ଓ ଭଜନର ତାଳ ସହ ହାତରେ ତାଳ ମିଶାଉଥିଲେ । ଭାଗ୍ୟବାନ ଭକ୍ତ

କେତେ ଜଣ ବାବାଙ୍କର ଆରତୀ କଲେ । ତା'ପରେ ବଡ଼ ବଡ଼ ଷ୍ଟିଲ୍ ବେସିନ୍‌ରେ ଭୋଗ ଆଣି ବାବାଙ୍କ କର ସ୍ପର୍ଶ ପରେ ଭକ୍ତମାନଙ୍କ ମଧ୍ୟରେ ବିତରଣ କାର୍ଯ୍ୟକ୍ରମ ଆରମ୍ଭ ହେଲା । ବିସ୍ମୟର ବିଷୟ ସମୁଦାୟ ୧୦/୧୨ ହଜାର ଭକ୍ତଙ୍କ ମଧ୍ୟରେ ପ୍ରସାଦ ବିତରଣ ସମୟରେ ନୀରବତା ବିରାଜମାନ କରୁଥିଲା । ପରେ ଆମେ ତୀର୍ଥଯାତ୍ରୀମାନେ ଆଲୋଚନା କଲୁ ଆମେ ୧୨୦ଜଣ ତୀର୍ଥଯାତ୍ରୀ ଭୋଜନ ପରିବେଷଣ ସମୟରେ ପାଟିତୁଣ୍ଡ, ହୋ-ହଲ୍ଲା, ମାନ-ଅଭିମାନରେ ବାତାବରଣକୁ ସରଗରମ୍ କରିଦେଉଛୁ । କିନ୍ତୁ ପ୍ରାର୍ଥନା ସଭାରେ ୧୨,୦୦୦ ଲୋକଙ୍କ ମଧ୍ୟରେ ପ୍ରସାଦ ବଣ୍ଟନ ସମୟରେ ଅପୂର୍ବ ଶାନ୍ତି ପରିଲକ୍ଷିତ ହେଉଥିଲା । ଏସବୁ ଧାମର ମାହାତ୍ମ୍ୟ, ବାସ୍ତବିକ ପ୍ରଶାନ୍ତି ନିଳୟମ୍‌ର ବାତାବରଣ ସତରେ ପ୍ରଶାନ୍ତ । ବାବାଙ୍କ ପ୍ରାର୍ଥନା ମଣ୍ଡପକୁ ଆଗମନ ଓ ପ୍ରସ୍ଥାନ ରାସ୍ତା ଅଲଗା ଅଲଗା ଥିଲା ଯାହାଫଳରେ ପ୍ରତ୍ୟେକ ଭକ୍ତ ବାବାଙ୍କୁ ନିକଟରୁ ଦେଖିବା ସୁଯୋଗ ପାଇପାରିବେ । ବାବାଙ୍କ ପ୍ରସ୍ଥାନ ପରେ ନୀରବରେ ପ୍ରାର୍ଥନା ଗୃହ ଶୂନ୍ୟ ହେବାକୁ ଲାଗିଲା । ଆମେ ବାହାରେ ପୁରୁଷମାନଙ୍କ ସହ ମିଶି ଏକାଠି ହୋଇ ଧର୍ମାଭରମ୍ ଲଜ୍‌କୁ ପ୍ରସାଦ ଗ୍ରହଣ ଉଦ୍ଦେଶ୍ୟରେ ବାହାରିଲୁ । ଭଂଜନଗର ବାସିନ୍ଦା ଜଣେ ତୀର୍ଥଯାତ୍ରୀଙ୍କୁ ମିଶିଲୁ । ତାଙ୍କ ପୁଅ ସାଇବାବାଙ୍କ କଲେଜରେ ଅଧ୍ୟାପକ ଅଛନ୍ତି । ସେ ମନ୍ତବ୍ୟ ଦେଲେ "ଓଡ଼ିଶାବାସୀଙ୍କ ଭାଗ୍ୟ । ଗତ ତିନି ଦିନ ହେଲା ବାବା ଦର୍ଶନ ଦେବା ଉଦ୍ଦେଶ୍ୟରେ ଆସି ନାହାଁନ୍ତି ଓ ପ୍ରସାଦ ମଧ୍ୟ ସବୁ ଗୁରୁବାରରେ ବଣ୍ଟା ଯାଏ ନାହିଁ"। ଯାହାହେଉ ଆମ୍ଭମାନଙ୍କର ସୌଭାଗ୍ୟରୁ ଏହା ପ୍ରାପ୍ତ ହେଲା । ପ୍ରସାଦ ପ୍ୟାକେଟ୍‌ରେ ଗରମ ଗରମ କାକରା ଭଳି ଦୁଇଟି ପିଠା ରହିଥିଲା । ନୟନ ମନ ତୃପ୍ତ ଦର୍ଶନରେ ସନ୍ତୋଷ ଲାଭ କରିଥିବା ବିଷୟ ନେଇ ପ୍ରସାଦ ସେବନ ସମୟରେ ଆଲୋଚନା କଲୁ । ସକାଳ ୮ଘଣ୍ଟାରେ ଖୋଲା ହେବାକୁ ଥିବା ମହିଳା ବଜାରକୁ ଯିବା ବିଷୟ ଠିକ୍ କଲୁ ଓ ଲଜ୍‌କୁ ଫେରି ବିଶ୍ରାମ ନେଲୁ ।

### ତା ୦୪.୦୨.୨୦୧୧, ଶୁକ୍ରବାର

ଗତ ରାତିରେ ପ୍ରସାଦ ସେବନ ସମୟରେ ପଦ୍ମଧର ବାବାଙ୍କର ନିର୍ଦ୍ଦେଶ ଥାଏ ରୁମ୍ ସକାଳ ୧୦ଟାରେ ଛାଡ଼ି ବାରଣ୍ଡାରେ ଜିନିଷ ଥୋଇ ପ୍ରସାଦ ସେବନ ପରେ ଦିନ ୧୨ଟାରେ ପୁଟ୍ଟପର୍ତ୍ତି ଛାଡ଼ିବା ପାଇଁ । ତେଣୁ ସ୍ୱାଇଁ ବାବୁ ଓ ଆମେ ଠିକ୍ କଲୁ ସକାଳ ୭ଟାରେ 'ପ୍ରଶାନ୍ତି ନିଳୟମ୍' କ୍ୟାଣ୍ଟିନ୍‌ରୁ ଟ୮.୦୦ ଟିକଟରେ ଜଳଖିଆ (ଟ୨.୦୦ରେ ଦୁଇଟି ଇଡ଼ଲି, ଟ୨.୦୦ ଦୁଇଟି ବରା ଓ ଟ୨.୦୦ରେ ଉପମା ଟ୨.୦୦ରେ ୧.୧/୨ କପ୍ ଚା) ଖାଇ ୮ଟା ସମୟରେ ବଜାର କରି ବସାକୁ

ଫେରିବା । ଧାଡ଼ିରେ ଠିଆ ହୋଇ ଜଳଖିଆ ଟିକଟ ସଂଗ୍ରହ ଓ ଧାଡ଼ିରେ ଠିଆ ହୋଇ ଭୋଜନାଳୟରେ ପ୍ରବେଶ ପରେ ସ୍ୱାଦିଷ୍ଟ ଜଳଖିଆ ଟିକଟ ସଂଗ୍ରହ ଓ ଧାଡ଼ିରେ ଠିଆ ହୋଇ ଭୋଜନାଳୟରେ ପ୍ରବେଶ ପରେ ସ୍ୱାଦିଷ୍ଟ ଜଳଖିଆ ଗ୍ରହଣ କଲୁ । ତା'ପରେ ଦୌଡ଼ିଲୁ ବଜାର ଅଭିମୁଖେ । ଆମେ ଦୁଇଜଣଯାକ ମହିଳା ବଜାର କରିବାରେ ସଂପୂର୍ଣ୍ଣଅନଭିଜ୍ଞ ତଥାପି ସାଇବାବାଙ୍କର ନାମ ସ୍ମରଣ କରି ବୀର ଦର୍ପରେ ବଜାରରେ ପ୍ରବେଶ କଲୁ । କିଛି କିଛି ଜିନିଷ କିଣାକିଣି କରି ବିଲ୍ କାଟିବା ପାଇଁ ଧାଡ଼ିରେ ଠିଆ ହୋଇ ବାହାରକୁ ବାହାରିଲା ବେଳକୁ ସାଢ଼େ ଦଶ । ପୁରୁଷମାନେ ଅପେକ୍ଷା କରି ଓ ନିର୍ଦ୍ଧାରିତ ସମୟ ଅତିବାହିତ ହୋଇଯାଇଥିବାରୁ ବ୍ୟସ୍ତ ଜଣାପଡୁଥିଲେ । ତରବର ହୋଇ ଲଜ୍‌ରେ ପହଞ୍ଚି ଜିନିଷ ବାହାର କରି ରୁମ୍ ଚାବି ହସ୍ତାନ୍ତର କରି ପ୍ରସାଦ ସେବନ ଉଦ୍ଦେଶ୍ୟରେ ବାହାରିଲୁ । ପ୍ରସାଦ ସେବନ ପରେ ପୁଣି ଲଜ୍‌କୁ ଆସି ବସ୍‌ରେ ଜିନିଷ ଲଦି ପ୍ରଶାନ୍ତି ନିଳୟମ୍‌କୁ ଓ 'ପ୍ରଶାନ୍ତି ନିଳୟମ୍'ର ଅଧିଷ୍ଠିତ ଦେବ ଶ୍ରୀ ସତ୍ୟସାଇ ବାବାଙ୍କୁ ପ୍ରଣାମ ଜଣାଇ ପୁଟପର୍ତ୍ତି ତ୍ୟାଗ କଲୁ । ରାସ୍ତାରେ ବାବାଙ୍କର ବିଭିନ୍ନ ଶିକ୍ଷାନୁଷ୍ଠାନ ଯଥା:- ପ୍ରଥମ ଶ୍ରେଣୀ ଠାରୁ ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ, ଧନ୍ଦାମୂଳକ ଓ ବୃତ୍ତିମୂଳକ ଶିକ୍ଷାନୁଷ୍ଠାନ, ସଂଗୀତ ମହାବିଦ୍ୟାଳୟର ବିରାଟ ବିରାଟ ସୌଧଗୁଡ଼ିକ ପରିଲକ୍ଷିତ ହେଲା । ସମୟ ଅଭାବରୁ ବାବାଙ୍କର ଜେନେରାଲ ହସ୍‌ପିଟାଲ୍ ଭ୍ରମଣ ସୁଯୋଗରୁ ବଞ୍ଚିତ ହେଲୁ । ଗତକାଲି ସାଇଟ୍ ସିନ୍‌ରେ ଯାଇ ଆମ ଯାତ୍ରୀଗଣ ପୁଟପର୍ତ୍ତିର ଅନ୍ୟ ମନ୍ଦିର ଦର୍ଶନ କରିଥିଲେ ତେଣୁ ସେମାନେ ରାସ୍ତାରେ ଦେଖାଯାଉଥିବା ମନ୍ଦିର ଗୁଡ଼ିକର ପରିଚୟ ପ୍ରଦାନ କରୁଥାଆନ୍ତି । ରାସ୍ତାର ଉଭୟ ପାର୍ଶ୍ୱରେ ଜଳସେଚିତ ଜମିରେ ସବୁଜ ଧାନ କ୍ଷେତକୁ ଦେଖି ଆନ୍ଧ୍ର ସରକାରଙ୍କର ଚାଷୀ ସହାୟତା ନୀତିକୁ ପ୍ରଶଂସା କଲୁ । ଦିନ ୩ଟାରେ ଧର୍ମାଭରମ୍ ଷ୍ଟେସନରେ ପହଞ୍ଚିଲୁ । ଧର୍ମାଭରମ୍ ଏକ ପରିଷ୍କାର ପରିଚ୍ଛନ୍ନ ଛୋଟ ଷ୍ଟେସନ । ଚା'ପାନ, ତରଭୁଜ, କଦଳୀ, ପିଜୁଳି ଭଳି ଫଳ ଓ ଗରମାଗରମ ଛଣାଭଜାର ବ୍ୟବସ୍ଥା ଥିଲା । ନିଜ ରୁଚି ଅନୁସାରେ ଯାତ୍ରୀମାନେ ଥଣ୍ଡା ଓ ଗରମ ଖାଦ୍ୟର ମଜା ଉଠେଇଲେ । ସଂଧ୍ୟା ୬ଟାରେ ପ୍ରଶାନ୍ତି ଏକ୍ସପ୍ରେସ୍‌ରେ ବିଶାଖାପାଟଣା ଅଭିମୁଖେ ଯାତ୍ରା କଲୁ । ଧର୍ମାଭରମ୍ ଷ୍ଟେସନରୁ ଗାଡ଼ି ଛାଡ଼ିବାର ଅଧଘଣ୍ଟାଏ ପରେ ଅନନ୍ତପୁର ଷ୍ଟେସନରେ ମଦନ ବାବା ଆମ ବଗିରେ ଉଠିଲେ । ସେହି ମହାଶୟ ଅନନ୍ତପୁର ଇସ୍କନ ମନ୍ଦିର ପରିଦର୍ଶନରେ କିଛି ସମୟ ପୂର୍ବରୁ ଯାଇଥିଲେ । ବାବାଙ୍କ ସହ କଥାବାର୍ତ୍ତା ପରେ ଅନନ୍ତପୁର ଇସ୍କନ ମନ୍ଦିର ତରଫରୁ ମୁଦ୍ରିତ ରାଧାକୃଷ୍ଣ ଯୁଗଳ ସରକାରଙ୍କର ମୂର୍ତ୍ତି ଥିବା ୨୦୧୧ର କ୍ୟାଲେଣ୍ଡରଟିଏ

ମୋର ହାତକୁ ବଢ଼ାଇଦେଲେ ଘରକୁ ନେବା ପାଇଁ । ଆନ୍ତରିକ କୃତଜ୍ଞତା ଜଣାଇ ପ୍ରଣିପାତ ହୋଇ ବାବାଙ୍କଠାରୁ ଛବି ସଂଗ୍ରହ କରି ନିଜକୁ ଭାଗ୍ୟବାନ ମନେ କଲୁ । ଉଲ୍ଲେଖଯୋଗ୍ୟ ଯେ ଅନ୍ୟ କେତୋଟି ଛୋଟ ଛୋଟ ପ୍ରତିଛବି ବାବା ଅନ୍ୟ ଯାତ୍ରୀମାନଙ୍କୁ ଦେଖିବାକୁ ଦେଇଥିଲେ ଓ ପରେ ସେମାନଙ୍କଠାରୁ ସଂଗ୍ରହ କରିନେଲେ । ଆମେ କାଳେ କିଏ ଦେଖିବା ବାହାନାରେ ମାଗିଦେବ ବୋଲି ସ୍ୱାର୍ଥପର ହୋଇ ନିଜେ ମଧ୍ୟ ଭଲ ଭାବେ ନ ଦେଖି ବ୍ୟାଗ୍‌ରେ ପୁରାଇ ନେଲୁ । ଯାତ୍ରା ସମୟରେ ପୂର୍ବଦିନ ମାନଙ୍କରେ ଗୁରୁଭାୟୁର, ରାମେଶ୍ୱରମ୍ ଇତ୍ୟାଦି ସ୍ଥାନ ମାନଙ୍କରେ ଆମ ଅଞ୍ଚଳରେ ମିଳୁ ନଥିବା ଠାକୁରଙ୍କ ଛବି ସମ୍ବଳିତ ଫଟୋଚିତ୍ର ଦେଖାଦେଖି କରି ପସନ୍ଦ କରି ମଧ୍ୟ ଅକ୍ଷମତା ଦୃଷ୍ଟିରୁ ଆଣିପାରି ନଥିଲୁ । ଭାବଗ୍ରାହୀ ଭଗବାନ ବାବାଙ୍କ ମାଧ୍ୟମରେ ଆମ ହାତରେ ସ୍ୱୟଂ ଧରାଦେଲେ । ସ୍ୱ-ଇଚ୍ଛାରେ ଆମ ପାଖକୁ ଆସିଥିବା ଠାକୁରଙ୍କୁ ଆମେ ଆଣିବୁ କେମିତି ? ଆଉ ଦୁଇଦିନର ରାସ୍ତା, ଅତିକମ୍‌ରେ ୧୦ଥର ଓହ୍ଲାଇବା ଚଢ଼ିବା କାର୍ଯ୍ୟକ୍ରମ ରହିଛି । ଇଚ୍ଛାମୟଙ୍କ ଇଚ୍ଛାକୁ ସମ୍ମାନ ଜଣାଇ ଅତି ଯତ୍ନରେ ଆଣିଲୁ ଓ ଅକ୍ଷତ ଅବସ୍ଥାରେ ଆସି ସୁନ୍ଦର, ସୁଲଳିତ ଯୁଗଳ ମୂର୍ତ୍ତି ଆମ ଗୃହ ମଣ୍ଡନ କଲେ । ରାତିରେ ଟ୍ରେନ୍‌ରେ ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ ।

***ତା. ୦୫.୦୨.୨୦୧୧, ଶନିବାର***

ଦକ୍ଷିଣ ଭାରତ ତୀର୍ଥଯାତ୍ରାର ଦୀର୍ଘତମ ରେଳଯାତ୍ରା ଧର୍ମାଭରମ୍ ଠାରୁ ବିଶାଖାପାଟଣା । ସଂଧ୍ୟା ୬ଘ.୫୦ମି.ରୁ ପରଦିନ ଅପରାହ୍ଣ ୧ଘ.୧୫ମି. ପର୍ଯ୍ୟନ୍ତ । ରେଳରେ ନିତ୍ୟକର୍ମ ସାରି ଜଳଖିଆ ସେବନ ପରେ ବିଦାୟ ବେଳା ପାଖେଇ ଆସୁଥିବାରୁ ମଜା ମଜଲିସ୍‌ରେ କଟାଇ ଦିନ ୧ଘ.୧୫ମି.ରେ ବିଶାଖାପାଟଣା ଷ୍ଟେସନରେ ପହଞ୍ଚିଲୁ । ଅଟୋ ଯୋଗେ ଆମ ପାଇଁ ନିର୍ଦ୍ଧାରିତ ଜୟପୁର ଲଜ୍‌ରେ ପହଞ୍ଚିଲୁ । ଜୟପୁର ଲଜ୍‌ର ଦ୍ୱିତୀୟ ମହଲାର ୨୦୮ନଂ ରୁମ୍‌ରେ ଆମ ପାଇଁ ଓ ଶ୍ରୀଯୁକ୍ତ ସ୍ୱାଇଁ ଦମ୍ପତିଙ୍କ ପାଇଁ ଏକତ୍ର ବ୍ୟବସ୍ଥା ହୋଇଥିଲା । ଗୋଟିଏ ବାଥ୍‌ରୁମ୍ ଥିବାରୁ ଜଣକ ପରେ ଜଣେ ସତେଜ ହୋଇ ଚତୁର୍ଥ ମହଲାକୁ ପ୍ରସାଦ ସେବନ ପାଇଁ ଗଲୁ । ଏଠାରେ ଦ୍ୱିତୀୟ ମହଲାରୁ ଲିଫଟ୍ କାମ କରୁ ନ ଥାଏ । ତୃତୀୟ ମହଲାରେ ପହଞ୍ଚିଲେ ଚତୁର୍ଥ ମହଲାକୁ ଲିଫଟ୍ ସାହାଯ୍ୟରେ ଯିବାକୁ ହୁଏ । ଦେହ ସାମାନ୍ୟ ଅସୁସ୍ଥ ଅନୁଭବ ହେଉଥିବାରୁ ହୋଟେଲ୍ ଲୋକ ହାତରେ ଜିନିଷ ଉପରକୁ ଉଠେଇଥିଲୁ । ପ୍ରସାଦ ସେବନ ପରେ ୧.୧/୨ଘ. ବିଶ୍ରାମ ପରେ ଅନ୍ୟ ବିଷୟ ଚିନ୍ତା କରିବା ବୋଲି ଭାବିଲୁ । ସଂଧ୍ୟା ୫ଟା ସମୟରେ ତଳକୁ ଚା'ପାନ ପାଇଁ

ଓହ୍ଲାଇଲୁ । ବିଶାଖାପାଟଣାର ବିଖ୍ୟାତ ବଜାର ଛକ 'ଜଗଦମ୍ବା କଂପ୍ଲେକ୍ସ' ନିକଟରେ ଜୟପୁର ହୋଟେଲ୍ । କିଛି ସମୟ ପୂର୍ବରୁ ସେହି ବଜାରରେ ବୁଲି ଆସିଥିବା ଶ୍ରୀମତୀ ଓ ଶ୍ରୀ ସାମଲ ବାବୁ (ପଶୁ-ଚିକିତ୍ସକ)ଙ୍କ ସହ ସାକ୍ଷାତ୍ ହେଲା । ବିଶାଖାପାଟଣାର ସମୁଦ୍ର କୂଳିଆ ପବନରେ ବୁଲାବୁଲି କରି କିଛି ପୋଷାକ, ଲୁଗାପଟା ଓ କେସେଟ୍ କିଣି ଲଜ୍‌କୁ ଫେରିଲୁ । ପ୍ରସାଦ ସେବନ ସମୟରେ ବାବା ପଦ୍ମଧର ଦାସ୍ ମହୋଦୟ ଭୋର୍ ୫ଟାରେ ନିର୍ଦ୍ଧାରିତ ବସ୍‌ରେ ଶ୍ରୀ ଶ୍ରୀ ନରସିଂହ ସ୍ୱାମୀଙ୍କର ଦର୍ଶନ ପାଇଁ ବାହାରିବା ବୋଲି ସୂଚନା ଦେଲେ । ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ ।

## ତା. ୦୬.୦୨.୨୦୧୧, ରବିବାର

ଦୁଇଟି ନିର୍ଦ୍ଧାରିତ ବସ୍‌ରେ ଭୋର ୫ଟା ୩୦ମି.ରେ ଲଜ୍‌ରୁ ବାହାରି ସୀମାଞ୍ଚଳମ୍ ପର୍ବତର ପାଦଦେଶ ପର୍ଯ୍ୟନ୍ତ ଯାଇ ପର୍ବତ ଉପରକୁ ଯିବା ପାଇଁ ମୁଣ୍ଡପିଛା ଟ୧୫.୦୦ ବିନିମୟରେ ଟିକଟ କଲୁ । ବାବାଙ୍କର ନିର୍ଦ୍ଦେଶ ଥାଏ ଦର୍ଶନ ସାରି ସକାଳ ୯ଟା ସୁଦ୍ଧା ନିର୍ଦ୍ଧାରିତ ବସ୍ ନିକଟରେ ପହଞ୍ଚିବା ପାଇଁ । ତେଣୁ ତରବରରେ ଆମେ ଉପରକୁ ଯିବା ଦୌଡ଼ରେ ସାମିଲ ହେଲୁ । ମାତ୍ର ୧୫ ମିନିଟରେ ପର୍ବତର ଉପରିଭାଗ ସୀମାଞ୍ଚଳମ୍ ଦେବସ୍ଥାନରେ ପହଞ୍ଚିଗଲୁ । ସେହି ସ୍ଥାନର ନବୀକରଣ କରାଯାଉଛି । ଦୋକାନ ବଜାର ଉଠାଇ ଦିଆଯାଇ ରାସ୍ତାକାମ ଚାଲିଛି । ଯେଉଁ ଆଡ଼କୁ ଚାହିଁଲେ ଖାଲି ମାଟି, ଇଟା, ପଥର ଗଦା ଗଦା ହୋଇଥିବା ଦେଖାଯାଉଛି । ବଡ଼ି ଭୋରରୁ ଜୋତା ଷ୍ଟାଣ୍ଡ ଖୋଲା ହୋଇନଥିଲା । ତେଣୁ ବିନା ଟୋକେନ୍‌ରେ ଜୋତା ରଖି ଫୁଲ ଦୀପ ଭୋଗ ନେଇ ଦକ୍ଷିଣ ଭାରତୀୟ ନିୟମ ଧାଡ଼ି ଦର୍ଶନ ପାଇଁ ଦୌଡ଼ିଲୁ । ଟିକଟ କାଉଣ୍ଟର ବି ଖୋଲାଯାଇନଥାଏ । ତଥାପି ଟ.୨୦.୦୦ ଦର୍ଶନର ମାର୍ଗ ଲେଖାଯାଇଥିବା ବ୍ୟାରିକେଟ୍ ଭିତରେ ପଶିଲୁ । ଉପରକୁ ଉପରକୁ ଗଲାବେଳକୁ ମନ୍ଦିର ଦ୍ୱାର ନିକଟରେ ଅଳ୍ପ କେତେଜଣ ଦକ୍ଷିଣ ଭାରତୀୟ ଯାତ୍ରୀ ଓ ବ୍ରହ୍ମପୁରରୁ ଯାଇଥିବା ଯାତ୍ରୀମାନଙ୍କର ଧାଡ଼ି ଆରମ୍ଭ ହୋଇଯାଇଥାଏ । ସେତେବେଳକୁ ଘଡ଼ିରେ ସମୟ ସାଢ଼େ ୬ଟା ହୋଇଥାଏ । କେହି ଜଣେ ଅନୁସନ୍ଧାନ କରି ଆସି କହିଲେ ମଙ୍ଗଳ ଆରତୀ ପରେ ଦ୍ୱାର ବନ୍ଦ କରିଦିଆଯାଇଛି, ସକାଳ ୭ଟାରେ ଖୋଲା ହେବ । ଧାଡ଼ିରେ ଧୈର୍ଯ୍ୟ ସହକାରେ ଅପେକ୍ଷା କଲୁ । ଭୀଷ୍ମଗିରି ଆମ ସାହି ଆଖଡ଼ାର 'ପ୍ରହ୍ଲାଦ ନାଟକ' ର ଭକ୍ତ ପ୍ରହ୍ଲାଦଙ୍କ ଭଜନ ସ୍ମରଣ କଲୁ ।

ବ୍ରଜ ସୁନ୍ଦର ହେ, ଦେଖାଦିଅ ଏଥର ହେ (୨ଥର)
ଦୀନ ଜନଠାରେ ବାରେ ସୁଦୟା କର ।
ଦେଖ ପିତା ମୋହର, ଦୁଃଖ ଦିଏ ଅପାର

କଷ୍ଟ ଫେଡ଼ ଶ୍ରୀଧର । ଯଶ ରହୁ ତୁମର ।
ଦୀନ ଜନଠାରେ ବାରେ ସୁଦୟା କର ।

ଆମ ପାଇଁ ପରିବର୍ତ୍ତିତ ପଦ ଥିଲା -

ବ୍ରଜ ସୁନ୍ଦର ହେ, ଦେଖାଦିଅ ଏଥର ହେ (୨ଥର)
ଦୀନ ଜନଠାରେ ବାରେ ସୁଦୟା କର ।
ଦେହ ପୀଡ଼ା ଆମର, ଦୁଃଖ ଦିଏ ଅପାର
କଷ୍ଟ ଫେଡ଼ ଶ୍ରୀଧର, ଯଶ ରହୁ ତୁମର ।
ଇସ୍କନ ଯାତ୍ରୀଠାରେ ବାରେ ସୁଦୟା କର ।

ଘଡ଼ିରେ ୭ ବାଜିଲା, ମନ୍ଦିର କବାଟ ଖୋଲା ହେଲା । ସର୍ବ ଦର୍ଶନରେ କମ୍ ଲୋକଙ୍କର ଅଧିକ ଠେଲା ପେଲାରେ ଯାଇ ଶ୍ରୀ ନରସିଂହ ସ୍ୱାମୀଙ୍କ ସମ୍ମୁଖରେ ହାଜର ହେଲୁ ।

ତବ କର କମଳବରେ ନଖମଦ୍ଭୁତ ଶୃଙ୍ଗ
ଦଳିତ ହିରଣ୍ୟକଶିପୁ ତନୁ ଭୃଙ୍ଗ
କେଶବ ଧୃତ ନରହରି ରୂପ
ଜୟ ଜଗଦୀଶ ହରେ ।

ଶ୍ରୀଜୟଦେବଙ୍କ ରଚିତ ଦଶାବତାର ସ୍ତୋତ୍ରମ୍‌ର ଉଗ୍ର ନୃସିଂହ ଭଗବାନ ସକାଳ ଦର୍ଶନ ସମୟରେ ଆମକୁ ଶାନ୍ତ କମନୀୟ ମନେହେଲେ । ଭାବିଲୁ ଏ ସବୁ ଦର୍ଶକର ଦୃଷ୍ଟିକୋଣ ହୋଇପାରେ । ଶ୍ରୀବୁଧକୌଶିକ ମୁନିବରଙ୍କ ଭାଷାରେ-

ମାତାରା ମୋ ମତ୍ପିତା ରାମଚନ୍ଦ୍ରଃ
ସ୍ୱାମୀ ରାମୋ ମତ୍‌ସଖା ରାମଚନ୍ଦ୍ର
ସର୍ବସ୍ୱଂମେ ରାମଚନ୍ଦ୍ରୋ ଦୟାଳୁ
ନାର୍ନ୍ୟଂ ଜାନେ ନୈବ ଜାନେ ନ ଜାନେ ।

ସେହି ସମୟରେ ପୋଲିସର ପହରା ନ ଥିଲା ତେଣୁ ମନଭରି ଆଖି ପୁରାଇ ଶ୍ରୀନରସିଂହ ସ୍ୱାମୀଙ୍କ ଦର୍ଶନର ସୁଯୋଗ ପାଇଲୁ । ଅନାୟାସରେ ବେଢ଼ା ପରିକ୍ରମା କଲୁ । ମନସ୍କାମନା ସ୍ତମ୍ଭଙ୍କୁ ଛୁଇଁବାକୁ ହାତ ବଢ଼ାଇବାରୁ ପୂଜକ ଟିକଟ ମାଗିଲେ । ଟିକଟ କାଉଣ୍ଟର ଖୋଲା ନଥିବାରୁ ଆମ ପାଖରେ ଟିକଟ ନଥିଲା । ତେଣୁ ବାହାରୁ ଦର୍ଶନ କରି ଫେରିଲୁ । ବାହାରେ ଗରମ ଗରମ ବାଲଭୋଗ ସୀମାଞ୍ଚଳମ୍ ପ୍ରସିଦ୍ଧ 'ପୁଳିହାରୀ' ସେବନ କଲୁ । ଲଡୁ ପ୍ରସାଦ ସଂଗ୍ରହ ଓ ସୀମାଞ୍ଚଳ ମାହାତ୍ମ୍ୟ ପୁସ୍ତକ କିଣି ଟିକଟ କରି ତଳକୁ ଫେରିଲୁ ସାଢ଼େ ଆଠଟାରେ । ଆମେ ସିନା ପହଞ୍ଚିଗଲୁ

ନିର୍ଦ୍ଧାରିତ ସମୟ ପୂର୍ବରୁ କିନ୍ତୁ ପୂର୍ବ ଦିନମାନଙ୍କ ଭଳି ଅନ୍ୟ ତୀର୍ଥଯାତ୍ରୀମାନଙ୍କ ଆଗମନର ଅପେକ୍ଷାରେ ରହିଲୁ । ସେଦିନ ଆମ ନିର୍ଦ୍ଧାରିତ ବସ୍‌ର ନମ୍ବର ଚିପିବା କଷ୍ଟ ନ ଥିଲା, କାରଣ ଝରକା କାଚ କିମ୍ବା ତ୍ରିପାଲ ନ ଥାଇ ଗୋଟିଏ ଦୁଇଟି ଝରକାରେ ପ୍ଲାଇଉଡ଼୍ ଖଞ୍ଜା ଯାଇଥିଲା । ସାଲବେଗଙ୍କ ଭଜନ ପରି ସ୍ଥାନ ଛାଡ଼ିବି ନାହିଁ, ସ୍ଥାନ ଛାଡ଼ିବି ନାହିଁ, ଛାଡ଼ିଲି ଏ ସ୍ଥାନ ଆଉ ମିଳିବ କାହିଁ ? ସବୁ ଯାତ୍ରୀଙ୍କ ଉପସ୍ଥିତି ପରେ ସାଢ଼େ ନଅଟାରେ ବସ୍ ଚାଲିଲା । ଦନାଇ ଦାସଙ୍କ 'ନାବକେଳି' କବିତାଟି ମନେ ପଡ଼ିଗଲା । ରସିକନାଗରନବନୀତ ଚୋର ମଦନମୋହନ ଗୋପ ଯୁବତୀଙ୍କୁ ଯମୁନା ପାର କରିବା ପାଇଁ ଦଦରା ନାଆରେ ବୁଢ଼ା ନାଉରୀ ସାଜିଥିଲେ । ଆମ ଭାଗ୍ୟରେ ସେ ଦିନ ଭଙ୍ଗା ବସ୍‌ରେ ମାତାଲ ଡ୍ରାଇଭର୍ । ଭୋର୍‌ରୁ ଘରୁ ବାହାରିଲା ବେଳେ ତା'ର ଗାଡ଼ି ଚାଳନା ଉପରେ ଆମର ଟିକିଏ ଟିକିଏ ସନ୍ଦେହ ଥିଲା । ବେଳ ଗଡ଼ି ଖରା ବଢ଼ିବାରୁ ସନ୍ଦେହ ଦୃଢ଼ୀଭୂତ ହେଲା । ଆମ ତୀର୍ଥଯାତ୍ରୀଗଣ ବାବାଙ୍କ ମାଧ୍ୟମରେ ଓ କେତେ ଜଣ ପ୍ରତ୍ୟକ୍ଷ ଭାବରେ ଡ୍ରାଇଭରଙ୍କୁ ଚେତାବନୀ ଦେଇଥିଲେ । କିଛି ବାଟ ଦୁଇଟିଯାକ ବସ୍ ମିଶାମିଶି, ଆଗପଛ ହୋଇ ଚାଲିଲା । ଗୋଟିଏ ଛକରେ ଟ୍ରାଫିକ୍ ଭିଡ଼ ହୋଇଥିବା ସମୟରେ ଦୁଇଟି ବସ୍ ଅଲଗା ହୋଇଗଲା । ତା'ପରେ ଆରମ୍ଭ ହେଲା ଡ୍ରାଇଭର୍‌ର କମାଲ । ମତୁଆଲା ଚାଳକକୁ ବାଟ ଅଜଣା ଥିଲା । ରାସ୍ତାକାମ ଚାଲିଥିବା ସାହି, ଗଳି କନ୍ଦି, ନାଳ ନର୍ଦ୍ଦମା, ମାଛଧରା ବନ୍ଦରକୁ ଯିବା ରାସ୍ତା ଇତ୍ୟାଦି ବିଶାଖାପାଟଣାର ସାଇଟ୍ ସିନ୍ ଘଣ୍ଟେ ଦେଢ଼ ଘଣ୍ଟା ବୁଲାଇଲା ପରେ ବାବାମାନେ ରାସ୍ତା ପଚାରି ବୁଝିବାରୁ ବହୁ କଷ୍ଟରେ ଦିନ ୧୨ଟାରେ ଜୟପୁର ଲଜ୍ ନିକଟରେ ପହଞ୍ଚାଇଲା । ସାଙ୍ଗରେ ଲଗେଜ୍ ନ ଥିବାରୁ ଅଳ୍ପବାଟ ଚାଲି ଚାଲି ଯାଇ ଲଜ୍‌ରେ ପହଞ୍ଚିବାରେ ବିଶେଷ ଅସୁବିଧା ହୋଇ ନ ଥିଲା । ଲଜ୍‌ର ପ୍ରବେଶ ଦ୍ୱାର ନିକଟରେ ଆମ ପୂର୍ବ ବସ୍‌ର ଲୋକମାନଙ୍କର ପ୍ରସାଦ ସେବନ ପରେ ବସ୍‌ରେ ଲଗେଜ୍ ରଖିବା ପାଇଁ ତରବର ହେଉଥିବା ଦୃଶ୍ୟ ଆମକୁ ବ୍ୟସ୍ତ ବିବ୍ରତ କରିଦେଇଥିଲା । ଖରାବେଳ, ଗରମ ପ୍ରସାଦ, ରୁମ୍ ଛାଡ଼ିବା ସମୟ ଉପସ୍ଥିତ । ଏହିଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ବାବୁ ଗୋପାଳଚନ୍ଦ୍ର ପ୍ରହରାଜଙ୍କର "ଆମ ଘରର ହାଲଚାଲ୍" ପ୍ରବନ୍ଧର ବିଶେଷ ବାକ୍ୟଟି "କାକସ୍ନାନ, ଗଧ ଭୋଜନ, କୁକୁର ଧାଉଡ଼ି"କୁ ଅନୁସରଣ କଲୁ । ହେଲେ ଆମେ ସିନା ତରବରରେ ହନ୍ତସନ୍ତ ହେଲୁ ସେହି ପୁରୁଣା ଅଭ୍ୟାସର ପୁନରାବୃତ୍ତି ହେଲା । ପୃଥିବୀର ବୃହତ୍ତମ ଗଣତନ୍ତ୍ର ଦେଶ ସ୍ୱାଧୀନ ଭାରତରେ ଭାରତ ସରକାରଙ୍କର "ପଛୁଆ ବର୍ଗଙ୍କ ପାଇଁ ସ୍ଥାନ ସଂରକ୍ଷଣ" ନିୟମ ଭଳି ଆମ ପଛୁଆ ଯାତ୍ରୀଗଣ ସାଧାରଣ ଯାତ୍ରୀଙ୍କୁ ସଦା ସର୍ବଦା ହଇରାଣ କରୁଥିଲେ । କେତେଜଣ ଯାତ୍ରୀ ରୁମ୍ ଚାବି ହସ୍ତାନ୍ତର କରି ନ ଥିଲେ । ସେମାନଙ୍କର ଝାମେଲା ସରିଲାବେଳକୁ ଦିନ ଗୋଟାଏ ବାଜିଲା ।

ଆମ ବସ୍‌ର ଡ୍ରାଇଭର ବଦଳିଲା । ବସ୍ ଚାଲିଲା ବିଶାଖାପାଟଣାର ପ୍ରସିଦ୍ଧ ପର୍ଯ୍ୟଟନ ସ୍ଥଳ 'କୈଳାସ ଗିରି' ଅଭିମୁଖେ । 'କୈଳାସ ଗିରି' ପର୍ବତ ଉପରେ ଏକ ମନୋରମ ସ୍ଥାନ । ପାହାଡ଼ କାଟି ସୁବିଧାଜନକ ପାର୍ବତ୍ୟ ରାସ୍ତା ତିଆରି ହୋଇଛି, ପାହାଡ଼ ଉପରେ ପହଞ୍ଚିଲେ ଏକ ଦିଗରେ ବଙ୍ଗୋପସାଗରର ନୀଳ ବୀଚିମାଳାର ଦୃଶ୍ୟ ଉପଭୋଗ କରିହୁଏ । ଅନ୍ୟ ଦିଗରେ ବ୍ୟସ୍ତବହୁଳ ବିଶାଖାପାଟଣା ସହରର ଦୃଶ୍ୟ ପ୍ରତୀୟମାନ ହୁଏ । ଏଠାରେ ମନୋରଂଜନ ପାଇଁ ପ୍ରମୋଦ ଉଦ୍ୟାନ, ରୋପ୍‌ୱେ, ଟାଇଟାନିକ୍ ଦୃଶ୍ୟ, ବୃତ୍ତାକାର ରେଳ ଯାତ୍ରାଭଳି ମନୋମୁଗ୍‌ଧକର ବ୍ୟବସ୍ଥା ରହିଛି । ଜୀବିକା ଅର୍ଜନ ପାଇଁ ଓଟ ଚାଳକ, କ୍ୟାମେରା ମ୍ୟାନଙ୍କର ଭିଡ଼ ଜମିଥାଏ । ପର୍ବତ ଉପରେ କେତେ ପାହାଚ ଉଠିଗଲା ପରେ 'କୈଳାସ ଗିରି' ନାମକୁ ସାର୍ଥକ କରୁଥିବା ତୁଷାର ଧବଳ ଶଶାଙ୍କ ଶେଖର ଓ ମାତା ପାର୍ବତୀଙ୍କର କମନୀୟ ଯୁଗଳ ମୂର୍ତ୍ତି ପରିଲକ୍ଷିତ ହୁଏ । କିଛି ସମୟ ପାର୍ବତ୍ୟ ଶୋଭା ଅବଲୋକନ କଲାପରେ ବାବାଙ୍କ ନିର୍ଦ୍ଦେଶରେ ବସ୍ ତଳକୁ ଓହ୍ଲାଇଲା । ବିଶାଖାପାଟଣା ସମୁଦ୍ର ବେଳାଭୂମି ରାସ୍ତାରେ ବସ୍ ପହଞ୍ଚିଲା । ଦକ୍ଷିଣ ଭାରତ ତୀର୍ଥଯାତ୍ରାର ଅଧିକାଂଶ ସ୍ଥାନ ସମୁଦ୍ରକୂଳରେ ଅବସ୍ଥିତ ହୋଇଥିବାରୁ ପ୍ରବଳ ଖରାତାପରେ ବିଶାଖାପାଟଣାର ସମୁଦ୍ରକୂଳରେ ପହଞ୍ଚିବା ପାଇଁ ଯାତ୍ରୀମାନେ ଅନିଚ୍ଛା ପ୍ରକାଶ କଲେ । ତା'ପରେ ବସ୍ ଚାଲିଲା, "KURSURA" ନାମକ ଏକ ସବ୍‌ମେରାଇନ୍ ମ୍ୟୁଜିୟମ୍ ଦେଖିବା ଉଦ୍ଦେଶ୍ୟରେ କିନ୍ତୁ ସେତେବେଳେ ବିଦ୍ୟୁତ୍ ସଂଯୋଗ ନ ଥିବାରୁ ବାବା ଦେଖାହୋଇ ପାରିବ ନାହିଁ ବୋଲି ସୂଚନା ଦେଲେ । ସେଠାରେ ପହଞ୍ଚିଲା ବେଳକୁ ଦିନ ୩ଘ.୨୫ମିନିଟ୍ ହୋଇଥାଏ । ଥଣ୍ଡା-ଗରମ ପାନୀୟ ଓ ଜଳଯୋଗ ଗ୍ରହଣ ପରେ ''ବିଶାଖା ମ୍ୟୁଜିୟମ୍'' ନିକଟରେ ବସ୍ ପହଞ୍ଚିଲା, ସେଠାରେ ପ୍ରବେଶ ଟିକଟର ମୂଲ୍ୟ ଟ୫.୦୦, ତ୍ରି-ତଳ ପ୍ରାସାଦ ବିଶିଷ୍ଟ ମ୍ୟୁଜିୟମ୍‌ରେ ଦୁର୍ଲ୍ଲଭ ବସ୍ତୁ ସଂଗ୍ରହ କରି ରଖାଯାଇଛି । ପ୍ରାଚୀନ କାଳରୁ ଅତ୍ୟାଧୁନିକ ଯୁଗ ପର୍ଯ୍ୟନ୍ତ ଜଳ ଜାହାଜର ସୁନ୍ଦର ସୁନ୍ଦର ପ୍ରତିଛବି ସଜ୍ଜିତ ହୋଇଛି । ଜଳ ଜାହାଜ, ବୁଡ଼ା ଜାହାଜ, ଯୁଦ୍ଧ ଜାହାଜ, ଜଳଯାତ୍ରା ସମୟରେ ନାବିକ ମାନଙ୍କର ପୋଷାକ, ଅସ୍ତ୍ରଶସ୍ତ୍ର, ସାଜ ସଂରଜାମଗୁଡ଼ିକ ସୁନ୍ଦର ଭାବରେ ସଜାଯାଇଛି ଓ ଦର୍ଶକଙ୍କ ଅବଗତି ନିମନ୍ତେ ଇଂରାଜୀ ଭାଷାରେ ପ୍ରତ୍ୟେକ ବସ୍ତୁ ନିକଟରେ ଟୀକା ଓ ବ୍ୟାଖ୍ୟା ମଧ୍ୟ କରାଯାଇଛି । ଦ୍ୱିତୀୟ ଓ ତୃତୀୟ ମହଲାରେ 'ଆର୍ଟ ଗ୍ୟାଲେରୀ' ଉତ୍କୃଷ୍ଟ କଳାର ପରିଚୟ ପ୍ରଦାନ କରୁଛି । ଏକ ବିରାଟ ଜାହାଜ 'ଶନ୍ନୋ ବରୁଣ'ର ପ୍ରତିଛବି ନିକଟରେ ଲେଖାଥିଲା । -"San-no-Varuna" means May the Ocean God auspicious to us". (Veda) । ଅନ୍ୟ ଏକ ସ୍ଥାନରେ ତାମିଲନାଡୁର ମାମ୍ଲାଲପୁରମ୍ ମନ୍ଦିରର ପ୍ରତିଛବି ରଖାଯାଇଛି । ତା'ତଳେ ଲେଖାଯାଇଥିବା ଲେଖାର ଓଡ଼ିଆ ଅନୁବାଦ

ଏହିପରି - ଏହି ମନ୍ଦିର ଶୀର୍ଷ ଭାଗରେ ଆଲୋକ ନାବିକ ମାନଙ୍କ ପାଇଁ 'ବତୀଘର' ଭଳି କାମ ଦେଉଥିଲା । ଚୋଳ, ପାଣ୍ଡ୍ୟ, ଚେରା ରାଜାମାନଙ୍କ ଦ୍ୱାରା ଏହା ବହୁକାଳ ପର୍ଯ୍ୟନ୍ତ ସୁରକ୍ଷିତ ଓ କାର୍ଯ୍ୟଦକ୍ଷ ହୋଇଥିଲା । 'ବିଶାଖା ମ୍ୟୁଜିୟମ୍'ରୁ ବାହାରି ଏକ କାଳୀ ମନ୍ଦିରରେ ପହଞ୍ଚିଲୁ । ସେଠାରେ ବଂଗୀୟ ଯାତ୍ରୀମାନଙ୍କର ଭିଡ଼ ଜମିଥାଏ । ଦର୍ଶନ ପରେ ଚା'ପାନ ସମୟରେ ରାସ୍ତାର ''ସ୍ୱାମୀ ବିବେକାନନ୍ଦ ପୁସ୍ତକ ବିକ୍ରି'' ଏକ ଭ୍ୟାନ୍ ଉପରେ ଆଖି ପଡ଼ିଲା । ଅନ୍ୟଯାତ୍ରୀ ମାନଙ୍କ ସହ 'ମତ୍ସ୍ୟ ଦର୍ଶନ' ନାମକ ମାଛ ଏ୍କ୍ୱାରିୟମ୍ ପରିଦର୍ଶନରେ ନ ଯାଇ ଭ୍ୟାନ୍ ନିକଟରେ ପହଞ୍ଚି କେତେଗୋଟି ବହି କିଣି ଆଣିଲୁ । ସେତେବେଳକୁ ଷ୍ଟେସନରେ ପହଞ୍ଚିବା ପାଇଁ ବସ୍ ଚଢ଼ିବାକୁ ବାବାଙ୍କ ଠାରୁ ନିର୍ଦ୍ଦେଶ ମିଳିଥାଏ । ବଙ୍ଗୋପସାଗର କୂଳରେ ସେହି ସମୟରେ ସୂର୍ଯ୍ୟାସ୍ତ ହୋଇଯାଇଥିଲେ । ଯୁଦ୍ଧ ସ୍ମାରକୀ, କେତୋଟି ସମାଧି ସ୍ଥଳ ଓ ମଠ ମନ୍ଦିର ବସ୍‌ରେ ବସି ଦେଖି ଦେଖି ସଂଧ୍ୟା ୭ଟାରେ ବିଶାଖାପାଟଣା ଷ୍ଟେସନରେ ପହଞ୍ଚିଲୁ । ରାତି ୯ଘ.୧୫ମି.ରେ ତୀର୍ଥଯାତ୍ରା ସମାପ୍ତିକୁ ଅଭିନନ୍ଦନ ଜଣାଇ ବାଷ୍ପୀୟ ଶକଟର ଆଗମନ ହେଲା । ଦିନେ ଦୁଇଦିନ ପୂର୍ବରୁ ଆମ ଭିତରୁ କେତେଜଣ ପୁରୀ ଯିବା ପାଇଁ ଠିକ୍ କରିଥିଲୁ । କିନ୍ତୁ ଆମ ପକ୍ଷରେ ଲଗେଜ୍ ସହ ଯିବା ସମ୍ଭବ ନ ଥିବାରୁ ଦିଅର ଓ ଭଣଜାଙ୍କ ହାତରେ ରାତି ୧ଘ.୧୫ମି.ରେ ଜିନିଷ ହସ୍ତାନ୍ତର କରି ଦାୟିତ୍ୱ ମୁକ୍ତ ହୋଇ କୋଣାର୍କ ଏକ୍ସପ୍ରେସ୍‌ରେ ଖୋର୍ଦ୍ଧା ଷ୍ଟେସନ ପର୍ଯ୍ୟନ୍ତ ନିଶ୍ଚିନ୍ତରେ ଗଲୁ । ରାତି ୩ଘ.୩୦ମି.ରେ ଅଳ୍ପ କେତେଜଣ ସହଯାତ୍ରୀ ଓ କେତେଜଣ ବାବାଙ୍କଠାରୁ ବିଦାୟ ମାଗି ଟ୍ରେନ୍‌ରୁ ଓହ୍ଲାଇଲୁ । ପହଞ୍ଚିବା ସଂଗେ ସଂଗେ ସହଯାତ୍ରୀ ତ୍ରିପାଠୀ ବାବୁ ୧୪/୧୫ଟି ପୁରୀ ଟିକଟ କରି ନେଇଆସିଲେ । କରୁଣାମୟଙ୍କ ଅପାର କରୁଣାରୁ ମାତ୍ର ୧୫ ମିନିଟ୍ ପରେ ହାୱଡ଼ା-ପୁରୀ ଜଗନ୍ନାଥ ଏକ୍ସପ୍ରେସ୍ ପହଞ୍ଚିଲା । ସେଇ ଟିକଟ ଧରି ଆଗ ପଛ ବିଚାର ନ କରି ଚଢ଼ିବାକୁ ଉଦ୍ୟତ ହେଲାବେଳେ ଜଣେ ଟି.ଟି.ଇ ଆମ ନିକଟରେ ପହଞ୍ଚି ଲୋଭାସକ୍ତ ନୟନରେ ଆଖି ବୁଲାଇଲେ । ମୁଣ୍ଡପିଛା ଟ୫୦.୦୦ ଉତ୍କୋଚ ଦେଇ ସମସ୍ତ ଯାତ୍ରୀ ବୀରଦର୍ପରେ ଭିତରେ ପଶିଲୁ । ତୀର୍ଥଯାତ୍ରୀ ମନେ କରି ବଙ୍ଗଳା ଯାତ୍ରୀମାନେ ନିଜ ଶୟନ ସ୍ଥାନରୁ ଉଠି ଆମକୁ ବସିବାକୁ ସ୍ଥାନ ଦେଲେ । ଠିକ୍ ୫ଘ.୩୦ମି.ରେ ପୁରୁଷୋତ୍ତମ କ୍ଷେତ୍ରରେ ପ୍ରବେଶ କଲୁ । ସଫଳ ତୀର୍ଥଯାତ୍ରା ପାଇଁ ଜଗତର ନାଥଙ୍କ ଉଦ୍ଦେଶ୍ୟରେ ହାତ ଟେକିଲୁ । ସେଠାରୁ ଅଲଗା ଅଲଗା ହୋଇ ନିଜ ନିଜ ଲକ୍ଷ୍ୟ ସ୍ଥଳକୁ ଅଗ୍ରସର ହେଲୁ ।

**ତା.୦୭.୦୨.୨୦୧୧, ସୋମବାର**

ପ୍ରାତଃ ୫ଘ. ୪୫ମିରେ ବଡ଼ଦାଣ୍ଡର 'ନୀଳାଚଳ ଭକ୍ତ ନିବାସ'ରେ

ପହଞ୍ଚିଲୁ । ସ୍ଥାନାଭାବ ବିଷୟ ସେଠାରୁ ଜାଣିବା ପରେ 'ବଳରାମ ଅତିଥି ଭବନ' ନାମକ ଏକ ସ୍ଥାନରେ ରହିବା ବ୍ୟବସ୍ଥା କଲୁ । ଦିନକ ପାଇଁ ହେଉ କି ଘଣ୍ଟାକ ପାଇଁ ହେଉ ଭଡ଼ା ଟ୨୫୦.୦୦ ବୋଲି ସେଠାକାର ଛୋଟ ମାଲିକ (ଦଶମ ଶ୍ରେଣୀର ଛାତ୍ର) ସୂଚନା ହେଲେ । ସମୟ ଅଭାବରୁ ମୂଲ ଚାଲ କରିବା ଓ ଅନ୍ୟ ବିଶ୍ରାମସ୍ଥଳ ବୁଲିବା ଆମ ପକ୍ଷେ ସମ୍ଭବ ନ ଥିଲା । କୌଣସି ପ୍ରକାର ମାନସିକ ଗ୍ଲାନି ନ ଥାଇ ଟ୧୦୦.୦୦ ଆଡ଼ଭାନ୍ସ ଦେଇ ପ୍ରଥମ ମହଲା ଉପରକୁ ଉଠିଲୁ । ବସାରେ ପଶି ବିଜୁଳି ପଙ୍ଖା ଲଗାଇବା ପରେ ଇସ୍କନ ବାବାମାନଙ୍କୁ ଗଭୀର କୃତଜ୍ଞତା ଜଣାଇଲୁ କାରଣ ଗତକାଲି ପର୍ଯ୍ୟନ୍ତ ଟ୍ରେନ୍‌ରୁ ଓହ୍ଲାଇବା ପରେ ବିଶ୍ରାମ ସ୍ଥାନର ପସନ୍ଦ, ନାପସନ୍ଦ ପାଇଁ ପାଟିତୁଣ୍ଡ, କଳି ତକରାଳ, ମାନ ଅଭିମାନର ନାଟକ ଅଭିନୟ କରୁଥିଲୁ । କିନ୍ତୁ ଆଜି ବାବାମାନଙ୍କର ବରଦ ହସ୍ତର ଆଶୀର୍ବାଦ ଓ ଛତ୍ରଛାୟାରୁ ବଞ୍ଚିତ ହୋଇ 'ବସା ଖୋଜା' ପାଇଁ ବ୍ୟସ୍ତ ହୋଇପଡ଼ିଲୁ । ଆୟୋଜକ, ସଂଯୋଜକ ବାବାମାନଙ୍କୁ କୋଟି କୋଟି ପ୍ରଣାମ । ନିତ୍ୟକର୍ମ ଶେଷ କରି ସକାଳ ୭ଟାରେ ଶ୍ରୀମନ୍ଦିର ବାହାରିଲୁ । ସାହାଣ ମେଲାରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଆଖି ପୁରାଇ ଦର୍ଶନ କଲୁ । ଅଲେଖ ବିଶ୍ୱାଳଙ୍କ ରଚନା ଓ ସୁବାସ ଦାସଙ୍କ କଣ୍ଠସ୍ୱରକୁ ସ୍ମରଣ କରି ପକ୍ଷୀରାଜ ଗରୁଡ଼ଙ୍କ ନିକଟରେ ବସି ଗାଇ ଚାଲିଲୁ -

''ସାରା ଭୁବନରେ କାନ୍ତି ଦେଖିଲି ତୋ' ରୂପରେ,
ସାରା ଜୀବନର ଶାନ୍ତି ଲଭିଲି ତୋ' ମନ୍ଦିରେ,
ବିତିଯାଉ ଏ ଜୀବନ ତୋ' ବଦନ ଚାହିଁରେ,
ତୋତେ ଛାଡ଼ି ଯିବାକୁ ମୋ' ମନ ବଳୁ ନାହିଁରେ,
ଆସିଥିଲି କାଳିଆ ତୋ' ଦରଶନ ପାଇଁରେ
ତୋତେ ଛାଡ଼ି ଯିବାକୁ --------'' ।।

ବେଢ଼ା ପରିକ୍ରମା କଲୁ । ମା' ବିମଳା ଓ ଲକ୍ଷ୍ମୀ ମନ୍ଦିରରେ କେବଳ ପ୍ରବେଶ କରି ଆଶୀର୍ବାଦ ଭିକ୍ଷା କରିଥିଲୁ । ଆନନ୍ଦ ବଜାରରୁ ଶୁଖିଲା ମହାପ୍ରସାଦ କିଣି ଗ୍ରାଣ୍ଡ ହୋଟେଲରୁ ଜଳପାନ କରି ବସାରେ ପହଞ୍ଚି ବିଶ୍ରାମ ନେଲୁ । ଦୀର୍ଘ ଏକ ଘଣ୍ଟା ବିଶ୍ରାମ ପରେ ଅବସନ୍ନ ଶରୀର ସତେଜ ଜଣାଗଲା । ବଡ଼ଦାଣ୍ଡକୁ, କଳାବଦନକୁ, ନୀଳଚକ୍ରକୁ ବିଦାୟ ଜଣାଇ ଷ୍ଟେସନ ଗମନ କଲୁ । ପୁରୀ-ତିରୁପତି ଟ୍ରେନ୍‌ରେ (ଦିନ ଗୋଟାଏରେ) ବ୍ରହ୍ମପୁର ପହଞ୍ଚି ସେହିଦିନ ବମକେଇ ପହଞ୍ଚିବା ଯୋଜନା ଆମର ଥିଲା କାରଣ ରାତି ପାହିଲେ 'ଶ୍ରୀ ପଞ୍ଚମୀ' । ''ଛାଡ଼ ପିତୃ କାର୍ଯ୍ୟ, କର ରାଜ କାର୍ଯ୍ୟ'' ନ୍ୟାୟରେ ଆଉ କର୍ମକ୍ଷେତ୍ରରେ ଅବହେଳା କଲେ କର୍ମବୀର ଠାକୁର କ୍ଷମା ଦେବେ ନାହିଁ ବୋଲି ଭୟ ରହିଥିଲା । ଷ୍ଟେସନର IRCTC ହୋଟେଲ୍‌ରେ ମଧ୍ୟାହ୍ନ

ଭୋଜନ ଗ୍ରହଣ କରିବା ସମୟରେ ଝରକା କାଚ ମଧ୍ୟ ଦେଇ ନାୟକ ଦମ୍ପତିଙ୍କର ଆଗମନ ଦେଖିପାରିଲୁ । ଫୋନ୍‌ରେ ସ୍ଥାନ ସଂରକ୍ଷଣ ପାଇଁ ଅନୁରୋଧ କଲୁ । ପ୍ଲାଟଫର୍ମ ମରାମତି ହେଉଥିବାରୁ ଗୋଟିଏ ଟ୍ରେନ୍ ପରେ ଅନ୍ୟ ଗୋଟିଏ ଟ୍ରେନ୍ ରହିବା ବ୍ୟବସ୍ଥା ହୋଇଥାଏ ପୁଣି ବାଲି ଗୋଡ଼ିର ପ୍ଲାଟଫର୍ମ ତେଣୁ, ସାମାନ୍ୟ କଷ୍ଟ ଅନୁଭବ କରି ଟ୍ରେନ୍ ନିକଟରେ ପହଞ୍ଚିଲୁ । ନାୟକ ବାବୁଙ୍କ ସୁଦୟାରୁ ସ୍ଥାନ ମିଳିଗଲା । ମଜା ମଉଜରେ ଗପସପରେ ୫ଘ.୨୫ମି.ରେ ବ୍ରହ୍ମପୁର ଷ୍ଟେସନରେ ପହଞ୍ଚିଲୁ । ବମକୋଇ ଯିବା ପାଇଁ ନିର୍ଦ୍ଧାରିତ କାର୍‌ରେ ନିତ୍ୟାନନ୍ଦ ଘରେ ପହଞ୍ଚି ସମସ୍ତ ଲଗେଜ୍ କାର୍‌ରେ ରଖି ଗ୍ରାମାଭିମୁଖୀ ହେଲୁ । ରାତି ସାଢ଼େ ୮ଟାରେ ସର୍ବ କୁଶଳରେ ସ୍ୱବାସସ୍ଥାନରେ ପହଞ୍ଚିଲୁ । ସାହି ପଡ଼ିଶାଙ୍କ ଠାରୁ ଶଙ୍ଖୋଳା ପଚରା ଶୁଣିଲୁ । ଇଷ୍ଟ ସ୍ମରଣ କରି ରାତ୍ରି ଭୋଜନ ପରେ ବିଶ୍ରାମ ନେଲୁ ।

ତୀର୍ଥଯାତ୍ରା ପାଇଁ ବନ୍ଧୁ ବାନ୍ଧବ, ଆତ୍ମୀୟସ୍ୱଜନ, କର୍ମକ୍ଷେତ୍ରର କର୍ମକର୍ତ୍ତାଗଣ, ପଡ଼ୋଶୀ ପରିଜନଙ୍କ ଅବଦାନ, ଅକୁଣ୍ଠିତ ସାହାଯ୍ୟ ସହଯୋଗ ଓ ସର୍ବୋପରି ଶୁଭ କାମନା ପାଇଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରି ଲେଖନୀକୁ ବିଶ୍ରାମ ଦେଲି ।

ଲେଖନୀକୁ ବିଶ୍ରାମ ଦେବା ପରେ ମୂଳକଥାଟି ମନେ ପଡ଼ିବାରୁ ପୁଣି ବାଧ୍ୟ ହେଲି, ସନ୍ଥ କବୀରଙ୍କ ବାଣୀଟିଏ ସ୍ମରଣକୁ ଆସିଲା -

''ତୀରଥ ଗଏ ତୋ ଏକ ଫଲ
ସନ୍ଥ ମିଲେ ଫଲ ଚାର ।
ସଦ୍ ଗୁରୁ ମିଲେ ଅନେକ ଫଲ
କହେ କବୀର ବିଚାର'' ।।

ଆମ ଭଳି ମୂଢ଼ମତି ଅଜ୍ଞାନଙ୍କ ପାଇଁ ଇସ୍କନ ଆୟୋଜିତ ତୀର୍ଥଯାତ୍ରା କାର୍ଯ୍ୟକ୍ରମ ଉପରୋକ୍ତ ସମସ୍ତ ଫଳ ପ୍ରଦାନକାରୀ କଳ୍ପବୃକ୍ଷ । ତେଣୁ ବାବାମାନଙ୍କ ଚରଣ ତଳେ ପ୍ରଣିପାତ ହୋଇ ମନେ ମନେ ସଂକଳ୍ପ ନେଲୁ ଭାରତବର୍ଷର ଅନ୍ୟ ଯାତ୍ରା ମଧ୍ୟ ଇସ୍କନ ବାବାଙ୍କ ସାନ୍ନିଧ୍ୟରେ ଶେଷ କରିବୁ ।

''ସ୍ମୃତି ଏକ ରୁପା ଜହ୍ନ'' ଭାବି କେତେକ ଅଭୁଲା ସ୍ମୃତି ଓ ବିଶେଷ ଅନୁଭୂତିର ସଂକଳନ ଏଇ ଲେଖାର ଉଦ୍ଦେଶ୍ୟ । ଏଥି ଜନିତ ତ୍ରୁଟି ମାର୍ଜନା ପାଇଁ ପାଠକଙ୍କ ନିକଟରେ ସବିଶେଷ ଅନୁରୋଧ । 'ଅଳଂ ଅତି ବିସ୍ତରେଣ' ।

।। ହରେ କୃଷ୍ଣ ।।



ଓଁ ହରେକୃଷ୍ଣ

# ନେପାଳ ଭ୍ରମଣ ସହିତ ପୂର୍ବ ଭାରତ ଦର୍ଶନର ସ୍ମୃତି ଓ ଅନୁଭୂତି

## (ଯାତ୍ରାକାଳ - ତା. ୦୯.୦୫.୨୦୧୧ ଠାରୁ ୨୫.୦୫.୨୦୧୧)

**ପ୍ରାକ୍‌କଥନ :**

ଗ୍ରୀଷ୍ମାବକାଶ ଅବସରରେ ଅନୁଷ୍ଠିତ ହେବାକୁ ଥିବା ନେପାଳ ତଥା ପୂର୍ବ ଭାରତ ଭ୍ରମଣର ଦୁର୍ବାର ଆକର୍ଷଣ ମନ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲା । ତଥାପି ଛୋଟ ବଡ଼ କେତେକ ପାରିବାରିକ ଝଂଜାଳକୁ ପଛରେ ପକାଇ ଯାତ୍ରାରେ ସାମିଲ ହେବା ପାଇଁ ଦୃଢ଼ ସଂକଳ୍ପ ନେଲୁ । ଇସ୍କନ ମନ୍ଦିରରେ ପ୍ରଚାର ପତ୍ର ଦେଖି ପୂର୍ବ ତୀର୍ଥ ସାଥୀ ଶ୍ରୀ ରାମଚନ୍ଦ୍ର ସାହୁ ମହୋଦୟ ନେପାଳ ଭ୍ରମଣର ତାରିଖ ବିଷୟରେ ଫୋନ୍ ମାଧ୍ୟମରେ ସୂଚନା ଦେଇଥିଲେ । ପଦ୍ମଧର ବାବାଙ୍କ ସହ ଏହି ବିଷୟ କଥାବାର୍ତ୍ତା ହେବା ପରେ ସେହି ମହୋଦୟ ଉକ୍ତ ଯାତ୍ରା ଆୟୋଜକ ଶ୍ରୀମାନ୍ ଉପେନ୍ଦ୍ର ମିଶ୍ର ବାବା ଓ ସୁସେବକ ବାବାଙ୍କ ସହ ଯୋଗାଯୋଗ କରିବା ପାଇଁ କହିଲେ । ଆୟୋଜକ ବାବାମାନଙ୍କ ସହ ଦୂରଭାଷରେ ଯୋଗାଯୋଗ ହେବାପରେ ସେମାନେ ପ୍ରଚାରପତ୍ର ବ୍ରହ୍ମପୁର ପ୍ରେରଣ କରିଥିଲେ । ପ୍ରଚାର ପତ୍ରରୁ ଯାତ୍ରାର କାର୍ଯ୍ୟସୂଚୀ ଅବଗତ ହେବା ପରେ ତା ୧୬.୦୪.୨୦୧୧ରେ ଗୌରୀ ବାବୁଙ୍କ ସହାୟତାରେ ଟିକଟ ସଂରକ୍ଷିତ କଲୁ । ତା୦୧.୦୫.୨୦୧୧ ଠାରୁ ଗ୍ରୀଷ୍ମାବକାଶ ଆରମ୍ଭ ହୋଇଥିଲେ ମଧ୍ୟ ମାଧ୍ୟମିକ ଶିକ୍ଷା ବୋର୍ଡ଼ର କେନ୍ଦ୍ରୀୟ ମୂଲ୍ୟାୟନ କାର୍ଯ୍ୟ ତା.୦୨.୦୫.୨୦୧୧ରେ ଶେଷ ହୋଇଥିଲା । ତା .୩.୦୫.୨୦୧୧ରେ କର୍ମକ୍ଷେତ୍ରକୁ ଫେରି କିଛି ସ୍କୁଲ ଲେଖାଲେଖି କାମ ଶେଷ କରି ଯାତ୍ରାର ପ୍ରସ୍ତୁତି ଆରମ୍ଭ କଲୁ । ତା୦୮.୦୫.୨୦୧୧ ସକାଳ ୮ଘଣ୍ଟା ସମୟରେ ଘର ଇଷ୍ଟଦେବୀ ଓ ହରେକୃଷ୍ଣଙ୍କୁ ଧ୍ୟାନ କରି ନେପାଳ ଯାତ୍ରା ଆରମ୍ଭ କଲୁ । ସେଦିନ ଆମର ଜଣେ ନିକଟ ସଂପର୍କିୟଙ୍କର ଭୋଜି ଉତ୍ସବର ଆୟୋଜନ ବ୍ରହ୍ମପୁରସ୍ଥ ପୁରୁଣା ବସ୍‌ଷ୍ଟାଣ୍ଡର ‘‘ଜ୍ୟୋତି ରେସିଡ଼େନସି’’ରେ ଅନୁଷ୍ଠିତ ହେଉଥିଲା । ଉକ୍ତ ମାଙ୍ଗଳିକ ଅନୁଷ୍ଠାନରେ ଯୋଗ ଦେଇ ବନ୍ଧୁମିଳନ ଓ ଯାତ୍ରା ନିମନ୍ତେ ଶୁଭକାମନା - ଦୁଇଟି ଲାଭ ଉଠାଇ ଦ୍ୱିପହର ୧ଘ.୪୫ମି. ବ୍ରହ୍ମପୁର - କେନ୍ଦୁଝର ହାଇଟେକ୍ ବସ୍‌ରେ ଭୁବନେଶ୍ୱର ଅଭିମୁଖେ ଯାତ୍ରାରମ୍ଭ କଲୁ । ସଂଧ୍ୟା ୫ଘ.୨୫ମି.ରେ ଭୁବନେଶ୍ୱର କଳିଙ୍ଗ ବିହାରରେ ପହଞ୍ଚିଲୁ । ଦୀର୍ଘ ଦିନର ବ୍ୟବଧାନ

ପରେ ସାକ୍ଷାତ୍ ହେବାରୁ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଗପସପ ପରେ ରାତ୍ରି ବିଶ୍ରାମ ନେଲୁ ଗୌରୀ ବାବୁଙ୍କ ବାସ ଗୃହରେ ।

*ତା.୦୯.୦୫.୨୦୧୧*

ଦିବା ୧୦ଘଣ୍ଟା ସମୟରେ ଯଜ୍ଞାରମ୍ଭର ସୂଚନା ଇସ୍କନ ତରଫରୁ ଦିଆଯାଇ ଥିଲା । ତେଣୁ ସକାଳ ୯ଘଣ୍ଟା ସମୟରେ ଶ୍ରୀରାଧାମାଧବଙ୍କୁ ସ୍ମରଣ କରି ଇସ୍କନ ମନ୍ଦିର ଯାତ୍ରା କଲୁ । ଆମେ ମନ୍ଦିରରେ ପହଞ୍ଚିଲା ବେଳକୁ ଯଜ୍ଞ ଆରମ୍ଭ ହୋଇସାରିଥିଲା । ସେଠାରେ ପହଞ୍ଚି ଶୁଣିବାକୁ ପାଇଲୁ ଦିନ ୩ଘ.୪୦ମି. ସମୟର ଟ୍ରେନ୍ ରାତି ୧୦ଟାରେ ପହଞ୍ଚିବ । ଯଜ୍ଞ ସମାପନ ପରେ 'ଗୋବିନ୍ଦ ବଜାର'ରୁ ପ୍ରସାଦ ସେବନ କରି ଇସ୍କନ ମନ୍ଦିରର ଅତିଥି ଭବନରେ ବିଶ୍ରାମ ନେଲୁ । ସ୍ଥାନୀୟ ଯାତ୍ରୀମାନେ ବିଶ୍ରାମ ଉଦ୍ଦେଶ୍ୟରେ ସ୍ୱଗୃହ ପ୍ରତ୍ୟାବର୍ତ୍ତନ କରିଥିଲେ । ଅତିଥି ଭବନରେ ବିଶ୍ରାମ ନେବା ସମୟରେ ପରସ୍ପର ପରିଚୟ ବୁଝାବୁଝି କଲୁ । ସେହି ସମୟରେ ପୋଲସରାର ଡ଼.ବିପ୍ରଚରଣ ସ୍ୱାଇଁଙ୍କ ମୁଖରୁ ଧର୍ମ ସମ୍ବନ୍ଧୀୟ ଆଲୋଚନା ଶୁଣିବାକୁ ପାଇଲୁ । ସେହି ମହାଶୟ ସାଥିରେ ଆଣିଥିବା ଅମୂଲ୍ୟ ପୁସ୍ତକରୁ କେତୋଟି ସାରଗର୍ଭକ ପଂକ୍ତି ଗୁଡ଼ିକ ମଧ୍ୟରୁ ଅତ୍ୟନ୍ତ ହୃଦୟସ୍ପର୍ଶୀ ଗୋଟିଏ ଏହିପରି :-

''ଆପଣା ଦୁଃଖରେ ଲୁହ ନ ଗଡ଼ାଇ
ହସି ହସି ବଞ୍ଚି ଶିଖ ।
ଅପର ଦୁଃଖରେ ସମ ଦୁଃଖୀ ହୋଇ
ଲୁହ ଗଡ଼ାଇବା ଶିଖ ।
ଅନ୍ୟକୁ ଖୁଆଇ ଯେ ସୁଖ ମିଳଇ
ନିଜେ ଖାଇବାରେ କାହିଁ ?
ଅନ୍ୟର କାମରେ ଲାଗି ନ ପାରିଲେ
ବଞ୍ଚିବାର ମୂଲ୍ୟ ନାହିଁ '' ।।

'ଢ଼ିଙ୍କିଶାଳରୁ ଢ଼େଙ୍କାନାଳ' ପର୍ଯ୍ୟନ୍ତ ଆଲୋଚନା, ଇସ୍କନ ବାବାମାନଙ୍କର ଯାତ୍ରା ସମୟର ନିଷ୍ଠାପର ସେବା, ଭିନ୍ନ ଭିନ୍ନ ଚରିତ୍ରର ଭିନ୍ନ ଭିନ୍ନ ସ୍ୱଭାବ ବିଷୟ ଚର୍ଚ୍ଚା କରୁ କରୁ କେତେବେଳେ ସଂଧ୍ୟା ଉପଗତ ହୋଇଗଲା ଜାଣିହେଲା ନାହିଁ । ଚନ୍ଦନ ଯାତ୍ରାର ଶୁଭ ମୁହୂର୍ତ୍ତରେ ମନ୍ଦିରର ସଂଧ୍ୟ ଆଳତୀ ଦର୍ଶନ ପରେ ବିଜେ ପ୍ରତିମାଙ୍କର ମନଲୋଭା ଚାପଖେଳ ଓ ରଂଗମଞ୍ଚରେ ସାଂସ୍କୃତିକ କାର୍ଯ୍ୟକ୍ରମ ଦର୍ଶନର ଅପୂର୍ବ ସୁଯୋଗ ଲାଭ କଲାବେଳେ ରାତ୍ରି ୮ଟା ସୁଦ୍ଧା ପ୍ରସାଦ ସେବନ ଆରମ୍ଭ ହୋଇଯିବା

ସୂଚନା ପାଇଲୁ । ତେଣୁ ବାଧ୍ୟ ହୋଇ ଆଖି ଫେରାଇ ପ୍ରସାଦ ସେବନ କକ୍ଷରେ ସମବେତ ହେଲୁ । ସେଠାରେ ରାତ୍ରି ୧୨ଘ.୫୫ମି.ରେ ଟ୍ରେନ୍ ପହଞ୍ଚିବା ବିଷୟ ଜାଣିବାକୁ ପାଇଲୁ । ମାଓବାଦୀ ଭୟ ଯୋଗୁଁ ଉତ୍ତେଜନା ପ୍ରବଣ ଅଞ୍ଚଳ ଦେଇ ଯାଉଥିବା ରାତ୍ରି କାଳୀନ ଟ୍ରେନ୍ ଯାତ୍ରାର ସମୟ ସାରଣୀରେ ପରିବର୍ତ୍ତନ କରାଯାଇଥିଲା । ଠିକ୍ ରାତ୍ରି ଗୋଟାଏ ସମୟରେ ଆମ ପ୍ରତୀକ୍ଷିତ ବୈଦ୍ୟନାଥ ଧାମ ଏକ୍ସପ୍ରେସ୍ ପହଞ୍ଚିଲା । ଏସ୍-୭ ବଗିର ୪୫ ଓ ୪୬ ନମ୍ବର ସିଟ୍‌ରେ ବସିବା ପରେ ଲୀଳାମୟଙ୍କର ବିଚିତ୍ର ଲୀଳାକୁ ସମ୍ମାନ ଜଣାଇ ଆରାମଦାୟକ ନିଦ୍ରାରେ ହଜିଗଲୁ । ଏଇ ଯାତ୍ରାରେ ଆମ କ୍ରମିକ ସଂଖ୍ୟା ୨୫, ୨୬ ଓ ଆମ ବସ୍‌ର ନାଁ ଥିଲା ''ଜଗନ୍ନାଥ'' ।

*ତା. ୧୦.୦୫.୨୦୧୧*

ଆମ ଲକ୍ଷ୍ୟସ୍ଥଳ ଜେସିଡ଼ି ଷ୍ଟେସନରେ ପହଞ୍ଚିଲାବେଳକୁ ଦିନ ୨ଘ.୩୦ମି. ହୋଇଥିଲା । ସୂଚନାନୁଯାୟୀ ଷ୍ଟେସନରୁ ଅଟୋ ମାଧ୍ୟମରେ ଦେଓଘରର ହୋଟେଲ 'ମହାଦେବ ପାଲେସ'ରେ ଦ୍ୱିତୀୟ ମହଲାର ୧୦୫ନଂ ରୁମ୍‌ରେ ପହଞ୍ଚିଲୁ । ନିକଟସ୍ଥ ହୋଟେଲ 'ଶିବମ୍ ଇଣ୍ଟର ନ୍ୟାସନାଲ'ରେ ପ୍ରସାଦ ପ୍ରସ୍ତୁତି ବ୍ୟବସ୍ଥା ହୋଇଥିଲା । ପ୍ରସାଦ ସେବନ ପରେ ପୂର୍ବ ସାଥି ବ୍ରହ୍ମପୁରର ଶ୍ରୀ ଚନ୍ଦ୍ରମଣୀ ମିଶ୍ର ଓ ତାଙ୍କ ସ୍ତ୍ରୀଙ୍କ ସହ ଅଟୋରେ ଜ୍ୟୋତିର୍ଲିଙ୍ଗ ବାବା ବୈଦ୍ୟନାଥଙ୍କ ଦର୍ଶନରେ ବାହାରିଲୁ । ଅପରାହ୍ନ ୪ଘ.୩୦ମିରେ ସେଠାରେ ପହଞ୍ଚି ଶୁଣିବାକୁ ପାଇଲୁ ସଂଧ୍ୟା ୬ଘଣ୍ଟାରେ ମନ୍ଦିର ଖୋଲା ହେବ । ସେହି ସହରର ଠାକୁର ଅନୁକୂଳ ଚନ୍ଦ୍ରଙ୍କ ଆଶ୍ରମ ପରିଦର୍ଶନ ଆମର ଆଉ ଏକ କାର୍ଯ୍ୟକ୍ରମ ଥିଲା । ଆଶ୍ରମ ବନ୍ଦ ସମୟ ସଂଧ୍ୟା ୭ଟା ବୋଲି ଶୁଣିବାକୁ ମିଳିଲା । ଆମ ଭିତରୁ କେତେଜଣ ଆଶ୍ରମ ଅଭିମୁଖେ ବାହାରିପଡ଼ିଲେ କିନ୍ତୁ ଆମେ ଦୁଇ ଦଂପତି ମନେମନେ ଠିକ୍ କଲୁ ସେଠାରୁ ଫେରି ବାବାଙ୍କ ଦର୍ଶନ ପାଇଁ ଲମ୍ବା ଧାଡ଼ିରେ ଠିଆ ହେବା ଅସମ୍ଭବ ତେଣୁ ଏଠାରେ ବାବାଙ୍କୁ ଧ୍ୟାନ କରି ମନ୍ଦିର ଖୋଲାହେବା ପର୍ଯ୍ୟନ୍ତ ଅପେକ୍ଷା କରିବା । ବାବା ବୈଦ୍ୟନାଥଙ୍କ ମନ୍ଦିର ଏକ ପ୍ରାଚୀନ ମନ୍ଦିର । ସମ୍ମୁଖରେ ସୁଉଚ୍ଚ ସିଂହଦ୍ୱାର । ପାର୍ଶ୍ୱରେ ଏକ ବିରାଟ ପୁଷ୍କରିଣୀ । ବାବାଙ୍କ ସମ୍ମୁଖରେ ମାତା ଅନ୍ନପୂର୍ଣ୍ଣାଙ୍କ ମନ୍ଦିର । ମଧ୍ୟମ ଆୟତନ ବିଶିଷ୍ଟ ବେଢ଼ା ଭିତରେ ପାର୍ଶ୍ୱଦେବଦେବୀ ବିରାଜିତ । ପରିବେଶ ବିଶେଷ ପରିଷ୍କାର ନୁହେଁ । ଦର୍ଶନ ପାଇଁ ସ୍ଥାନୀୟ ଲୋକଙ୍କ ଦୌରାତ୍ମ୍ୟ ଆମମାନଙ୍କୁ ବିବ୍ରତ କରିଥିଲା । ଠିକ୍ ସଂଧ୍ୟା ୬ଟାରେ ମନ୍ଦିର ଖୋଲା ହେଲା । ସଂଗେ ସଂଗେ ଅମାବାସ୍ୟା ରାତ୍ରିର ଉତ୍ତାଳ ତରଙ୍ଗ ଭଳି ଜନ ସମାଗମ ବଢ଼ିବାରେ ଲାଗିଲା । ଆମେ ଏକ ଦୁଇ ନମ୍ବରରେ ଥିଲେ ମଧ୍ୟ ଆମ

ଆଗରେ କେତେଜଣ ଠେଲା ଠେଲି କରି ଭିତରେ ପ୍ରବେଶ କଲେ ତା'ର ହିସାବ ନାହିଁ । ପ୍ରବଳ ଜନଗହଳି ମଧ୍ୟରେ ବାବାଙ୍କ ସଂଧ୍ୟା ଆରତୀ ଦର୍ଶନ କଲୁ । ବାବା ବୈଦ୍ୟନାଥ ସପରିବାର, ସବାନ୍ଧବ, ସହକର୍ମୀ ତଥା ସହବାସୀ ମାନଙ୍କୁ ଆରୋଗ୍ୟ ପ୍ରଦାନ କରନ୍ତୁ ବୋଲି ନତ ମସ୍ତକ ହେଲୁ । ବାହାରକୁ ବାହାରିବାବେଳକୁ ସଂଜ୍ଞାହୀନ ହେଲା ଭଳି ଜଣାପଡୁଥିଲା । ପାର୍ଶ୍ଵଦେବୀ ମାନଙ୍କର ଆରତୀ ଦର୍ଶନ ପରେ ତରବରରେ ଅଟୋ ଠିକ୍ କରି ଠାକୁର ଅନୁକୂଳ ଚନ୍ଦ୍ରଙ୍କ ଆଶ୍ରମ ଅଭିମୁଖେ ଯାତ୍ରା କଲୁ । ଶାନ୍ତ କମନୀୟ ପରିବେଶ ମଧ୍ୟରେ ଠାକୁରଜୀଙ୍କ ଆଶ୍ରମ । ବିରାଟ ବିରାଟ ସମ୍ମିଳନୀ କକ୍ଷ । ସୁନ୍ଦର ସୁନ୍ଦର ଠାକୁରମାନଙ୍କର ପ୍ରତିମୂର୍ତ୍ତି । ପୁଷ୍ପ ବିମଣ୍ଡିତ ମନଲୋଭା ଉଦ୍ୟାନ ବୁଲାବୁଲି କରିବା ସମୟରେ ସମାଧିସ୍ଥଳ ସଂଧ୍ୟା ୮ଟାରେ ବନ୍ଦ ହୋଇଯିବା ବିଷୟ ଜାଣି ଦ୍ରୁତଗତିରେ ସେଠାରେ ପହଞ୍ଚିଲୁ । ଦ୍ୱାର ରକ୍ଷକଙ୍କ ଅନୁମତି ନେଇ ସମାଧିସ୍ଥଳ ନିକଟରେ ପହଞ୍ଚିଲୁ । ସମାଧିପୀଠର ସମ୍ମୁଖରେ ସୁଉଚ୍ଚ ଶୁଭ୍ର ତୋରଣ । ତୋରଣ ଅତିକ୍ରମ କଲାପରେ ଦେଖିବାକୁ ପାଇଲୁ ବିଭିନ୍ନ ପ୍ରଜାତିର ପୁଷ୍ପ ବିମଣ୍ଡିତ ସୁରମ୍ୟ ଉଦ୍ୟାନ । ଉଦ୍ୟାନ ମଧ୍ୟରେ ଠାକୁର ଅନୁକୂଳଚନ୍ଦ୍ରଙ୍କ ସମାଧିସ୍ଥଳ ଓ ମାତାଙ୍କ ସମାଧିସ୍ଥଳ । ଫାଟକ ବନ୍ଦ ହେବା ସାଇରନ୍ ଶୁଣି ଅନିଚ୍ଛା ସତ୍ତ୍ୱେ ସେଠାରୁ ବିଦାୟ ନେବାକୁ ବାଧ ହେଲୁ । ରାତ୍ରି ପ୍ରସାଦ ସେବନ ପାଇଁ ହୋଟେଲ୍ ମହାଦେବ ପ୍ୟାଲେସ୍‌ରେ ପହଞ୍ଚିଲା ବେଳକୁ ସେଠାରେ ଭୋଜନ ପ୍ରସ୍ତୁତିର ଶେଷ ପର୍ବ ଚାଲିଥାଏ । ମାତ୍ର କିଛି କ୍ଷଣର ଅପେକ୍ଷା ପରେ ସାମାନ୍ୟ ହାଲୁକା ପ୍ରସାଦ ସେବନ (ଅପରାହ୍ଣର ବିଳମ୍ବିତ ପ୍ରସାଦ ଗ୍ରହଣ ଓ ରାତ୍ରି ୨ଘ.୩୦ମି.ରେ ଷ୍ଟେସନ ଅଭିମୁଖେ ଯାତ୍ରା ଯୋଗୁଁ ) ପରେ ଅଳ୍ପ ସମୟ ପାଇଁ ରାତ୍ରି ବିଶ୍ରାମ ନେଲୁ ।

### ତା. ୧୧.୦୫.୨୦୧୧

ରାତ୍ରି ୩ଘଣ୍ଟା ସମୟରେ ଦେଓଘରରୁ ବିଦାୟ ନେଇ ଜସିଡ଼ି ଷ୍ଟେସନରେ ପହଞ୍ଚିଲୁ । ଟାଟାନଗର ଛାପରା ଏକ୍ସପ୍ରେସ୍‌ର ଏସ୍-୬ ବଗିରେ ୨୮ ଓ ୨୯ନଂ ସିଟ୍‌ରେ ଆମ ପାଇଁ ବ୍ୟବସ୍ଥା ହୋଇଥିଲା । ୪ଘ.୩୦ମି. ସମୟରେ ଟ୍ରେନ୍ ପହଞ୍ଚିଲା । ଟ୍ରେନ୍‌ର ଖୁବ୍ କମ୍ ସମୟ ରହଣି ମଧ୍ୟରେ ବଗି ଗୁଡ଼ିକର ନମ୍ବର ପ୍ଲେଟ ଅସ୍ପଷ୍ଟ ଓ ଏସ୍-୪ ପରେ ପାର୍ଶଲ ଭ୍ୟାନ୍ ଓ ଶୀତ ତାପ ନିୟନ୍ତ୍ରିତ ବଗି ଆସିଯାଇଥିଲା । ତା'ପରେ ସାଧାରଣ ବଗି । ଆମ ଉଦ୍ଦିଷ୍ଟ ବଗି ଅନ୍ୱେଷଣ କରୁ କରୁ ଟ୍ରେନ୍‌ର ଗତି ଆରମ୍ଭ ହୋଇଯାଇଥିଲା । ଅନନ୍ୟୋପାୟ ହୋଇ ପ୍ରବଳ ଭିଡ଼ ଜମିଥିବା ସାଧାରଣ ବଗିରେ ଉଠିପଡ଼ିଲୁ । ଫାଟକ ପାଖରେ ଠିଆହୋଇଥିବା ଯୁବକ କେତେଜଣଙ୍କର

ସହାୟତାରେ ବଗି ଭିତରକୁ ଉଠିବାରେ ସମର୍ଥ ହୋଇପାରିଥିଲୁ । ଟ୍ରେନ୍ ଉଠିଲା ବେଳକୁ ସାମାନ୍ୟ ବର୍ଷା ହୋଇଥାଏ, ଉଠିଲା ପରେ ଆରମ୍ଭ ହେଲା ପ୍ରବଳ ବର୍ଷା । ସେହି ବଗିର ଯୁବକମାନେ ପ୍ରବଳ ଭିଡ଼ ସତ୍ତ୍ୱେ ଆମର ଜିନିଷ ରହିବାକୁ ଓ ଗୋଟିଏ ପାଦରେ ଠିଆ ହେବାକୁ ସ୍ଥାନ ଦେଲେ । ସେମାନେ ସୂଚନା ଦେଲେ ଟ୍ରେନ୍‌ର କେତୋଟି ବଗି ଅଲଗା ହୋଇ ଛାପରା ଯିବ ତେଣୁ ସେହି ଟ୍ରେନ୍‌ର ବଗିଗୁଡ଼ିକ ଏଭଳି ଭାବେ ସଜାଯାଇଛି । ୩/୪ଟି ବଗି ଡ଼େଇଁଲା ପରେ ଆମ ବଗି ଏସ୍-୬ । ଆମେ ଟ୍ରେନ୍‌ରେ ଉଠିପାରିଥିବା ବିଷୟ ଆମ ଆୟୋଜକ ସୁସେବକ ବାବାଙ୍କୁ ଜଣାଇଲୁ । ଝିପିଝିପି ବର୍ଷା ଲାଗି ରହିଥିବା ସମୟରେ ୨ମିନିଟ୍ ପାଇଁ ଟ୍ରେନ୍ ଅଟକିଲା । ସେହି ସହୃଦୟ ଯୁବକଙ୍କ ସହାୟତାରେ ଆମେ ଆମ ଉଦ୍ଦିଷ୍ଟ ବଗିରେ ପ୍ରାତଃ ୬ଘଣ୍ଟା ସମୟରେ ପହଞ୍ଚିଲୁ । ଫାଟକ ପାଖର ପ୍ରବଳ ଭିଡ଼ରେ ଜିନିଷପତ୍ର ଧରି ଚଳନ୍ତା ଟ୍ରେନ୍‌ରେ ଉଠିବା ଧୈର୍ଯ୍ୟ, ସାହସ ଓ ଶକ୍ତି ଦେଇଥିବା ପ୍ରଭୁଙ୍କ ଅପାର କରୁଣା ଯୋଗୁଁ ପ୍ରାର୍ଥନା ଜଣାଇଲୁ । ସେହିଦିନ ସେହି ବିପଦପୂର୍ଣ୍ଣ ମୁହୂର୍ତ୍ତରେ ସାହାଯ୍ୟ କରିଥିବା ବିହାରୀ ଯୁବକମାନଙ୍କୁ ଧନ୍ୟବାଦ ଜଣାଇ ଆଶ୍ୱସ୍ତିର ନିଃଶ୍ୱାସ ଛାଡ଼ିଲୁ । ବିହାରୀମାନଙ୍କ ପ୍ରତି ମନରେ ଥିବା ଭ୍ରମ ସେହିଦିନ ଆମ ସନ୍ଦେହକୁ ଦୂର କରିଥିଲା । ମନେ ମନେ ସେଇ ଶ୍ଲୋକଟିକୁ ସ୍ମରଣ କଲି -

> ''ଅମନ୍ତ୍ରମକ୍ଷରଂ ନାସ୍ତି ନାସ୍ତି ମୂଳ ମହୌଷଧିଃ,
> ନିର୍ଗୁଣଃ ପୁରୁଷୋ ନାସ୍ତି ଯୋଜକସ୍ତତ୍ର ଦୁର୍ଲ୍ଲଭଃ'' ।

ଅର୍ଥାତ୍ ଏପରି କୌଣସି ଅକ୍ଷର ନାହିଁ, ଯାହା ମନ୍ତ୍ର ନୁହେଁ, ଏମିତି କୌଣସି ମୂଳ ନାହିଁ, ଯାହା ଔଷଧ ନୁହେଁ, ଏମିତି କୌଣସି ଲୋକ ନାହିଁ, ଯାହାଠାରେ କିଛି ବି ଗୁଣ ନାହିଁ, କେବଳ ଦୁର୍ଲ୍ଲଭ ହେଉଛି ଚିହ୍ନରା ଲୋକ ବା ଯୋଜକ । ଏଠାରେ ସ୍ମରଣଯୋଗ୍ୟ ଯେ ଉତ୍ତର-ଭାରତ ତୀର୍ଥଯାତ୍ରା ସମୟରେ ବୋଧଗୟା ସହରରେ ବିଜୁଳି ବ୍ୟଘାତ ଯୋଗୁଁ ଏକାଭଳି ଦେଖାଯାଉଥିବା ଚାରିଛକରେ ବାଟ ଭୁଲିବା ସମୟରେ ଗୟା ଯୁବକଙ୍କ ଠାରୁ  ସାହାଯ୍ୟ ପାଇଥିଲୁ । ତେଣୁ 'ଗୟାଚୋର', 'ବିହାରୀ ଗୁଣ୍ଡା' ଭଳି ଅପବାଦ ଆମ ପାଇଁ ଭୁଲ ପ୍ରମାଣିତ ହୋଇଥିଲା । ଏହିସବୁ ଅନୁଭୂତିରୁ ମୋର ମନକୁ ବାରମ୍ବାର ଏକ ସନ୍ଦେଶ ଆସେ ''ଲୋକ ଚରିତ୍ର ଅନୁଧ୍ୟାନ ହିଁ ତୀର୍ଥଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟ'' ପ୍ରଭୁଙ୍କର ଅହେତୁକୀ କୃପା ଓ ଅଚିହ୍ନା ଯୁବକଙ୍କର ସାହାଯ୍ୟ ବିଷୟ ସ୍ମରଣ କରୁ କରୁ ସ୍ୱାଦିଷ୍ଟ ପ୍ରସାଦ ବିତରଣ ପର୍ବ ଆରମ୍ଭ ହୋଇଯାଇଥିଲା । ଦିନ ୧୦ଘ.୩୦ମି. ସମୟରେ ଦହିଭାତ, ଆଚାର, କାକୁଡ଼ି,

ଆଳୁଚଟଣୀ ଓ ପାପଡ଼ ଭଳି ଉତ୍ତମ ଭୋଜନର ମଜା ନେବା ସମୟରେ ନବରଙ୍ଗପୁରର ଶିକ୍ଷକ ଶ୍ରୀ ନିତ୍ୟାନନ୍ଦ ପାଢ଼ୀଙ୍କର ସହ ଶ୍ରେଣୀରେ ଛାତ୍ର ଛାତ୍ରୀମାନଙ୍କ ସଫଳତାର Criateria ବିଷୟରେ ଆଲୋଚନା କଲୁ । କଥାବାର୍ତ୍ତାର ଯବନିକା ନ ପଡୁଣୁ ଗାଡ଼ି ମୁଜାପଂରପୁର ଷ୍ଟେସନରେ ପହଞ୍ଚିବା ବେଳକୁ ଦିନ ୩ଟା ହୋଇଯାଇଥିଲା । ନିର୍ଦ୍ଧାରିତ ବସ୍ ଯୋଗେ ରକ୍ସଲ ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ମୁସଲମାନ ବହୁଳ ଅଞ୍ଚଳ ରାସ୍ତାରେ ବସ୍ ଚାଲୁଥିଲା । ରାସ୍ତାର ଦୁଇ ପାର୍ଶ୍ୱରେ ଅବାଧ ଗୋରୁକଟା ପରିଲକ୍ଷିତ ହେଉଥିଲା । ହିନ୍ଦୁ ଧର୍ମର ତିନୋଟି 'ଗ', 'ଗଙ୍ଗା', 'ଗୋମାତା' ଓ 'ଗାୟତ୍ରୀ'ର ସୁରକ୍ଷା ଏ ଦେଶରେ କେବେ ସମ୍ଭବ ହେବ ସେହି ବିଷୟ ମନ ଓ ବିବେକକୁ ଆନ୍ଦୋଳିତ କରୁଥିଲା । ସଂସଦ ମେନେକା ଗାନ୍ଧୀ, ସମାଜସେବୀ ମେଧା ପାଟକର, ଯୋଗଗୁରୁ ବାବା ରାମଦେବଙ୍କ କରୁଣ ନିବେଦନ ବୋଧହୁଏ ଏମାନଙ୍କ କର୍ଣ୍ଣପଥରେ ପ୍ରବେଶ କରି ଫେରିଆସୁଛି । ଏ ଦେଶରେ କେବେ 'ଗୋ-ବଧ' ନିଷେଧ ହୋଇ 'ଗୋ-ସୁରକ୍ଷା' ସଂପାଦିତ ହେବ ଏଇ ଚିନ୍ତା ଆମ କ୍ଷୁଦ୍ର ମସ୍ତିଷ୍କର କଳ୍ପନାର ବାହାରେ ଥିଲା । ମୁଜାପଂରପୁର ଠାରେ ଗନ୍ତବ୍ୟସ୍ଥଳ ରକ୍ସଲର ଦୂରତା ୧୩୦କି.ମି ୩୦କି.ମି ପର୍ଯ୍ୟନ୍ତ ଚାରୋଟି ଲେନ୍‌ର ପକ୍‌କା ରାସ୍ତା, ଆଉ ୧୦୦କି.ମି । ରାସ୍ତା ଏତେ କଦର୍ଯ୍ୟ ଥିଲା ଯେ 'ଝୁଲରେ ହାତୀ ଝୁଲ' ଭଳି ବସିବା ହେଲା । ଆମ ଓଡ଼ିଶାରେ କେବଳ ରାସ୍ତା କଦର୍ଯ୍ୟ ବୋଲି ଯେଉଁ ଭୁଲ୍ ଧାରଣା ଥିଲା ସେହି ଧାରଣା ମନରୁ ଦୂର କଲୁ । ସମଗ୍ର ଭାରତ ବର୍ଷରେ ରାଜନେତାଙ୍କ ପକେଟ୍ ପଇସାର ବଳକା ଅର୍ଥରେ ରାସ୍ତା ନିର୍ମିତ ବୋଲି ପ୍ରମାଣ ପାଇଗଲୁ । ସଂଧ୍ୟା ୫ଘ.୩୦ମି. ପରଠାରୁ ରାସ୍ତା ପାର୍ଶ୍ୱର ପ୍ରାକୃତିକ ସୌନ୍ଦର୍ଯ୍ୟ ଯାତ୍ରା ଜନିତ କ୍ଲାନ୍ତିକୁ ଲାଘବ କରୁଥିଲା । ରାସ୍ତା ପାର୍ଶ୍ୱରେ ଲିଚୁ ଉଦ୍ୟାନ, ଏକ ପ୍ରକାର ଧଳା ମାଟି ଗଦା ଗୁଡ଼ାଏ ପରିଲକ୍ଷିତ ହେଉଥିଲା । କେତେକ ସ୍ଥାନରେ ଘାଟି ରାସ୍ତା ଅତିକ୍ରମ କରିବାକୁ ପଡୁଥିଲା । ଗୋଟିଏ ପାର୍ଶ୍ୱରେ ''ନାରାୟଣୀ ନଦୀ'', ଅପର ପାର୍ଶ୍ୱରେ ଅନୁଚ୍ଚ ପର୍ବତମାଳା ଅପରୂପ ଶୋଭା ପ୍ରଦର୍ଶନ କରୁଥିଲା । ସରକାରୀ କଳର ଅବହେଳା ବିଷୟରେ (ଖରାପ ରାସ୍ତା ଯୋଗୁଁ) ଆଲୋଚନା କରୁ କରୁ ଗାଡ଼ି ସଂଧ୍ୟା ୭ଘ.୩୦ମି.ରେ ରକ୍ସଲରେ ପହଞ୍ଚିଲା । ନିର୍ଦ୍ଧାରିତ ହୋଟେଲ୍‌ରେ ଗାଡ଼ି ପହଞ୍ଚାଇବା ପାଇଁ ବସ୍ ଡ୍ରାଇଭର୍ ଅରାଜି ହେବାରୁ ଯାତ୍ରୀ ଓ ବାବାମାନଙ୍କ ମଧ୍ୟରେ କିଛି ଯୁକ୍ତିତର୍କ ଚାଲିଲା । ସମାଧାନ ପରେ ରକ୍ସଲ୍ ସହରର BORDER KING ହୋଟେଲରେ ପହଞ୍ଚିଲୁ । ଦଶମିନିଟ୍ ସମୟ ମଧ୍ୟରେ କେବଳ ସତେଜ ହେବା ପାଇଁ ଦୁଇ ଦଂପତିଙ୍କ ପାଇଁ ଗୋଟିଏ ଗୋଟିଏ କୋଠରୀର ବ୍ୟବସ୍ଥା କରାଯାଇଥିଲା । ବିଡ଼ମ୍ବନାର ବିଷୟ ରୁମ୍‌ରେ ପ୍ରବେଶ ନ ହେଉଣୁ ରୁମ୍

ଛାଡ଼ିବା ପାଇଁ ଅନ୍ୟ ଯାତ୍ରୀଙ୍କ ଠାରୁ (ଆମ ଦଳର ନୁହଁ) କଡ଼ା ନିର୍ଦ୍ଦେଶ ମିଳିଲା । ତା'ପରେ ସେହି ହୋଟେଲର ତୃତୀୟ ମହଲାସ୍ଥ ବିରାଟ ସାଧାରଣ ପ୍ରକୋଷ୍ଠରେ ପ୍ରସାଦ ସେବନ ପାଇଁ ଏକତ୍ରିତ ହେଲୁ । ଗରମା-ଗରମ ପ୍ରସାଦ ସେବନ ପରେ ନେପାଳ ସୀମା ଅଭିମୁଖେ ଯାତ୍ରା ବିଷୟ ବାବାମାନଙ୍କ ସହ ଆଲୋଚନା କଲୁ । ବାବାମାନେ ଟ୭୫.୦୦ ଲେଖାଁଏ ଦେଇ ଦୁଇ ଦୁଇଟି ଦଂପତି ଗୋଟାଏ ଟାଙ୍ଗାରେ ପ୍ରଥମେ ଭାରତ ସୀମା ଶେଷରେ ପହଞ୍ଚି ପୁଣି ନେପାଳ ସୀମା ଆରମ୍ଭରେ ଅନ୍ୟ ଏକ ଟାଙ୍ଗାରେ ଟ୭୫.୦୦ ଲେଖାଁଏ ଦେଇ ଯାଇ କିଛି ବାଟ ପରେ ଥିବା ନେପାଳ ଯାତ୍ରା ପାଇଁ ଉଦ୍ଦିଷ୍ଟ ଥିବା ବସ୍‌ରେ ବସିବାକୁ ନିର୍ଦ୍ଦେଶ ଦେଲେ । ରାତ୍ରି ସମୟ, ଅପରିଚିତ ସ୍ଥାନ, ସୀମାନ୍ତ ଅଞ୍ଚଳ କେବଳ 'ପଶୁପତିନାଥ' ହିଁ ଭରସା ବୋଲି ଭାବି ମହାମୃତ୍ୟୁଞ୍ଜୟ ମନ୍ତ୍ର ସ୍ମରଣ କରି ଟାଙ୍ଗାରେ ବସିଲୁ । ସେହିଦିନ ଆମର ଟାଙ୍ଗା ସାଥି ଥିଲେ ବ୍ରହ୍ମପୁରର ଶ୍ରୀ ଚନ୍ଦ୍ରମଣି ମିଶ୍ର ଓ ତାଙ୍କ ସହଧର୍ମିଣୀ । ମେଘାଚ୍ଛନ୍ନ ଆକାଶରେ ଶୁକ୍ଳ ଅଷ୍ଟମୀର ଜହ୍ନ ଅସ୍ପଷ୍ଟ ଥିଲେ । 'କେଦାରନାଥ'ଜୀଙ୍କ ଦର୍ଶନ ପାଇଁ ଯିବା ସମୟରେ ଘୋଡ଼ାଚଢ଼ାର ତିକ୍ତ ଅନୁଭୂତି ଥିଲା । ବର୍ତ୍ତମାନ ମଧ୍ୟ ସେଇ ଅବସ୍ଥାର ପୁନରାବୃତ୍ତି ହେଲା । ଅମାନିଆ ଘୋଡ଼ା, ଅବାଧ୍ୟ ଚାଳକ । ରାସ୍ତା ସାରା ଖାଲ ଖମା ଓ HUMPS ପୂର୍ଣ୍ଣ । ଘୋଡ଼ାର ଖୁରା ଖାଲରେ କିମ୍ବା HUMPS ଉପରେ ପଡ଼ିଲେ ଆମ ଅବସ୍ଥା ଯାହା ହେଉଥିଲା ତାହା ନ କହିଲେ ଭଲ । ଧୀରେ ସୁବିଧାରେ ଟାଙ୍ଗା ଚଳାଇବାକୁ ଯେତେ ପ୍ରକାର 'ବାପ', 'ଧନ' କଲେ ମଧ୍ୟ ସେ ଶୁଣିବାକୁ ନାରାଜ । କିଛି ବାଟ ଗଲା ପରେ ତା'ର ମୁଖ ନିଃସୃତ ଦେଶୀ ପାନୀୟର ସୁଗନ୍ଧ ମନରେ ଭୟ ସଞ୍ଚାର କରୁଥିଲା । ଖୋଲାଯାଗା, ଗାଁ ସହର କିଛି ନାହିଁ, ରାତ୍ରି ସମୟର ପ୍ରବଳ ପବନ ଦେହର ଲୁଗାପଟା ଅସ୍ତବ୍ୟସ୍ତ କରୁଥିଲା । ରାସ୍ତାର ଦୂରତା ୧କି.ମି ହେଲେ ମଧ୍ୟ ଯାତ୍ରା ଜନିତ କ୍ଳାନ୍ତି ଅସହ୍ୟ ଥିଲା । ବିରକ୍ତିକର ଯାତ୍ରାର ଅନ୍ତ ଘଟିଲା । ଭାରତ ସୀମା ବୀରଗଞ୍ଜ ଫାଟକରେ ତନଖି ହେଉଥିବା ଖବର ପୂର୍ବଯାତ୍ରୀ ମାନଙ୍କଠାରୁ ଶୁଣିବାକୁ ପାଇଲୁ କିନ୍ତୁ ISKCON BEDGE ଦେଖାଇ ଆମେ ବିନା ତନଖିରେ ପାର ହେଲୁ । ଏଠାରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା । ATM ବ୍ୟବହାରର ଆଶଙ୍କାରେ ଆମେ ସମସ୍ତ ଯାତ୍ରା ଖର୍ଚ୍ଚ ନଗଦ ଆକାରରେ ନେବାକୁ ଠିକ୍ ମନେ କରିଥିଲୁ । ଅନ୍ଧାର ରାତିରେ ଜିନିଷପତ୍ରର ତନଖି କରିବା ସମୟରେ ନଗଦ ଟଙ୍କାର ଅବ୍ୟବସ୍ଥା ହେବା ଦୃଷ୍ଟିରେ ରଖି ତାକୁ ସୁରକ୍ଷିତ ସ୍ଥାନରେ ସାଇତି ତନଖି ପାଇଁ ପ୍ରସ୍ତୁତ ହେଲୁ । ତନଖି ହେଲା ନାହିଁ ସିନା ପୂର୍ବ ଯାତ୍ରୀ ମାନଙ୍କର ସତର୍କବାଣୀ ଆମ ପାଇଁ ବିଧି ନିର୍ଦ୍ଦେଶ ଥିଲା । ପରବର୍ତ୍ତୀ ସମୟରେ ଏଭଳି ଆକସ୍ମିକ ବିପଦରୁ ଉଦ୍ଧାର ପାଇଥିବା

କଥା ବର୍ଣ୍ଣନା କରାଯାଇଛି । ରାତି ୧୧ଟାରେ ଆମ ନିର୍ଦ୍ଧାରିତ ବସ୍ ନିକଟରେ ପହଞ୍ଚିଲୁ । ବସ୍ ଫାଟକ ବନ୍ଦ । ରାତି ଗୋଟାଏରେ ବାବାମାନେ ବସ୍ ନିକଟରେ ପହଞ୍ଚିଲେ ବସ୍ ଫାଟକ ଖୋଲା ହେବା ବିଷୟ ଡ୍ରାଇଭର୍ ମାନଙ୍କଠାରୁ ଶୁଣିବାକୁ ପାଇ ହତାଶ ହେଲୁ, କିନ୍ତୁ ଇନ୍ଦ୍ରଦେବତାଙ୍କ ପୁଷ୍ପ ବୃଷ୍ଟି ମାଧ୍ୟମରେ ଆଶୀର୍ବାଦ ଯୋଗୁଁ ବସ୍ ଫାଟକ ଖୋଲିବା ପାଇଁ ଡ୍ରାଇଭରମାନେ ବାଧ୍ୟ ହେଲେ । ବସ୍‌ରେ ଉଠିବା ପରେ ମୂଷଳ ଧାରାରେ ବର୍ଷା ଆରମ୍ଭ ହେଲା । ଆମ ସୁଟ୍‌କେଶ୍‌ଟି ବସ୍‌ର ଡ଼ିକି ତଳେ ଥିଲା । ତା' ଉପରେ ଅନ୍ୟ ମାନଙ୍କର ଜିନିଷ । ଏକରେ ଲୋଚାକୋଚା ହୋଇ ଆମ ଦାମିକା ସୁଟ୍‌କେଶ୍‌ଟି ତ ତା'ର ଅସ୍ତିତ୍ୱ ହରାଇଲା । ପୁଣି ବର୍ଷା ପାଣିଛାତ ଉପରୁ ଖସି ଡ଼ିକିରେ ପହଞ୍ଚି ସଂପୂର୍ଣ୍ଣ ତଳେ ଥିବା ସୁଟ୍‌କେଶ୍‌ଟିକୁ ଭିତର ବାହାର ସଂପୂର୍ଣ୍ଣ ଓଦା କରିଦେଇଥିଲା । ନେପାଳରେ ପହଞ୍ଚି ସୁଟ୍‌କେଶ୍‌ଟି ଦେଖିଲା ବେଳକୁ ଲୁଗାପଟା ଓଦା ହୋଇଯାଇଥିଲେ ମଧ୍ୟ ତନଖି ଭୟରେ ଟଙ୍କା ପଇସା ଅନ୍ୟତ୍ର ରଖାଯାଇଥିବାରୁ ଅର୍ଥ ସୁରକ୍ଷିତ ଥିଲା । ଏହିସବୁ ଅଚାନକ ବିପତ୍ତିର ଉଦ୍ଧାରକର୍ତ୍ତା ବିଭୁ ପାଦତଳେ ପ୍ରଣତି ଜଣାଇ ଶୁଖାଶୁଖି କାମରେ ଲାଗିପଡ଼ିଲୁ । ନେପାଳର ପ୍ରବଳ ବିଦ୍ୟୁତ୍ ସଂକଟ ସ୍ଥଳେ ରେଷ୍ଟୁରାଣ୍ଟର ୨୪ ଘଣ୍ଟିଆ ବିଦ୍ୟୁତ୍ ସରବରାହ, ଦୁଇଟି ଖଟର ବାଡ଼ ଓ ବେତ ତିଆରି ଏକ ଆଲଣର ବ୍ୟବସ୍ଥା ଆମ ପାଇଁ ବିଧାତାଙ୍କର ଅପୂର୍ବ ବିଧାନର ଉଦାହରଣ ଥିଲା । ରାତି ଗୋଟାଏରେ ନେପାଳ ଯାତ୍ରା କଷ୍ଟଦାୟକ ହେଲେ ମଧ୍ୟ ଏକ ପ୍ରକାର ଆନନ୍ଦ ସୃଷ୍ଟି କରୁଥିଲା । ଆମ ପାଇଁ ଉଦ୍ଦିଷ୍ଟ ୧୯୪୯ ନଂ 'ଜଗନ୍ନାଥ' ବସ୍‌ର ଡ୍ରାଇଭର୍ ଓ ହେଲ୍‌ପର ପିଲା ଭାରି ମେଳାପୀ ଥିଲେ । ସକାଳ ୬ଘ.୧୦ମି.ରେ ନିତ୍ୟକର୍ମ ସମାପନ ପାଇଁ 'ନାରାୟଣୀ' ନଦୀ କୂଳରେ ପାହାଡ଼ ପାର୍ଶ୍ୱରେ 'ମୋଗଲାଇ' ନାମକ ଏକ ସ୍ଥାନରେ ବସ୍ ଅଟକିଲା । ଶୌଚାଳୟ ଓ ହୋଟେଲ୍ ବ୍ୟବସ୍ଥା ଥିବା ଯୋଗୁଁ ସମସ୍ତ ଯାତ୍ରୀ ଅବସନ୍ନ ଶରୀରକୁ ପୁନଃ ସତେଜ କରିବା ପାଇଁ ସକ୍ଷମ ହୋଇଥିଲେ ।

**ତା. ୧୨.୦୪.୨୦୧୧**

ସାହେବୀ କାଇଦାରେ ଅଭ୍ୟସ୍ତ କେତେଜଣ ତୀର୍ଥଯାତ୍ରୀଙ୍କର ପୁନଃ ଚା'ପାନ ଅଭ୍ୟାସ ଯୋଗୁଁ ସକାଳ ୮ଟା ସମୟରେ 'ମଲେଖୁ' ନାମକ ଏକ ବଜାର ସ୍ଥାନରେ ଗାଡ଼ି ଅଟକିଲା । ଭାରତର ଏକଶହ ଟଙ୍କା ସହ ସେଠାକାର ଟ୧୬୦.୦୦ ସମାନ ବୋଲି ସେଠାରେ ଜାଣିବାକୁ ପାଇଲୁ । ନେପାଳ ରାଜା ଜ୍ଞାନେନ୍ଦ୍ର, ଶ୍ରୀପଶୁପତିନାଥ ଓ ତରାଇ ଅଞ୍ଚଳର ପ୍ରାକୃତିକ ଚିତ୍ର ସମ୍ବଳିତ କେତୋଟି କାଗଜ ନୋଟ୍ ଓ ନେପାଳୀ

ମୁଦ୍ରା ସେଠାରୁ ସଂଗ୍ରହ କଲୁ । ଦିନ ୧୨ଘ.୧୦ମି.ରେ କାଠମାଣ୍ଡୁ ବସ୍‌ଷ୍ଟାଣ୍ଡରେ ପହଞ୍ଚିଲୁ । କାଠମାଣ୍ଡୁରେ ଆମେ ୧୨୦ଜଣ ତୀର୍ଥଯାତ୍ରୀଙ୍କ ପାଇଁ ୫ଟି ଗେଷ୍ଟହାଉସ୍‌ର ବନ୍ଦୋବସ୍ତ ହୋଇଥିଲା । ଆମ ପାଇଁ ନିର୍ଦ୍ଧାରିତ ଗଳିକନ୍ଦି ଭିତରେ ଥିବା 'ପୋଖରା ତନହୁ ଗେଷ୍ଟ ହାଉସ୍'ର ଦ୍ୱିତୀୟ ମହଲାର ୨୦୧ନଂ କୋଠରୀ ଆମ ପାଇଁ ଉଦ୍ଦିଷ୍ଟ ଥିଲା । ପ୍ରଥମେ ପୂର୍ବ ରାତିରେ ଭିଜିଥିବା ଓଦାବସ୍ତ୍ର ଶୁଖାଇବା ବ୍ୟବସ୍ଥା ଓ ପରେ ନିତ୍ୟକର୍ମ ସମାପନ ପରେ ନିର୍ଦ୍ଧାରିତ ବସ୍ ଯୋଗେ ପ୍ରସାଦ ସେବନ ଉଦ୍ଦେଶ୍ୟରେ କାଠମାଣ୍ଡୁ ଇସ୍କନ ମନ୍ଦିର ଅଭିମୁଖେ ଯାତ୍ରା କଲୁ । ପୁଷ୍ପ ବୃଷ୍ଟି ସଦୃଶ ବର୍ଷା, ଭୋଜନ ଗ୍ରହଣ ସ୍ଥାନରେ ସ୍ୱଳ୍ପ ଆୟତନ, ସର୍ବୋପରି କ୍ଷୁଧାଯୁକ୍ତ ତୀର୍ଥଯାତ୍ରୀଙ୍କର ଅସହିଷ୍ଣୁ ମନୋଭାବ ସେହି ସମୟରେ ସେଠାକାର ପରିବେଶକୁ କୋଳାହାଳମୟ କରି ଦେଇଥିଲା । ସୁସ୍ୱାଦୁ ସ୍ୱାଦିଷ୍ଟ ପ୍ରସାଦ ସେବନର ମଜା ସମସ୍ତଙ୍କ ପକ୍ଷରେ ସମ୍ଭବପର ହୋଇପାରିନଥିଲା । ପ୍ରସାଦ ସେବନ ପରେ ଛୋଟିଆ ପାହାଡ଼ ଉପରିସ୍ଥ ଇସ୍କନ ମନ୍ଦିର ଦର୍ଶନ ଇଚ୍ଛା ଜାଗ୍ରତ ହେଲା । ୨୦/୩୦ଟି ମାର୍ବଲ ପାହାଚ ଚଢ଼ିଲା ପରେ ମନ୍ଦିର । ପୂର୍ବରୁ ଦର୍ଶନ ଉଦ୍ଦେଶ୍ୟରେ ଯାଇଥିବା ତୀର୍ଥଯାତ୍ରୀ ମାନଙ୍କଠାରୁ 'ମନ୍ଦିର ବନ୍ଦ', 'ମନ୍ଦିର ଖୋଲା' ପରସ୍ପର ବିରୋଧାଭାସ ଶୁଣିବାକୁ ପାଇଲୁ । ବର୍ଷାରୁ ରକ୍ଷା ପାଇବା ପାଇଁ ବସ୍ ନିକଟରେ ପହଞ୍ଚିବା ଉଦ୍ଦେଶ୍ୟରେ 'ପରେ ଆସି ଦର୍ଶନ କରିବା' ବୋଲି କଥାବାର୍ତ୍ତା ହୋଇ ଫେରିଲୁ । ଆମ କଥାବାର୍ତ୍ତା ଶୁଣି ଆମ ପଛରେ ଆସୁଥିବା ଭୁବନେଶ୍ୱରର ୨୦/୨୫ ବର୍ଷର ବିକାଶ କୁମାର ବେହେରା ନାମକ ଜଣେ ସହୃଦୟ ଯୁବକ କହିଲା, ''ମାଉସୀ ! ଏମାନଙ୍କର କାର୍ଯ୍ୟକ୍ରମର କିଛି ଠିକ୍ ଠିକଣା ରହୁନାହିଁ, ହୁଏତ ଆଉ ଥରେ ଆପଣଙ୍କୁ ଏଠାକୁ ଆସିବା ସୁଯୋଗ ମିଳିପାରେ ବା ମିଳି ନ ପାରେ, ଲୋକେ ଖାଇ ବସିଛନ୍ତି, ମନ୍ଦିର ଖୋଲା ହେଲାଣି, ଆପଣ ଯାଉନାହାନ୍ତି ଦର୍ଶନ କରି ଫେରି ଆସିବେ'' । ଯୁବକଟିର କଥାକୁ ଗୁରୁତ୍ୱ ଦେଇ ବର୍ଷାରେ ଭିଜି ଭିଜି ଦର୍ଶନ ପାଇଁ ବାହାରିଲୁ । କାଠମାଣ୍ଡୁ ଇସ୍କନ ମନ୍ଦିରର ଅଧିଷ୍ଠାତା ଶ୍ରୀ ରାଧାଗୋବିନ୍ଦ ହରି, ଶ୍ରୀ ଚୈତନ୍ୟ ନିତ୍ୟାନନ୍ଦ, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଆଖି ପୁରାଇ ଦର୍ଶନ କରି ଫେରି ଆସିଲୁ ଓ ଦର୍ଶନ ପାଇଁ ସୂଚନା ଦେଇଥିବା ଯୁବକଟିକୁ ଧନ୍ୟବାଦ ଜଣାଇଲୁ । ସଂଧ୍ୟା ୪ଟାରେ ଇସ୍କନ ମନ୍ଦିରରୁ ବିଦାୟ ନେଇ ପ୍ରସିଦ୍ଧ ପଶୁପତିନାଥଙ୍କ ଦର୍ଶନରେ ବାହାରିଲୁ । କେଦାରନାଥଜୀଙ୍କ ଦର୍ଶନ ସମୟରେ ଇସ୍କନ ବାବାମାନଙ୍କଠାରୁ ଓ ସ୍ଥାନୀୟ ପୂଜକ ମାନଙ୍କଠାରୁ 'ଦେବଦେବ ମହାଦେବଙ୍କ ମସ୍ତକ ପଶୁପତିନାଥ ରୂପେ ଓ ଶରୀର  କେଦାରନାଥ ରୂପେ ପୂଜିତ' ବୋଲି ଶୁଣିବାକୁ ପାଇଥିଲୁ । ସେହିଦିନ ଠାରୁ ପଶୁପତିନାଥଙ୍କ ଦର୍ଶନ ଲାଳସା ମନ ଭିତରେ ଭରି ରହିଥିଲା ।

ଆଜି ସଂପୂର୍ଣ୍ଣ ହେବା ବିଷୟ ଚିନ୍ତାକରି ଆନନ୍ଦିତ ହେଲୁ । ପ୍ରବଳ ବର୍ଷା ସତ୍ତ୍ୱେ ରାସ୍ତାରେ ବୁଢ଼ା ନୀଳକଣ୍ଠଙ୍କ ମନ୍ଦିର ନିକଟରେ ବସ୍ ଅଟକିଲା । ଜଳଶାୟୀ ଅନନ୍ତ ଶୟନ ବିଷ୍ଣୁ ଭଗବାନଙ୍କର କଳା ମୁଗୁନି ପଥରର ଏକ ବିରାଟ ପ୍ରସ୍ତର ମୂର୍ତ୍ତି ଏଠାରେ ବିଦ୍ୟମାନ । ବେଢ଼ା ଭିତରେ ଶ୍ରୀ ମହାଦେବ ଓ ଅନ୍ୟ କେତୋଟି ଛୋଟ ବଡ଼ ପାର୍ଶ୍ୱ ଦେବଦେବୀ ମନ୍ଦିର ସେହି ସ୍ଥାନରେ ବରାଜିତ । ସୁରମ୍ୟ ଉଦ୍ୟାନର ପୁଷ୍ପରାଜି ଦର୍ଶକ ମନକୁ ଆକୃଷ୍ଟ କରୁଥିଲା । 'ନେପାଳ ପରିକ୍ରମା' ନାମକ ଏକ ପୁସ୍ତକ କିଣି ତରତର ହୋଇ ବସ୍ ନିକଟକୁ ଫେରିଲାବେଳକୁ ମନ୍ଦିର ବେଢ଼ାରେ ସୁନ୍ଦର ସୁଠାମ ଚେହେରାର ୭/୮ ବର୍ଷର ବାଳିକାଟିଏ କିଛି ମାଗିବା ଉଦ୍ଦେଶ୍ୟରେ ହାତ ବଢ଼ାଇଲା । ଆମ ପୁରୀ ଟୋକାଙ୍କ ଭଳି ଜୋର୍ ଜବରଦସ୍ତି ନାହିଁ, 'ଶ୍ରଦ୍ଧାରେ ମୁଝେ ପୈସା ଦୋ' ବୋଲି ବିନତି କଲା । ଆମେ ପଚାରିଲୁ -''ପଇସା କ'ଣ କରିବୁ'' । ଉତ୍ତରରେ ସେ କହିଲା - 'କୁଛ ଖାଉଁଗୀ' । ତା'ର ସରଳ ମଧୁର କପଟ ରହିତ ବ୍ୟବହାର ବାରମ୍ବାର ମୋ ମନରେ ଗୁଞ୍ଜରି ଉଠୁଛି । ୪ଘ. ୪୦ମି. ସମୟରେ ବିଶ୍ୱ ପ୍ରସିଦ୍ଧ ପଶୁପତିନାଥ ମନ୍ଦିର ନିକଟରେ ବସ୍ ପହଞ୍ଚିଲା । ବସ୍ ପାର୍କିଙ୍ଗ ଠାରୁ ମନ୍ଦିର ପ୍ରାୟ ଅଧ କିଲୋମିଟର ରାସ୍ତା । ଏକ ରକମ ଦୌଡ଼ା ଦୌଡ଼ି କରି ମନ୍ଦିର ତୋରଣ ନିକଟରେ ପହଞ୍ଚିଲୁ । ସୁଉଚ୍ଚ ଚତୁଃପାର୍ଶ୍ୱର ଚାରୋଟି ବିଶାଳ ଦ୍ୱାର ମନ୍ଦିର ଆୟତନର ଶୋଭା ବର୍ଦ୍ଧନ କରୁଥିଲା । ବାଗମତୀ ନଦୀ କୂଳରେ ଅବସ୍ଥିତ, ପାଗୋଡ଼ା ଶୈଳୀରେ ନିର୍ମିତ, ସୁବର୍ଣ୍ଣ ଛାତ ଓ ରଜତ ଦ୍ୱାର ଓ କବାଟ ମଣ୍ଡିତ, ଅପୂର୍ବ ମାଧୁର୍ଯ୍ୟ ଶୋଭିତ ପଶୁପତିନାଥଙ୍କର କଳାକୃତି ଲମ୍ବା ଧାଡ଼ିରେ ଅପେକ୍ଷା କରିଥିବା ସମୟରେ ଲକ୍ଷ୍ୟ କରିଥିଲୁ । ଅନ୍ୟ ମନ୍ଦିର ନିର୍ମାଣ ଶୈଳୀ ଓ ଦର୍ଶନ ବ୍ୟବସ୍ଥା ଅପେକ୍ଷା ଏହି ମନ୍ଦିର ବ୍ୟବସ୍ଥା ସ୍ୱତନ୍ତ୍ର ଥିଲା । ମାତ୍ର ୨/୩ ମିଟର ବ୍ୟବଧାନରେ ଏକ ପ୍ରସ୍ତର ବାରଣ୍ଡାରେ ଦଣ୍ଡାୟମାନ ହୋଇ ଦେବଦେବ ମହାଦେବଙ୍କର ଦର୍ଶନ କରିବାକୁ ହୁଏ । ବୃଷଭ ପ୍ରକୋଷ୍ଠ, ଜଗମୋହନ ଓ ବିଜେ ପ୍ରକୋଷ୍ଠ ଭଳି ସାଧାରଣ ନିର୍ମାଣ ଶୈଳୀ ଏଠାରେ ପରିଲକ୍ଷିତ ହୋଇନଥିଲା । ଦେବଦେବଙ୍କର ଶକ୍ତି, ଲିଙ୍ଗ ଓ ଲିଙ୍ଗ ପଛରେ ତ୍ରି-ମସ୍ତକ ସୁଶୋଭିତ ଅର୍ଦ୍ଧାବୟବର ଈଶ୍ୱର ମୂର୍ତ୍ତି ଦର୍ଶନରେ ମନ ପ୍ରାଣ ପୁଲକିତ ହୋଇଉଠିଥିଲା । ବେଢ଼ାର ମଧ୍ୟ ଭାଗରେ, ମହାଦେବଙ୍କ ସମ୍ମୁଖରେ ବିରାଟ ପିତ୍ତଳ ବୃଷଭ ମନ୍ଦିର ବେଢ଼ାର ସୌନ୍ଦର୍ଯ୍ୟକୁ ବହୁଗୁଣିତ କରୁଥିଲା । ପାର୍ଶ୍ୱରେ ଭୈରବ ମନ୍ଦିର । କାନ୍ଥ ସବୁ ପିତ୍ତଳ ଛାଉଣୀ । ମନ ଭରି ପବିତ୍ର ସ୍ଥାନ ଦର୍ଶନ ପାଇଁ ବର୍ଷା ବାଧକ ସାଜିଲା । ରୁଦ୍ରାକ୍ଷ ଆଣିବା ପାଇଁ କେହି କେହି ଅନୁରୋଧ କରିଥିଲେ କିନ୍ତୁ ସଂଧ୍ୟା ଓ ପ୍ରବଳ ବର୍ଷା, ଡ୍ରାଇଭରମାନଙ୍କର ବାରମ୍ବାର ଡ଼ାକରା ଯୋଗୁଁ କିଣା କିଣିରୁ ବଞ୍ଚିତ ହେବାକୁ

ପଡ଼ିଲା, ପରଦିନ ଶ୍ରୀଯୁକ୍ତ ଚନ୍ଦ୍ରମଣି ବାବୁଙ୍କ ଠାରୁ ପଶୁପତିନାଥଙ୍କର ଏକ କାଗଜ ଫଟୋ ମାଗି ଆଣିବାକୁ ବାଧ୍ୟ ହୋଇଥିଲୁ । ରାତ୍ରି ପ୍ରସାଦ ରୁମ୍‌କୁ ଆଣି ଦିଆଯାଇଥିଲା ଓ ରିସେପ୍‌ସନ୍‌ରୁ ଆସନ୍ତା କାଲି 'ନେପାଳ ୧୨ ଘଣ୍ଟିଆ ବନ୍ଦ' ସୁସମାଚାର ମନ ଭିତରେ ହତାଶ ଭରି ଦେଇଥିଲା । ତଥାପି ଆଗାମୀ କାଲିର ମଙ୍ଗଳ ଚିନ୍ତା କରି ରାତ୍ରି ବିଶ୍ରାମ ନେଲୁ ।

**୧୩.୦୫.୨୦୧୧**

'ନେପାଳ ବନ୍ଦ' ଜାଣି ସୁଦ୍ଧା ନିତ୍ୟକର୍ମ ସମାପନ ପରେ ସକାଳ ୬ଘ.୩୦ମି. ସମୟରେ ଆମ ସଂରକ୍ଷିତ ଅନ୍ୟ ଏକ ରେଷ୍ଟୁରାଣ୍ଟ ନିକଟରେ ଜମା ହେଲୁ । ଇସ୍କନ ବାବାମାନେ କୌଣସି ପରିବହନ ସଂସ୍ଥା ସହ ଯୋଗାଯୋଗ କରି କିଛି ବ୍ୟବସ୍ଥା କରାଯିବ ବୋଲି ଆଶ୍ୱାସନା ଦେଉଥାଆନ୍ତି । ସକାଳ ୧୧ଘଣ୍ଟା ପର୍ଯ୍ୟନ୍ତ ଏଠି ସେଠି ହୋଇ ଶେଷରେ ବସ୍‌ଷ୍ଟାଣ୍ଡ ଗଲୁ । ଆମ ବରାଦ ଦୁଇଟି ବସ୍ ଆସିବା ରାସ୍ତାରେ ଟାୟାର ଜାଳିଥିବା ଯୋଗୁଁ ଫେରିଯାଇଥିବା ବିଷୟ ଫୋନ୍ ମାଧ୍ୟମରେ ଶୁଣିବାକୁ ପାଇଲୁ । କଡ଼ା ବିରୋଧ ସତ୍ତ୍ୱେ ଆମମାନଙ୍କ ଭିତରୁ ଦୁଇଟି ଦଂପତି ଟାକ୍ସି ଯୋଗେ ମନ୍ଦିର ଯାଇ ସ୍ୱତନ୍ତ୍ର ପୂଜାର୍ଚ୍ଚନା ସାରି ଫେରିବା ବିଷୟ ସେମାନଙ୍କର ପ୍ରସାଦ ବିତରଣ ପରେ ଜାଣିବାକୁ ପାଇଲୁ । ବହୁ କଷ୍ଟରେ ଇସ୍କନ ବ୍ୟାନର ଲଗାଇ କାଠମାଣ୍ଡୁ ଇସ୍କନ ମନ୍ଦିରରେ ପ୍ରସ୍ତୁତ ପ୍ରସାଦ 'ହୋଟେଲ୍ ବିନ୍ଧ୍ୟ ବାସିନୀ'ରେ ସମସ୍ତ ଯାତ୍ରୀଙ୍କୁ ଏକତ୍ରିତ କରି ବିତରଣ କରାଗଲା । ଛଣାଭଜା ଓ ସ୍ୱାଦିଷ୍ଟ କ୍ଷୀରି ସହ ଅନ୍ୟ ସମସ୍ତ ବ୍ୟଞ୍ଜନ ସେଦିନ ଅତି ଉତ୍କୃଷ୍ଟ ଧରଣର ଥିଲା । ସଂଧ୍ୟା ୫ଟା ସମୟରେ ସେଠାରେ ପ୍ରବଚନ କାର୍ଯ୍ୟକ୍ରମରେ ଯୋଗ ଦେଲୁ । ପ୍ରବଚନରେ ବାବା ଉଲ୍ଲେଖ କରିଥିଲେ ଯେ ଭକ୍ତଗଣ କେଦାରନାଥ ଓ ପଶୁପତିନାଥଙ୍କ ନିକଟରେ ପିତୃପୁରୁଷଙ୍କ ଦୁଃଖ ମୋଚନ ଉଦ୍ଦେଶ୍ୟରେ ପ୍ରାର୍ଥନା କରିଥାଆନ୍ତି । ବ୍ରହ୍ମପୁର ସହରବାସିନୀ 'ନିନି' ନାମକ ଜଣେ ଯୁବତୀଙ୍କ ସହାୟତାରେ କିଛି ମୁଣ୍ଡ କ୍ଲିପ୍, ହାର ଓ କିଛି ଉପହାର ସାମଗ୍ରୀ କିଣି ମନକୁ ସାନ୍ତ୍ୱନା ଦେଲୁ । କେତେଜଣ ବ୍ୟବସାୟୀ ଗୋଷ୍ଠୀର ତୀର୍ଥଯାତ୍ରୀ ଅପରାହ୍ନରେ ବନ୍ଦକୁ ଖାତିର ନ କରି 'ଚାଇନା ମାର୍କେଟ' ବୁଲିବା ପାଇଁ ବାହାରିଥିଲେ ମାତ୍ର ମାର୍କେଟ ବନ୍ଦ ହୋଇଥିବା ଯୋଗୁଁ ନିରାଶ ହୋଇ ଫେରିଥିଲେ । ରାତ୍ରିରେ ହୋଟେଲମାନଙ୍କୁ ପ୍ରସାଦ ପହଞ୍ଚାଇ ଦିଆଯାଇଥିଲା । ପ୍ରସାଦ ସେବନ ପରେ ରାତ୍ରି ବିଶ୍ରାମ ନେଲୁ ।

## ତା.୧୪.୦୫.୨୦୧୧, ଏକାଦଶୀ

ନିତ୍ୟକର୍ମ ସମାପନ ପରେ ଲଗେଜ୍ ସହ ସକାଳ ୫ଘ.୩୦ମି.ରେ କାଠମାଣ୍ଡୁ ବସ୍‌ଷ୍ଟାଣ୍ଡରେ ସମସ୍ତ ଯାତ୍ରୀ ଉପସ୍ଥିତ ହେଲୁ । ବସ୍ ଯୋଗେ ଦେବଘାଟ ଅଭିମୁଖେ ଯାତ୍ରାର ଯୋଜନା ଥିଲା । ପୂର୍ବ ଦିନ 'ବନ୍ଦ' ହୋଇଥିବା ଯୋଗୁଁ ସକାଳ ୭ଘଣ୍ଟା ସମୟରେ ନିର୍ଦ୍ଧାରିତ ବସ୍ ପହଞ୍ଚିଲା । ଯାତ୍ରାରମ୍ଭ ହେଲା । ଦିନ ୧୦ଘ.୪୫ମି. ସମୟରେ ଡ୍ରାଇଭର୍ ଓ ଯାତ୍ରୀ ମାନଙ୍କର ଜଳଯୋଗ ପାଇଁ 'ମୁଗଲିଙ୍ଗ' ନାମକ ସ୍ଥାନରେ ବସ୍ ଅଟକିଲା । ମାତ୍ର ୧୫ମିନିଟ୍‌ର ରହଣି ପରେ ବସ୍ ପୁଣି ଯାତ୍ରାରମ୍ଭ କଲା । ତୀର୍ଥାଟନ ସମୟରେ, ସାଧୁ ସଙ୍ଗତରେ ଥିଲାବେଳେ 'ଏକାଦଶୀ ବିଧି' ପାଳନ କରିବାକୁ ଆମେ ମନ ଭିତରେ ସଂକଳ୍ପ କରିଥିଲୁ, ତେଣୁ ପୂର୍ବ ଦିନ 'ଏକାଦଶୀ ପାରଣା' ତାଲିକାରେ ଆମ ନାମ ଯୋଡ଼ିଥିଲୁ । ତେଣୁ ରାସ୍ତାରେ ଖାଦ୍ୟ, ପାନୀୟ ପାଇଁ ବ୍ୟସ୍ତ ହେବା ଚିନ୍ତାରୁ ନିବୃତ୍ତ ଥିଲୁ । କାଠମାଣ୍ଡୁ ଉପତ୍ୟକାରୁ ଦେବଘାଟରେ ପହଞ୍ଚିବା ପର୍ଯ୍ୟନ୍ତ ପାହାଡ଼ ପର୍ବତ, ବଣ ଜଙ୍ଗଲ, ଉଦ୍ୟାନ, ଝରଣା ଇତ୍ୟାଦି ପ୍ରାକୃତିକ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ । ଜଳ-ଜମି-ଜଙ୍ଗଲ ଅତିକ୍ରମ କରି ଦେବଘାଟ ନିକଟରେ ବସ୍ ପହଞ୍ଚିଲା । ଦେବଘାଟ ସ୍ଥାନଟି ଗଣ୍ଡୁକୀ, ନାରାୟଣୀ ଓ ତ୍ରିଶୂଳୀ ନଦୀର ସଂଗମସ୍ଥଳ । ଶାଳଗ୍ରାମ ଶିଳାର ଅପୂର୍ବ ସମାହାର ନଦୀ ବକ୍ଷରେ ଥିବା ସ୍ମରଣ କରି ସ୍ନାନ ପରେ ଯାତ୍ରୀମାନଙ୍କର ଶାଳଗ୍ରାମ ଖୋଜିବା ପର୍ବ ଆରମ୍ଭ ହୋଇଗଲା । ସ୍ନାନ, ତର୍ପଣ, ଜଳଦାନ ଓ ଦକ୍ଷିଣା ପରେ ବୃକ୍ଷଛାୟାରେ ବିଶ୍ରାମ ନେଲୁ । ଏକାଦଶୀ ପ୍ରସାଦ ସେବନ ଓ ଅନ୍ୟ ଯାତ୍ରୀମାନଙ୍କର ପ୍ରସାଦ ସେବନ କାର୍ଯ୍ୟକ୍ରମ ଆରମ୍ଭ ହେଲା । ପ୍ରସାଦ ସେବନ ପରେ ଦିନ ୩ଟାରେ ଗାଡ଼ି ଚାଲିଲା ଜନକପୁରୀ ଅଭିମୁଖେ । ରାସ୍ତାସାରା ଛୋଟ ଓ ବଡ଼ ନଦୀମାନଙ୍କର ପୋଲ ଅତିକ୍ରମ କରି ଗାଡ଼ି ଚାଲୁଥାଏ । ମାଓବାଦୀ ଭୟ ଯୋଗୁଁ ଆଗକୁ ଆଗକୁ କଡ଼ା ନିରାପତ୍ତା ବ୍ୟବସ୍ଥା ପରିଲକ୍ଷିତ ହେଉଥିଲା । ସଂଧ୍ୟା ୬ଘଣ୍ଟା ସମୟରେ 'ବାକେୟା' ନଦୀକୂଳରେ କିଛି ସମୟ ପାଇଁ ବସ୍ ଅଟକିଲା । ଜନକପୁରୀ ହୋଟେଲ୍ ନିକଟରେ ପହଞ୍ଚିଲା ବେଳକୁ ରାତି ୯ଟା ବାଜିଥାଏ । ଜନକପୁରୀ ସହର ମଧ୍ୟରେ ପ୍ରବେଶ କରିବା ସମୟରେ ଗୋଟିଏ ଦୁଇଟି ବାହାଘର ପ୍ରୋସେସନ୍ ଦେଖି ସେମାନଙ୍କର ପ୍ରଥା ପରମ୍ପରା ବିଷୟରେ ଅବଗତ ହୋଇଥିଲୁ । ଜନକପୁରୀର ମାନେକା ହୋଟେଲ୍ ରେ ଆମ ପାଇଁ ସ୍ଥାନ ସଂରକ୍ଷିତ ହୋଇଥିଲା । ବର୍ଷା ଯୋଗୁଁ ପୂର୍ବ ଦୁଇଦିନର ମଇଳା ଲୁଗା ଥିଲା । ଜନକପୁରୀରେ ପହଞ୍ଚି ଲୁଗାସଫା କଲୁ ଓ ଏକାଦଶୀ ଉପବାସ ଥିବାରୁ ଫଳାହାର ପରେ ବିଶ୍ରାମ ନେଲୁ । ଜନକପୁରୀର ଦ୍ୱିତୀୟ ମହଲାର ୨୦୯ନଂ ରୁମ୍‌ରେ ସେଦିନ ଆମ ପାଇଁ



ଦେବଘାଟ (ଗଣ୍ଡକୀ, ନାରାୟଣୀ ଓ ତ୍ରିଶୂଳ ନଦୀର ସଙ୍ଗମ) ନେପାଳ, ତା. ୧୪.୦୫.୨୦୧୧

ବ୍ୟବସ୍ଥା କରାଯାଇଥିଲା । ପରଦିନ ସକାଳୁ ଶୁଣିବାକୁ ପାଇଲୁ ରାତି ଗୋଟାଏ ବେଳେ ପ୍ରସାଦ ସେବନ ପାଇଁ ରୁମ୍ ବୁଲି ପ୍ରତ୍ୟେକଙ୍କୁ ଡ଼କାଯାଇଥିଲା ତଥାପି ଅସହିଷ୍ଣୁ ନିନ୍ଦୁକ ଯାତ୍ରୀ କେତେ ଜଣ ସମବେତ ହେବା ସ୍ଥାନରେ ହୋ-ହଲ୍ଲା କରୁଥିଲେ ।

### *ତା. ୧୫.୦୫.୨୦୧୧, ସଂକ୍ରାନ୍ତି*

ନିତ୍ୟକର୍ମ ସମାପନ ପରେ ନିକଟସ୍ଥ ଏକ ଶିବ ମନ୍ଦିରରେ ଦର୍ଶନ ସାରି ଏକ ବିରାଟ ସାଗର ଭ୍ରମଣ ପରେ ଏକ ସ୍ୱତନ୍ତ୍ର ଧରଣର ଛତୁଆ ପାନ କରି ସଂକୀର୍ତ୍ତନ ମଣ୍ଡଳୀ ସହ ଜାନକୀ ମନ୍ଦିର ପରିକ୍ରମ୍ ଅପେକ୍ଷାରେ ରହିଲୁ । ଠିକ୍ ସକାଳ ୮ଘ.ରେ ମଦନବାବାଙ୍କ ନେତୃତ୍ୱରେ ସଂକୀର୍ତ୍ତନ ମଣ୍ଡଳୀ ସହ ପ୍ରଥମେ ଜାନକୀ ଦରବାରରେ ଉପନୀତ ହେଲୁ । ଜାନକୀ ଦରବାରରେ ରାମ-ଜାନକୀ, ଭରତ-ମାଣ୍ଡବୀ, ଲକ୍ଷ୍ମଣ-ଉର୍ମିଳା ଓ ଶତ୍ରୁଘ୍ନ-ଶ୍ରୁତକୀର୍ତ୍ତି ଙ୍କର ଯୁଗଳ ମୂର୍ତ୍ତି ଦର୍ଶନ କଲୁ । ପାର୍ଶ୍ୱରେ ଜନକ ମନ୍ଦିର ଅବସ୍ଥିତ । ଜାନକୀଙ୍କର ପ୍ରତିମା ସମ୍ମୁଖରେ ଅଗଣିତ ଶାଳଗ୍ରାମର ଏକତ୍ର ସମାବେଶ ଆଶ୍ଚର୍ଯ୍ୟାନ୍ୱିତ ଭାବେ ଦର୍ଶନ କଲୁ । ଅନ୍ୟ ଏକ ମନ୍ଦିରରେ ଏକ ଲକ୍ଷ ଚାଳିଶି ହଜାର ଶାଳଗ୍ରାମ ଏକତ୍ରିତ ହୋଇ ପୂଜା ପାଉଥିବା ଲକ୍ଷ୍ୟ କଲୁ । ବେଢ଼ା ମଧ୍ୟସ୍ଥ ଏକ

ମନ୍ଦିରରେ ଜାନକୀ ମହାରାଣୀ ଚାରି ଭଉଣୀଙ୍କୁ ଶୁଣାଇବା ପାଇଁ ଦୀର୍ଘ ୭୨ବର୍ଷ ହେଲା ଚାଲୁ ରହିଥିବା ଅଖଣ୍ଡ ରାମ ନାମ କୀର୍ତ୍ତନ ସ୍ଥଳ ପରିଦର୍ଶନ କଲୁ ଓ ସ୍ଥାନୀୟ ଗାଇଡ୍‌ଙ୍କ ଠାରୁ ସେହି ସ୍ଥାନମାନଙ୍କର ମାହାତ୍ମ୍ୟ ବିଷୟରେ ଅବଗତ ହେଲୁ । ସୀତାଜୀଙ୍କର ଦୁଇ ପ୍ରଧାନ ସଖୀ ଚନ୍ଦ୍ରକଳା ଓ ଚାରୁଶୀଳାଙ୍କ ସହ ସୀତାମାତାଙ୍କର ଅବସ୍ଥାନ ହୋଇଥିବା ଅନ୍ୟ ଏକ ମନ୍ଦିର ଦର୍ଶନ କଲୁ । ମନ୍ଦିର ବେଢ଼ା ବାହାରେ ଲକ୍ଷ୍ମଣ ଲାଲ୍‌ଙ୍କ ମନ୍ଦିର । ତା'ପରେ ଉପନୀତ ହେଲୁ ସୀତାରାମ ବିବାହ ମଣ୍ଡପରେ ମାର୍ବଲ ପ୍ରସ୍ତର ଖଚିତ ଚାରୋଟି ଭିନ୍ନ ଭିନ୍ନ ସାମ୍‌ନା ସାମ୍‌ନି ସୁସଜ୍ଜିତ ବେଦୀ ମଧ୍ୟରେ ସୁଲଳିତ ଚାରିଭାଇ ଓ ଚାରି ଭଉଣୀଙ୍କର ଯୁଗଳ ମୂର୍ତ୍ତି ବିରାଜମାନ । ବେଦୀ ନିକଟରେ ଜନକ ମହାରାଜ ଓ ରାଣୀ ସୁନୟନା ଓ ବିବାହ କାର୍ଯ୍ୟ ସଂପାଦନ କରାଉଥିବା ମହର୍ଷିଗଣ ଏବଂ ବିବାହ ଦର୍ଶନରେ ଉପସ୍ଥିତ ଥିବା ଦେବଗଣଙ୍କୁ ଦର୍ଶନ କଲୁ । ମନ୍ଦିରସ୍ଥ ବେଦୀ ମଣ୍ଡପ ଗୁଡ଼ିକୁ କାଚ ପ୍ରାଚୀର ଦ୍ୱାରା ଆବଦ୍ଧ କରାଯାଇଛି ତେଣୁ ବାହାରୁ ଦେଖିବା ସମ୍ଭବପର ହୋଇଥାଏ । ବିରାଟ ଆୟତନ ବିଶିଷ୍ଟ ବିବାହ ମଣ୍ଡପରେ କିଛି କ୍ଷଣ ଉପବେଶନ କରି ସ୍ଥାନୀୟ ଗାଇଡ୍‌ଙ୍କ ଠାରୁ ବିବାହ କାର୍ଯ୍ୟ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଆହରଣ କଲୁ । ପରିସର ମଧ୍ୟସ୍ଥ ବିରାଟ ପୁଷ୍ପ ଉଦ୍ୟାନର ସୌନ୍ଦର୍ଯ୍ୟ ଉପଭୋଗ କଲୁ । ବିବାହ ମଣ୍ଡପର ଚତୁଃ କୋଣରେ ଚାରିଭାଇ ଓ ଚାରି ଭଉଣୀଙ୍କର



ଜାନକୀ ଦରବାର (ନେପାଳ), ତା. ୧୫.୦୫.୨୦୧୧

ପୃଥକ୍ ପୃଥକ୍ ମନ୍ଦିର ପରିକ୍ରମା କଲୁ । ବେଢ଼ା ମଧ୍ୟସ୍ଥ ରାମ ପାଦ ଓ ଶନିଶ୍ଚର ମନ୍ଦିର ଦର୍ଶନ କଲୁ । ସମ୍ବଲପୁରରୁ ଆସିଥିବା କେତେଜଣ ଓଡ଼ିଆ ଯାତ୍ରୀଙ୍କ ସହ ଆଳାପ ଆଲୋଚନା କଲୁ । ତା'ପରେ ପ୍ରବେଶ କଲୁ ରାଜର୍ଷି ଜନକଙ୍କର ଇଷ୍ଟଦେବୀ ରାଜଦେବୀ ମନ୍ଦିରରେ । ରାଜଦେବୀଙ୍କର ମନ୍ଦିର ସମ୍ମୁଖରେ ପହଞ୍ଚିବା ପରେ ସନ୍ଥ ତୁଳସୀ ଦାସ ବିରଚିତ ରାମ ଚରିତ ମାନସର ଦେବୀ ସୀତାଙ୍କର ଗୌରୀପୂଜା ଆଖ୍ୟାୟିକାଟିକୁ ସ୍ମରଣ କଲୁ । ଗୌରୀ ଦେବୀଙ୍କ ଉଦ୍ଦେଶ୍ୟରେ ସୀତା ମାତାଙ୍କର ମୁଖର ସ୍ତବଟିକୁ ପାଠକଲୁ ।

''ଜୟ ଜୟ ଗିରିବର ରାଜ କିଶୋରୀ
ଜୟ ମହେଶ ମୁଖ-ଚନ୍ଦ ଚକୋରୀ
ଜୟ ଗଜ ବଦନ ଷଡ଼ାନନ ମାତା
ଜଗତ ଜନନୀ ଦାମିନୀ ଦୁତି ଗାତା'' ।

ମାତା ଗୌରୀଙ୍କର ପିତ୍ତଳ ପ୍ରତିମା ପୁଷ୍ପ ବିମଣ୍ଡିତା ପୂର୍ବକ ଅପୂର୍ବ ରୂପ ଲାବଣ୍ୟ ସଂପନ୍ନା ଦେଖାଯାଉଥିବା ଲକ୍ଷ୍ୟ କଲୁ । ମାତାଙ୍କର ଚରଣ କମଳରେ ଭକ୍ତି ଅର୍ଘ୍ୟ ନିବେଦନ କରି 'ମାନେକା ହୋଟେଲ୍' ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲୁ । ବାଟରେ କିଛି ଫଳରସ ପାନ କରି ଭ୍ରମଣ ଜନିତ ତୃଷା ନିବାରଣ କଲୁ । ମଧ୍ୟାହ୍ନ ପ୍ରସାଦ ସେବନ ପରେ ଦିନ ୨ଟାରେ ବସ୍ ଅପେକ୍ଷାରେ ହୋଟେଲ୍ ଅଭ୍ୟର୍ଥନା ପ୍ରକୋଷ୍ଠରେ ସମବେତ ହେଲୁ । ଜନକପୁରୀ ସ୍ଥାନଟି ଅପୂର୍ବ କଳାକୃତି ପାଇଁ ପ୍ରସିଦ୍ଧି ଲାଭ କରିଛି । ଚିତ୍ରପଟ, କାଠ ଖୋଦେଇ, ପ୍ରସ୍ତର କାରୁକାର୍ଯ୍ୟ, ବିଭିନ୍ନ ଡ଼ିଜାଇନ୍‌ର ଶାଲ୍, କମଳ ଇତ୍ୟାଦିର ଫଟୋଚିତ୍ର ବିଶ୍ରାମ କକ୍ଷରେ ବିଶ୍ରାମ ନେଉଥିବା ସମୟରେ ପ୍ରାଚୀର ଚିତ୍ରରୁ ଦେଖିବାକୁ ପାଇଲୁ । 'ମାନେକା ହୋଟେଲ୍' ଜନକପୁରୀର ଏକ ସ୍ୱନାମ ଧନ୍ୟ ହୋଟେଲ୍ । ତେଣୁ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ସେଠାକାର ସାଜସଜ୍ଜା ଉଚ୍ଚକୋଟୀର । ଆମ ରହଣୀ ସମୟରେ ଆମେ କେତେଜଣ ବିଦେଶୀ ପର୍ଯ୍ୟଟକଙ୍କର ଉପସ୍ଥିତ ଲକ୍ଷ୍ୟ କରିଥିଲୁ । ହୋଟେଲ୍ ପ୍ରାଚୀରରେ ଲେଖାଯାଇଥିବା ନେପାଳ ରାଷ୍ଟ୍ରଗାନଟି ଏହିପରି -

''ସାୟୌଁ ଥାମା ଫୁଲକୀ ହାମୀ ଏ ଅଟେ ମାଳା ନେପାଲୀ,
ସାର୍ବଭୌମ ଭଇ ଫୈଲିଏକା ମେଚୀ - ମହାକଲୀ ।
ପ୍ରକୃତିକା କୋଟି କୋଟି ସଂପଦା କୋ ଆଞ୍ଚଲ,
ବୀର ହରୁକା ରଗତଲେ ସ୍ୱତନ୍ତ୍ରର ଅଟଲ ।

ଜ୍ଞାନ ଭୂମି, ଶାନ୍ତି ଭୂମି ତରାଇ ପାହାଡ଼ ହିମାଲ,
ଅଖଣ୍ଡ ୟୋ ପ୍ୟାରୋ ହାମୋ ମାତୃଭୂମି ନେପାଲ ।
ବହୁଲ ଜାତି ଭାଷା ଧର୍ମ ସଂସ୍କୃତି ଛନ୍ ବିଶାଲ,
ଅଗ୍ରଗାମୀ ରାଷ୍ଟ୍ର ହାମ୍ରୋ ଜୟ ଜୟ ନେପାଲ ।।

(ବ୍ୟାକୁଲ ମୈକଲା)

ନିଜସ୍ୱ ବ୍ୟବସ୍ଥାରେ ନେପାଳ ସୀମା ପାର ହୋଇ ମୁଜାଫରପୁରରେ ପହଞ୍ଚିବା ବ୍ୟବସ୍ଥା ପୂର୍ବରୁ ସ୍ଥିର ହୋଇଥିଲେ ମଧ୍ୟ ଏହି ବସ୍ ଡ୍ରାଇଭର୍ ମାନଙ୍କୁ ଅଧିକ ପଇସା ଦେଇ ବୋର୍ଡ଼ର ପାର କରି ଲକ୍ଷ୍ୟସ୍ଥଳରେ ପହଞ୍ଚାଇବା ପାଇଁ ଯାତ୍ରୀ ମାନଙ୍କର ଅନୁରୋଧକୁ ଦୃଷ୍ଟିରେ ରଖି ଇସ୍କନ ବାବାମାନେ ସେହି ବସ୍ ଗୁଡ଼ିକରେ ମୁଜାଫରପୁରରେ ପହଞ୍ଚିବା ସ୍ଥିର କଲେ । ୧୫କି.ମି ଗଲାପରେ ଗାଡ଼ି ଅଟକିଲା ଧନୁଷା ଧାମ ନିକଟରେ । ସୀତାରାମ ବିବାହ ମଣ୍ଡପ ଓ ସ୍ୱୟଂବର ସ୍ଥାନ ଜନକପୁରୀରେ ଅବସ୍ଥିତ । ଜନକ ଦରବାରରେ ଶିବ ଧନୁ ଭଂଗ ସମୟରେ ଧନୁଟି ତିନି ଖଣ୍ଡରେ ପରିଣତ ହେଲେ । ବିବାହ ମଣ୍ଡପ ନିକଟରେ ଧନୁର ଏକ ଖଣ୍ଡ ଦ୍ୱାରା ବିରାଟ ରାମ ସାଗର ସୃଷ୍ଟି ହେଲା । ମଧ୍ୟ ଖଣ୍ଡଟି ଧନୁଷାଧାମ ନିକଟରେ ପହଞ୍ଚିଲା ଓ ଅନ୍ୟ ଖଣ୍ଡଟି ଆକାଶ ମାର୍ଗକୁ  ଗମନ କଲା । ସେଠାରେ ଥିବା ଗାଇଡ୍ ଧନୁର ଗୁଣ ବିଷୟରେ ବୁଝାଇବାକୁ ଯାଇ କହିଥିଲେ - ପ୍ରତି ୩/୪ ବର୍ଷରେ ଥରେ ଏହି ଧନୁଟିର ଆୟତନ ବଢ଼ିବାରେ ଲାଗିଛି । ଅନୁମତି ମାଗି ଧନୁଟିକୁ ସ୍ପର୍ଶ କଲୁ । ମହୁଫେଣା ଭଳି ଦେଖାଯାଉଥିବା ପ୍ରସ୍ତର ଧନୁଟିକୁ କୋଟି କୋଟି ପ୍ରଣାମ ଜଣାଇଲୁ । ଏକ ବିରାଟ କଦ୍ମ ବୃକ୍ଷ ତଳେ ଧନୁଟି ଶାୟିତ । ଧନୁ ନିକଟରେ ଏକ ସୁଶୀତଳ ଚିରସ୍ରୋତା ଝରଣା । ସ୍ଥାନୀୟ କିମ୍ବଦନ୍ତୀ ଅନୁସାରେ ଏହି ଜଳ ଉତ୍ସର ଜଳ ଶୁଖିଗଲେ ଦେଶରେ ବିପତ୍ତି ମାଡ଼ି ଆସିଥାଏ । ଆଜକୁ ଠିକ୍ ଏଗାର ବର୍ଷ ତଳେ ରାଜା ଜ୍ଞାନେନ୍ଦ୍ରଙ୍କର ସପରିବାରଙ୍କର ନିଜ ବାସଭବନରେ ହତ୍ୟା ସମୟରେ ଏପରି ବିଲକ୍ଷଣ ଦେଖାଯିବାର ପ୍ରମାଣ ରହିଛି ବୋଲି ପୂଜକଙ୍କ ଠାରୁ ଶୁଣିବାକୁ ପାଇଲୁ । ସୀତା-ରାମଙ୍କର ଚାରି ଚକ୍ଷୁର ମିଳନ ସ୍ଥଳ ପୁଷ୍ପ-ବାଟିକା ମାଓ-ପ୍ରବଣ ଅଞ୍ଚଳ ହୋଇଥିବାରୁ ସେଠାରେ ପହଞ୍ଚିବା ଉଚିତ ନୁହେଁ ବୋଲି ବାବାମାନଙ୍କ ଠାରୁ ନିର୍ଦ୍ଦେଶ ପାଇ ମନକୁ ବୁଝାଇନେଲୁ । ନେପାଳରୁ ବିଦାୟ ନେଇ ଭାରତ ଅଭିମୁଖେ ଗାଡ଼ି ଛୁଟିଲା ସଂଧ୍ୟା ୬ଘଣ୍ଟା ସମୟରେ ନେପାଳ-ଭାରତ ସୀମାରେ ଚା'ପାନ ପାଇଁ ଗାଡ଼ି ଅଟକିଲା । ଏହି ସୀମାନ୍ତ ସ୍ଥଳର ନାମ ''ଭିଟାମୋର''। ତାରବାଡ଼ ନାହିଁ, ସୀମା ନିର୍ଦ୍ଧାରିତ ନାହିଁ । ଏକ ବଖରିଆ

ଘରେ କେବଳ ଏକ ପୋଲିସ୍ ଫାଣ୍ଡିଟିଏ ଅଛି । ଅବାଧରେ ଦୁଇ ଦେଶବାସୀ ସୀମା ପାର ହେଉଥିବା ଲକ୍ଷ୍ୟ କଲୁ । ରାତି ୮ଟା ସମୟରେ ''ସୀତାମାଢ଼ି'' ନାମକ ଏକ ସ୍ଥାନରେ ବସ୍ ଖରାପ ହେଲା । ମରାମତି ପରେ ମଧ୍ୟ ଯିବା ଅବସ୍ଥାରେ ସେହି ବସ୍‌ଟି ନ ଥିଲା । ଅନ୍ୟ ବସ୍ ବଦଳାଇ ରାତି ୧୦ଟାରେ ମୁଜାଫରସ୍ଥ 'ହୋଟେଲ୍ ଇଣ୍ଡିଆ'ରେ ପହଞ୍ଚିଲୁ । ସେଠାରେ ଦୁଇଟି ପରିବାର ପାଇଁ ଗୋଟିଏ ରୁମ୍‌ର ବ୍ୟବସ୍ଥା ହୋଇଥିଲା । ତଳମହଲାର ୪ନଂ ରୁମ୍‌ରେ ସେଦିନ ଆମ ସାଥୀ ଥିଲେ ଶ୍ରୀମତୀ ଓ ଶ୍ରୀ ରାଉତ ବାବୁ । ହେଟେଲରେ ଆମ ପାଇଁ କ୍ୟାଟେରିଂ ବ୍ୟବସ୍ଥା ହୋଇଥିଲା । ହୋଟେଲ ବୟମାନଙ୍କର ସ୍ୱଳ୍ପ ପରିମାଣର ଖାଦ୍ୟ ପରିବେଷଣ ପ୍ରଣାଳୀ ବିରକ୍ତିକର ମନେ ହେଉଥିଲା । ରାତି ୧୧ଟା ପରେ କିଛି ସମୟ କଥାବାର୍ତ୍ତା ହୋଇ ତଳ ଗାଲିଚାରେ ବିଛଣା ପ୍ରସ୍ତୁତି କରି ରାଉତ ଦଂପତି ଓ ଖଟ ଉପରେ ଆମେ ଦୁଇଜଣ ବିଶ୍ରାମ ନେଲୁ । ଦୁଇଟି ଖଟରେ ଚାରି ଜଣ ବିଶ୍ରାମ ନେବା ସମସ୍ୟାକୁ ନେଇ କେତେ ଜଣଙ୍କର ଅସହିଷ୍ଣୁ ମନୋଭାବ ଟ୍ରେନକୁ ଅପେକ୍ଷା କରିବା ସମୟରେ ଶୁଣିବାକୁ ପାଇଥିଲୁ । ମାତ୍ର ଆମ ଦୁଇ ପରିବାରର ଉତ୍ତମ ବୁଝାମଣା ଯୋଗୁଁ ସେଭଳି ପରିସ୍ଥିତି ସୃଷ୍ଟି ହୋଇ ନଥିଲା ।

*ତା. ୧୬.୦୫.୨୦୧୧*

ପ୍ରାତଃ ନିତ୍ୟକର୍ମ ସମାପନ ପରେ ଷ୍ଟେସନ ରାସ୍ତା ଅନ୍ୱେଷଣରେ ଆମେ ଦୁହେଁ ବାହାରିପଡ଼ିଲୁ । ଷ୍ଟେସନଟି ଅଧ କିଲୋମିଟର ଦୂରରେ ଅବସ୍ଥିତ । ନିଉ ଦିଲ୍ଲୀ - ନିଉ ଜଲପାଇଗୁଡ଼ି ଏକ୍ସପ୍ରେସ୍‌ର ସମୟ ୧୦ଘ.୨୫ମି. ଥିଲା । ତେଣୁ ୯ଟା ସୁଦ୍ଧା ଷ୍ଟେସନରେ ପହଞ୍ଚିବା ପାଇଁ ସ୍ଥିର ହୋଇଥିଲା । ସାମାନ୍ୟ ଜଳଯୋଗ ପରେ ପଟାରିକ୍ସା ବୁଝି ଆମ ଦୁଇ ପରିବାରର ଜିନିଷ ଲଦିଲା ବେଳକୁ ବାଣପୁର ଓ ଭୁବନେଶ୍ୱରରୁ ଆସିଥିବା କୁମୁଟି ସଂପ୍ରଦାୟର ବ୍ୟବସାୟୀ ଗୋଷ୍ଠୀ କମ୍ ଭଡ଼ା ଲୋଭରେ ସେହି ପଟା ରିକ୍ସାରେ ଗୋଟିକ ପରେ ଗୋଟିଏ ଜିନିଷ ରଖି ସକାଳେ ଆମେ ଲକ୍ଷ୍ୟ କରି ଯାଇଥିବା ରାସ୍ତା ବଦଳରେ ଅନ୍ୟ ଏକ ରାସ୍ତାରେ ଯିବାକୁ ରିକ୍ସା ଚାଳକକୁ ନିର୍ଦ୍ଦେଶ ଦେଇଥିଲେ ଫଳରେ ଷ୍ଟେସନ ପର୍ଯ୍ୟନ୍ତ ରିକ୍ସା ପହଞ୍ଚି ପାରିଲା ନାହିଁ । ଗଳିକନ୍ଦି ରାସ୍ତାରେ ବହୁ କଷ୍ଟରେ ଜିନିଷ ବୋହି ଷ୍ଟେସନରେ ପହଞ୍ଚିବାକୁ ପଡ଼ିଲା । ୪୦ମିନିଟ୍ ବିଳମ୍ବରେ ଟ୍ରେନ୍ ପହଞ୍ଚିଲା । ଟ୍ରେନ୍‌ରେ ପ୍ରସାଦ ସେବନ କଲୁ । ରାସ୍ତାର ଉଭୟ ପାର୍ଶ୍ୱସ୍ଥ ପ୍ରାକୃତିକ ଶୋଭା ସନ୍ଦର୍ଶନ କରି ମଜା ମଉଜରେ ଆଳାପ ଆଲୋଚନାରେ ନିମଜ୍ଜିତ ହୋଇ ରାତି ୧୦ଘ.୪୦ମି. ସମୟରେ ସିଲିଗୁଡ଼ି ଷ୍ଟେସନରେ ପହଞ୍ଚିଲୁ । ସିଲିଗୁଡ଼ିରେ ଆମ

ପାଇଁ 'ହୋଟେଲ ଗୌରବ'ର ତୃତୀୟ ମହଲାର ୧୩ନଂ ରୁମ୍‌ରେ ବ୍ୟବସ୍ଥା ହୋଇଥିଲା । ଆମ ସମ୍ମୁଖ ପ୍ରକୋଷ୍ଠରେ ନବରଙ୍ଗପୁର ଶିକ୍ଷକ ଶ୍ରୀ ପାଢ଼ୀ ଦଂପତି ରହୁଥିଲେ । ପ୍ରସାଦ ସେବନର ବ୍ୟବସ୍ଥା ନିକଟସ୍ଥ ହୋଟେଲ 'ହିନ୍ଦୁସ୍ଥାନ'ରେ ହୋଇଥିଲା । ସେଠାରୁ ପ୍ରସାଦ ସେବନ କରି ଫେରି ରାତ୍ରି ବିଶ୍ରାମ ନେଲୁ ।

### ତା. ୧୭.୦୫.୨୦୧୧, ବୁଦ୍ଧ ପୂର୍ଣ୍ଣିମା

ହୋଟେଲ୍ ନିକଟରେ ଥିବା ଏକ ପ୍ରାଇଭେଟ୍ ବସ୍‌ଷ୍ଟାଣ୍ଡରେ ସମସ୍ତ ତୀର୍ଥଯାତ୍ରୀ ସମବେତ ହେଲାପରେ ଟାଟାସୁମୋ ଏବଂ ବୋଲେରୋ ଗାଡ଼ିରେ ଦାର୍ଜିଲିଂ ଯିବା ବ୍ୟବସ୍ଥା ହୋଇଥିଲା । ସେଥିପାଇଁ ଯାତ୍ରୀମାନଙ୍କ ଠାରୁ ଅଧିକ ୨୦୦.୦୦ଟଙ୍କା ସଂଗ୍ରହ କରାଯାଇଥିଲା । ସମସ୍ତ ଯାତ୍ରୀ ଓ ଗାଡ଼ି ଏକାଠି ହୋଇ ଛାଡ଼ିଲା ବେଳକୁ ସକାଳ ୭ଘ.୨୦ମି. ହୋଇସାରିଥିଲା । ୨୦୦୮ ମସିହାର ପୂଜାବକାଶରେ ଦାର୍ଜିଲିଂ, ଗ୍ୟାଙ୍ଗଟକ୍ ଏବଂ ପୃଥିବୀର ସର୍ବୋଚ୍ଚ ସଡ଼କ ପରିବହନ ବ୍ୟବସ୍ଥା ଥିବା ଶୃଙ୍ଗ 'ନାଥୁଲା' ଭ୍ରମଣର ସୁଯୋଗ ଲାଭ କରିଥିଲୁ । ତେଣୁ ସିଲିଗୁଡ଼ି - ଦାର୍ଜିଲିଂ ରାସ୍ତା ଆମ ପାଇଁ ପରିଚିତ ଥିଲା । ଚା'ବଗିଚାର ପ୍ରାକୃତିକ ସୌନ୍ଦର୍ଯ୍ୟ ଦର୍ଶନ ସମୟରେ 'ଗୁଡ଼ରିକ ଚା'କାରଖଗନା'ରୁ ଚା'କିଣା ଅଧ୍ୟାୟ ଶେଷ ହେଲା । ସେଦିନ ଥିଲା ମହାତ୍ମା ବୁଦ୍ଧଙ୍କର ୨୫୫୫ ଜନ୍ମତିଥି । ଦାର୍ଜିଲିଂ ସହରରେ ପହଞ୍ଚିବା ପୂର୍ବରୁ ବୌଦ୍ଧ ଧର୍ମାବଲମ୍ବୀ ମାନଙ୍କ ବୌଦ୍ଧ ବିହାର ଉଦ୍ଦେଶ୍ୟରେ ଚାଲିଥିବା ଲମ୍ବା ଶୋଭାଯାତ୍ରାର ଆକର୍ଷଣୀୟ ଦୃଶ୍ୟ ଅବଲୋକନ କଲୁ । ଆବାଳ ବୃଦ୍ଧବନିତା ପରିଷ୍କାର ପରିଚ୍ଛନ୍ନ ପୋଷାକରେ ଛୋଟ ଛୋଟ କାଠ ବାକ୍ସଟିଏ ମୁଣ୍ଡରେ ଧରି ରାସ୍ତା ପାର୍ଶ୍ୱରେ ଧାଡ଼ି ବାନ୍ଧି ଚାଲୁଥାଆନ୍ତି । ଛୋଟ ଛୋଟ ଗୁଲଗାଲିଆ ଝିଅ ପିଲାଙ୍କର ସିକ୍ତ ମୁକ୍ତ କେଶର ଶୋଭାରାଶି ସେମାନଙ୍କର ପ୍ରସନ୍ନ ମୁଖମଣ୍ଡଳର ସୌନ୍ଦର୍ଯ୍ୟକୁ ବହୁଗୁଣିତ କରୁଥିଲା । ସେମାନଙ୍କ ମୁଣ୍ଡରୁ ନେଇ ଅନ୍ୟମାନେ କାଠ ବାକ୍ସଟିକୁ ନିଜ ମୁଣ୍ଡରେ ରଖୁଥିଲେ ଓ ପାର୍ଶ୍ୱସ୍ଥ ଦୋକାନୀମାନେ ଚକ୍‌ଲେଟ୍ ବାଣ୍ଟୁଥିଲେ । ଆମେ ମଧ୍ୟ ଜଣେ ଦୁଇଜଣଙ୍କୁ ମାଗି ପବିତ୍ର କାଠ ବାକ୍ସକୁ ମୁଣ୍ଡରେ ଲଗାଉଥିଲୁ । ଦାର୍ଜିଲିଂ ପହଞ୍ଚିବା ରାସ୍ତାରେ ଗୋଟିଏ ଦୁଇଟି ବୌଦ୍ଧ ବିହାର ବୁଲି ଦେଖିଥିଲୁ । ସେମାନଙ୍କର ଶୃଙ୍ଖଳିତ ପଦଯାତ୍ରାର ସୌନ୍ଦର୍ଯ୍ୟ ଉପଭୋଗ କରିବା ସମୟରେ ଦିନ ୧୧ଘ.୩୦ମି.ରେ ଦାର୍ଜିଲିଂ ବସ୍‌ଷ୍ଟାଣ୍ଡରେ ପହଞ୍ଚିଲୁ । ପ୍ରକାଶ ଥାଉକି ବସ୍‌ଷ୍ଟାଣ୍ଡରେ ପହଞ୍ଚିବା ପୂର୍ବରୁ ଦାର୍ଜିଲିଂ ସହରର ପ୍ରସିଦ୍ଧ ଦର୍ଶନୀୟ ସ୍ଥାନ 'ବତାସିଆ ଲୁପ୍'ର ସୌନ୍ଦର୍ଯ୍ୟ, ୱାର ମେମୋରିଆଲ୍ ଓ ବାଇନାକୁଲର ସାହାଯ୍ୟରେ ସୁଦୂରରେ ଥିବା ବରଫାବୃତ ଶୃଙ୍ଗ ନନ୍ଦାଦେବୀର

ଅପୂର୍ବ ସୌନ୍ଦର୍ଯ୍ୟ ଓ କାଞ୍ଚନ ଜଂଘା ଶୃଙ୍ଗର ବରଫାବୃତ ଶରୀରରେ ମଧ୍ୟାହ୍ନ ସୂର୍ଯ୍ୟକିରଣର ତେଜୀୟାନ୍ ଆଭା କିଛି କ୍ଷଣ ପାଇଁ ମନକୁ ବାହ୍ୟ ଜଗତରୁ ବିଛିନ୍ନ କରି ସ୍ୱପ୍ନ ରାଇଜରେ ବିଚରଣ କରିବା ଖୋରାକ୍ ଯୋଗାଉଥିଲା । ସ୍ଥାନୀୟ ଅଧିବାସୀ ଭୂଟିଆ ଓ ଲେପ୍‌ଚା ମାନଙ୍କର ନୃତ୍ୟ ପରିଛନ୍ଦରେ ସଜ୍ଜିତା ହୋଇ ପରିଣତ ବୟସର କେତେକ ମହିଳା ଫଟୋ ଉତ୍ତୋଳନ କରୁଥିବା ଦୃଶ୍ୟ ବେଶ୍ ଉପଭୋଗ୍ୟ ଓ ହାସ୍ୟାସ୍ପଦ ଥିଲା । ହାସ୍ୟାସ୍ପଦ କହିବା ମଧ ଭୁଲ୍ ହୋଇପାରେ କାରଣ ପ୍ରତ୍ୟେକଙ୍କର ରୁଚି ସ୍ୱତନ୍ତ୍ର ଓ ସବୁ ସ୍ୱାତନ୍ତ୍ର୍ୟକୁ ସମ୍ମାନ ଜଣାଇବା ମାନବ ଧର୍ମ । ପୃଥିବୀର ସର୍ବୋଚ୍ଚ ରେଳଷ୍ଟେସନ 'ଘୁମ' ଓ ବିଶ୍ୱ ଐତିହାସିକ ମାନ୍ୟତା ପାଇଥିବା ଦାର୍ଜିଲିଂର ଛୋଟ ରେଳଗାଡ଼ି TOY TRAIN ସଂଦର୍ଶନ କରି ବସ୍‌ଷ୍ଟାଣ୍ଡରେ ଉପନୀତ ହେଲୁ । ଅଧଘଣ୍ଟାଏ ସମୟ ମଧ୍ୟରେ ପାଢ଼ୀ ସାର୍ ଓ ଆମେ କିଛି ପଶମ ବସ୍ତ୍ର କିଣି ପ୍ରସାଦ ବିତରଣ ସ୍ଥାନ ଅନ୍ୱେଷଣରେ ଲାଗିପଡ଼ିଲୁ । ବହୁ କଷ୍ଟରେ ଫୋନ୍ ମାଧ୍ୟମରେ ପଚାରି ପଚାରି କୋର୍ଟ ନିକଟସ୍ଥ ଏକ ରାସ୍ତା ପାର୍ଶ୍ୱରେ ପ୍ରସାଦ ବିତରଣ ସ୍ଥଳରେ ପହଞ୍ଚିଲୁ । ଆମ ପାଣି ବୋତଲ ଗାଡ଼ିରେ ରହିଯାଇଥିଲା । ଗାଡ଼ି ଦୂରରେ ଥିଲା, ପିଇବା ପାଣି ଓ ହାତ ଧୋଇବା ପାଇଁ ପାଣିର ଅଭାବ ସେଠାରେ ଦେଖାଦେଇଥିଲା । ପ୍ରସାଦ ସେବନ ପରେ ପ୍ରବଳ ବର୍ଷା ଆରମ୍ଭ ହୋଇଯାଇଥିଲା । ଆମର Bolero ସାଥୀ ଆଠଜଣଙ୍କ ମଧ୍ୟରୁ ବ୍ରହ୍ମପୁରର ପଟ୍ଟନାୟକ ବାବୁଙ୍କର ଦେଖାମିଳିଲା ନାହିଁ । ବିଚରା ଡ୍ରାଇଭର ଓ ଲିଙ୍ଗରାଜ ବାବୁ ଛତା ଧରି ବହୁ ଖୋଜା ଖୋଜି କଲେ, କିନ୍ତୁ ନିରାଶ ହୋଇ ଫେରିଲେ । ସବୁ ଗାଡ଼ି (୧୫ଟି) ଚାଲିଯାଇଥିବାରୁ ଆମେ ମଧ ଫେରିବା ପାଇଁ ବାଧ୍ୟ ହେଲୁ । ଯୋଗାଯୋଗ କରିବା ପାଇଁ ଫୋନ୍ ବି କାମ କରୁ ନଥାଏ । ୧୪/୧୫ କି.ମି. ଗଲାପରେ ଇସ୍କନ ବାବାମାନଙ୍କର ଗାଡ଼ିରେ ପଟ୍ଟନାୟକ ବାବୁଙ୍କୁ ଦେଖି ଆଶ୍ୱସ୍ତ ହେଲୁ । ବାବୁଙ୍କୁ ପାଇ ବାବାଙ୍କୁ କୃତଜ୍ଞତା ଜଣାଇ ସିଲିଗୁଡ଼ି ବସ୍‌ଷ୍ଟାଣ୍ଡରେ ପହଞ୍ଚିଲା ବେଳକୁ ରାତି ୭ । ଚା'ପାନ ଓ ସତେଜ ହେବାପରେ ସିଲିଗୁଡ଼ିର ପ୍ରସିଦ୍ଧ ହଂକଂ ମାର୍କେଟ୍ ଭ୍ରମଣରେ ଅଟୋରେ ବାହାରିଲୁ । କିଛି ଉପହାର ସାମଗ୍ରୀ କିଣି ହୋଟେଲ୍ ହିନ୍ଦୁସ୍ଥାନରେ ପ୍ରସାଦ ସେବନ ପାଇଁ ସମବେତ ହେଲୁ । ସେଠାରେ ଅନ୍ୟ ଗାଡ଼ିର ଯାତ୍ରୀମାନେ ସ୍ଥାନୀୟ ଇସ୍କନ ମନ୍ଦିରର ସାଂଧ ଆଳତୀ ଦର୍ଶନ ବିଷୟ କଥାବାର୍ତ୍ତା ହେବା ଶୁଣିବାକୁ ପାଇଥିଲୁ । ମାତ୍ର ଆମ ଡ୍ରାଇଭରର ଅସହନୀୟ ବ୍ୟବହାର ଯୋଗୁଁ ଆମେ ସେହି ସୁଯୋଗରୁ ବଞ୍ଚିତ ହୋଇଥିଲୁ । 'ହୋଟେଲ୍ ହିନ୍ଦୁସ୍ଥାନ'ରୁ ଫେରି ଆମ ନିର୍ଦ୍ଧାରିତ 'ହୋଟେଲ୍ ଗୌରବ'ରେ ରାତ୍ରି ଯାପନ କଲୁ ।

**ତା. ୧୮.୦୫.୨୦୧୧**

ପ୍ରାତଃ ନିତ୍ୟକର୍ମ ସମାପନ ପରେ ପୂର୍ବ ଦିନ ଭଳି ସେହି ଘରୋଇ ଟାକ୍ସିଷ୍ଟାଣ୍ଡରେ ସବୁ ଯାତ୍ରୀ ଏକତ୍ରିତ ହେଲୁ । ସକାଳ ୬ ଘ. ୪୦ ରେ ୧୬ଟି ଟାଟା ସୁମୋ ଓ ବୋଲେରୋ 'ଗ୍ୟାଙ୍ଗଟକ' ଅଭିମୁଖେ ଯାତ୍ରା ଆରମ୍ଭ କଲା । ତିସ୍ତା ନଦୀ କୂଳେ କୂଳେ ଗାଡ଼ି ଚାଲୁଥାଏ । କେଉଁଠି ଉତ୍ତାଳ ସଲିଳା ସ୍ରୋତସ୍ୱିନୀ ତିସ୍ତାର ଗର୍ଜନ ତ ଆଉ କେଉଁଠି ଶାନ୍ତ ସ୍ନିଗ୍ଧା ତିସ୍ତା ନଦୀର ପ୍ରାକୃତିକ ସୌନ୍ଦର୍ଯ୍ୟ । ମଝିରେ ମଝିରେ ମନୁଷ୍ୟକୃତ ନଦୀବନ୍ଧ ଓ ବିଦ୍ୟୁତ ଉତ୍ପାଦନ କେନ୍ଦ୍ର ନିର୍ମାଣ କାର୍ଯ୍ୟ ଯାତ୍ରୀ ମନକୁ ଆଚମ୍ବିତ କରୁଥାଏ । ସକାଳ ୭ଘ. ୩୫ ମିନିଟ୍‌ରେ 'ବାପ୍‌ଥଙ୍ଗ' ନାମକ ଏକ ଜଳପ୍ରପାତ ନିକଟରେ ଅଳ୍ପ ସମୟ ପାଇଁ ଗାଡ଼ି ଅଟକିଲା । ସେଠାରେ ଏକ ପ୍ରସ୍ତର ଦେହରେ ଲେଖାଥିଲା -

"It is better to reign in Hell than to slave in Heaven".

ପ୍ରାକୃତିକ ଦୃଶ୍ୟରେ ମାନସିକ ଅବଗାହନ କରୁଥିବା ସମୟରେ 'Small Sikim, Beautiful Sikim' ର ରାଜଧାନୀ ଗ୍ୟାଙ୍ଗଟକ୍ ସହରର ବସ୍‌ଷ୍ଟାଣ୍ଡ ଆସିଯାଇଥିଲା । ସେହି ସହରରେ ଆୟୋଜନ କରାଯାଇଥିବା ଅନ୍ୟ ଛୋଟ ଗାଡ଼ିରେ ସମୁଦାୟ ୭ଟି ସ୍ଥାନ ଭ୍ରମଣ କରି ଆସିବା ପାଇଁ ଇସ୍କନ ବାବା ଓ ଡ୍ରାଇଭରମାନଙ୍କ ମଧ୍ୟରେ ସ୍ଥିର ହେଲା । ପ୍ରଥମେ ଗାଡ଼ି ପହଞ୍ଚିଲା ସିକିମ୍‌ର ଗର୍ବ ଓ ଗୌରବର ପ୍ରତୀକ ପୃଥିବୀର ସବୁ ପ୍ରଜାତିର ପୁଷ୍ପ ଉଦ୍ୟାନ 'ଫ୍ଲାୱାର ଫେଷ୍ଟିଭାଲ' ନିକଟରେ, ଦ୍ୱିତୀୟରେ ଗଣେଶ ଟୋକ୍, ଶ୍ରୀଗଣେଶ ଟୋକ୍‌ରେ ବିଘ୍ନରାଜଙ୍କ ଦର୍ଶନ ଓ ତୁଷାରାବୃତ୍ତ କାଞ୍ଚନଜଂଘାର ପ୍ରାକୃତିକ ଶୋଭା ଦର୍ଶନ ପରେ ପୂର୍ବରୁ ସଂଗ୍ରହ କରିଥିବା ପ୍ରସାଦ ସେବନ କଲୁ । ତୃତୀୟରେ ଏକ ବିରାଟ ଜଳପ୍ରପାତ । ଚତୁର୍ଥରେ ସିକିମ୍ ରାଜ୍ୟ ସଂଗ୍ରହାଳୟ । ତା'ପରେ ଏକ ସୁଉଚ୍ଚ ବିରାଟ ବୌଦ୍ଧ ବିହାର । ଜିରୋ ପଏଣ୍ଟ ନାମକ ଏକ ଉଚ୍ଚ ସ୍ଥାନରୁ ବରଫାବୃତ୍ତ କାଞ୍ଚନଜଂଘାର ଦୃଶ୍ୟ ସ୍ପଷ୍ଟ ଭାବେ ଦେଖିବାକୁ ପାଇଲୁ । ବିରାଟ ହସ୍ତତନ୍ତ ପ୍ରଦର୍ଶନୀ ଓ କିଛି ସାମଗ୍ରୀ କିଣିବା ପରେ ସିଲିଗୁଡ଼ି ଯିବା ପାଇଁ ବସ୍ ଷ୍ଟପ୍‌ରେ ଉପନୀତ ହେଲୁ । ସିଲିଗୁଡ଼ ଉଦ୍ଦେଶ୍ୟରେ ଯାତ୍ରାରମ୍ଭ ହେଲା ଦିନ ୪ଟାରେ, ସଂଧ୍ୟା ୭ଟା ପୂର୍ବରୁ ସିଲିଗୁଡ଼ିରେ ପହଞ୍ଚିଲୁ । ସେଦିନ ବୁଲା ବୁଲି କ୍ଳାନ୍ତି ଯୋଗୁଁ ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ ।

ତା ୧୯.୦୫.୨୦୧୧

ରାତ୍ରିରେ ପ୍ରସାଦ ସେବନ ସମୟରେ ମଦନ ବାବାଙ୍କର ଦେହ ଅସୁସ୍ଥ ବିଷୟ ଜାଣିଥିଲୁ । ନିତ୍ୟକର୍ମ ଶେଷ ପରେ ବାବାଙ୍କୁ ସାକ୍ଷାତ୍ କରିବା କାର୍ଯ୍ୟକ୍ରମକୁ ଗୁରୁତ୍ୱ ଦେଇ ଶ୍ରୀ ରାଉତ ପରିବାର ଓ ଆମେ ଦୁଇ ବାହାରି ପଡିଲୁ ସ୍ଥାନୀୟ ଇସ୍କନ ମନ୍ଦିର ଅଭିମୁଖେ, କାରଣ ଇସ୍କନ ମନ୍ଦିରର ବାବା ଓ 'ହୋଟେଲ୍ ହିନ୍ଦୁସ୍ଥାନ'ର ମାଲିକଙ୍କ ପରିଚିତ ''ଆନନ୍ଦଲୋକ'' ନର୍ସିଂହୋମ୍‌ରେ ବାବା ଚିକିତ୍ସିତ ହେଉଥାଆନ୍ତି । ମନ୍ଦିରରେ ପହଞ୍ଚିଲେ ବାବାଙ୍କ ଦର୍ଶନ ଓ ଦିଅଁ ଦର୍ଶନ ଦୁଇଟି କାମ ଏକାଥରରେ ହେବା ଆଶା ନେଇ ଟାଉନ୍ ବସ୍‌ରେ ପ୍ରଥମେ ଓ ପରେ ଏକ ଅଟୋ ମାଧ୍ୟମରେ କଟିଶାଲ, ଶାସ୍ତ୍ରୀନଗର ରୋଡ଼ରେ ଥିବା ଇସ୍କନ ମନ୍ଦିରରେ ଉପନୀତ ହେଲୁ । ବିରାଟ ଆୟତନ ମଧ୍ୟରେ ମନ୍ଦିରଟି ଅବସ୍ଥିତ । ଶ୍ରୀରାଧା ମାଧବ ସୁନ୍ଦରଜୀ ଅଧିଷ୍ଠାତା ଦେବ । ଯୁଗଳ ମୂର୍ତ୍ତିଙ୍କ ପାର୍ଶ୍ୱରେ ଲଳିତା ଓ ବିଶାଖା ବିରାଜିତ । ପାର୍ଶ୍ୱରେ ପଞ୍ଚତତ୍ତ୍ୱ ଓ ଶ୍ରୀକୃଷ୍ଣ ବିଦ୍ୟମାନ । ପୃଥକ୍ ପୃଥକ୍ ମନ୍ଦିରରେ ଶ୍ରୀ ଜଗନ୍ନାଥ, ମହାରାନା ମାତା, ଶ୍ରୀରାମ ଶିବମ୍ ଧାମ, ନୃସିଂହ ଭଗବାନଙ୍କ ମନ୍ଦିର ଅବସ୍ଥିତ । ବାହାର ବେଢ଼ାରେ ସୁଶୋଭିତ ପୁଷ୍ପ ଉଦ୍ୟାନ । ଉଦ୍ୟାନ ମଧ୍ୟରେ ଏକ ସ୍ଥାନରେ ସୁନ୍ଦର କପିଧ୍ୱଜ ରଥ ଓ ରଥାରୂଢ଼ ପାର୍ଥ ସାରଥୀ ଓ ପାର୍ଥଙ୍କ ମୂର୍ତ୍ତି ସ୍ଥାପିତ । ସେଠାରୁ ଫେରିବା ରାସ୍ତାରେ ଶରଣ ପ୍ରଭୁ ଓ ଇସ୍କନ ବାବାଙ୍କ ଠାରୁ ନର୍ସିଂହୋମ ଠିକଣା ବୁଝି ନେଲୁ । ସାମାନ୍ୟ ଜଳଯୋଗ ପରେ ସେଭକ୍ ରୋଡ଼ର 'ଆନନ୍ଦଲୋକ' ନର୍ସିଂହୋମ୍ କର୍ତ୍ତୃପକ୍ଷଙ୍କର ସାକ୍ଷାତ କରିବା ନିଷେଧାଜ୍ଞା ଯୋଗୁଁ ମଦନ ବାବାଙ୍କୁ ସାକ୍ଷାତ କରିପାରିଲୁ ନାହିଁ । ସେଠାରେ ବାବାଙ୍କର ସ୍ୱାସ୍ଥ୍ୟର ଉନ୍ନତି ବିଷୟ ଜାଣିବାକୁ ପାଇଲୁ ଓ ବାବାଙ୍କର ଆଶୁ ଆରୋଗ୍ୟ ପାଇଁ ପ୍ରାର୍ଥନା ଜଣାଇ ଫେରିଲୁ । ସେଠାରୁ ସିଧା ହଂକଂ ମାର୍କେଟ୍ ଯାଇ କିଛି ଜିନିଷ କିଣାକିଣି କରି ପ୍ରସାଦ ବିତରଣ କେନ୍ଦ୍ରରେ ପହଞ୍ଚିଲୁ । ସେହିଦିନ ଗୋସାଣି ନୂଆଗାଁରେ ଶ୍ରୀରାଧାମାଧବ ଚୌଧୁରୀ ପିତୃଶ୍ରାଦ୍ଧ ଉଦ୍ଦେଶ୍ୟରେ ପ୍ରସାଦ ରନ୍ଧନ ଖର୍ଚ୍ଚ ବହନ କରିଥିଲେ । ଭାତ, ଡ଼ାଲି, ତରକାରୀ, ବାଇଗଣ, ଛଣା ଭଜା, ପନୀର, ଖିରି, ଆମ୍ବ ଓ କାକୁଡ଼ି ଆଦି ସ୍ୱାଦିଷ୍ଟ ଭୋଜନରେ ସେ ସମସ୍ତଙ୍କୁ ଆପ୍ୟାୟିତ କରିଥିଲେ । ଦାତାଙ୍କର ପିତୃ ପୁରୁଷଙ୍କ ଶାନ୍ତି କାମନା କରି ପ୍ରସାଦ ସେବନ ପରେ ହୋଟେଲ୍‌କୁ ଫେରିଲୁ । ତରବରରେ ଜିନିଷ ପ୍ୟାକିଂ କରି ଅଟୋରେ ପାଢ଼ୀ ଦଂମ୍ପତିଙ୍କ ସହ ବାହାରିବା ପରେ ଷ୍ଟେସନ୍ ଯାଇ ଖୋଜିଲୁ Aqua Guard ପାଣିଥିବା 'ବୟନିକା' ବ୍ୟାଗ୍‌ଟି ପାଖରେ ନାହିଁ । ୪ ବୋତଲ ପାଣି ଥିବା ବ୍ୟାଗ୍‌ଟି ରିସେପସନ୍ ନିକଟରେ ରହି ଯାଇଥିଲା । ଅନ୍ୟ ହୋଟେଲ୍‌ରେ ରହୁଥିବା ରାଉତ ସାରଙ୍କୁ ଫୋନ୍‌ରେ ଜଣାଇବାରୁ

ସେ ମହୋଦୟ କଷ୍ଟ ସ୍ୱୀକାର ପୂର୍ବକ ଆମ ପାଖରେ ଆଣି ପହଞ୍ଚାଇ ଦେଲେ । ରିସେପସନ୍‌ର ବାଳକ ଓ ରାଉତ ସାର ଉଭୟଙ୍କୁ ଧନ୍ୟବାଦ ଜଣାଇଲୁ । ଷ୍ଟେସନ୍‌ରେ ପହଞ୍ଚିବା ପରେ ଟ୍ରେନ୍ ୫ ଘଣ୍ଟା ବିଳମ୍ବ ବୋଲି ଶୁଣିବାକୁ ପାଇଲୁ । ତେଣୁ ପକ୍‌କା ସ୍ଥାନ ଦେଖି ବସିବା ବ୍ୟବସ୍ଥା କଲୁ । ତା'ପରେ ପରେ ଘୋଷଣା ବଦଳି ବଦଳି ଦିନ ୩ ଘ. ୧୫ମି. ପହଞ୍ଚିବା ଟ୍ରେନ୍ ରାତ୍ରି ୧ଘ. ୦୫ ମି.ରେ ପହଞ୍ଚିଲା । ଅଠର ଘଣ୍ଟା ଗୟା ଷ୍ଟେସନ୍‌ରେ ଅପେକ୍ଷା କରିବା ଅନୁଭୂତି ଆମର ଥିଲା । ଏଠାରେ ତ ମାତ୍ର ବାର ଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା । ଷ୍ଟେସନ୍‌ରେ ରାତ୍ରି ପ୍ରସାଦ ସେବନର ବ୍ୟବସ୍ଥା ହୋଇସାରିଥିଲା ।

### *ତା. ୨୦.୦୫.୨୦୧୧*

ଦିନ ଏଗାରଟା ସମୟରେ ଗୌହାଟୀ ଷ୍ଟେସନ୍‌ରେ ପହଞ୍ଚିବା ପରେ ବ୍ରହ୍ମପୁରର ତ୍ରିପାଠୀ ଦମ୍ପତି ସହ ଗୋଟିଏ ଅଟୋରେ "ହୋଟେଲ୍ ପ୍ରିନସ୍"ରେ ପହଞ୍ଚିଲୁ । "ହୋଟେଲ୍ ପ୍ରିନସ୍"ର ଚତୁର୍ଥ ମହଲାର ୪୧୨ ନମ୍ବର ରୁମ୍‌ରେ ଆମ ରହିବା ବ୍ୟବସ୍ଥା ହୋଇଥିଲା । ସୌଭାଗ୍ୟବଶତଃ ଏହି ହୋଟେଲ୍‌ରେ ଲିଫ୍‌ଟର ବ୍ୟବସ୍ଥା ଥିଲା ଓ ଅନ୍ୟ କେତେଜଣଙ୍କ ତୁଳନାରେ ଆମ ଚତୁର୍ଥ ମହଲାର ରୁମ୍ ଗୁଡ଼ିକ ଭଲ ଥିଲା । ସାମାନ୍ୟ ଜଳ ଯୋଗ (ଛଣା ଭଜା ବ୍ୟତୀତ ଅନ୍ୟ କିଛି ନିକଟରେ ମିଳୁ ନଥିଲା) ଗ୍ରହଣ କରି ୧ ଘ. ୩୦ ମିନିଟ୍ ନିର୍ଦ୍ଧାରିତ ବସ୍ ଯୋଗେ ପ୍ରସିଦ୍ଧ ଶକ୍ତିପୀଠ କାଉଁରୀ କାମାକ୍ଷାଦେବୀଙ୍କ ଦର୍ଶନ ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କଲୁ । ପାଦଦେଶରୁ ମା'ଙ୍କ ଆସ୍ଥାନ ନୀଳାଚଳ ପର୍ବତର ଦୂରତା ୧୦ କି.ମି. । ବସ୍ ରହିବା ସ୍ଥାନରୁ ଦୁଇପାର୍ଶ୍ୱରେ ବିପଣି ସଜ୍ଜିତ । ଅଧ କିଲୋମିଟର ରାସ୍ତା ପାର ହୋଇଗଲେ ମା'ଙ୍କ ମନ୍ଦିରର ମୁଖ୍ୟ ତୋରଣ ପଡ଼େ । ମନ୍ଦିର ଭିତରର କେତେ ଛୋଟ ବଡ଼ ପାହାଚ । ବିରାଟ ବିରାଟ ନିମ୍ବ ଗଛ ପୂର୍ଣ୍ଣ ପଥର ଓ ସିମେଣ୍ଟ ପ୍ରାଙ୍ଗଣ ଅତିକ୍ରମ କଲାପରେ ମା'ଙ୍କ ସୌଭାଗ୍ୟ କୁଣ୍ଡରୁ ଜଳ ସିଞ୍ଚନ କରି ପାର୍ଶ୍ୱଦେବ ବିଘ୍ନ ବିନାଶକାରୀ ଗଜାନନଙ୍କ ଦର୍ଶନ କଲୁ । ତା'ପରେ କିଛି ପାହାଚ ଚଢ଼ି ବିରାଟ ବାରଣ୍ଡା ଦେଇ ଅପେକ୍ଷା କରିବା ସ୍ଥାନରେ ଧାଡ଼ିରେ ଠିଆ ହେଲୁ । ସେହି ଧାଡ଼ି ସ୍ଥାନରେ ୧୨ ଗୋଟି ଥର ଷ୍ଟିଲ୍ ରଡ୍‌ମାନଙ୍କର ବୁଲାଣି (Turning) ଥିଲା । ସେହି ୧୨ ଥର ବୁଲି ବୁଲି ପାର ହେଲେ ମା'ଙ୍କ ମୁଖ୍ୟ ମନ୍ଦିରର ମୁଖଶାଳା ନିକଟରେ ପହଞ୍ଚିବାକୁ ହୁଏ । ଏହିସବୁ ଅତିକ୍ରମ କରିବା ପାଇଁ ଆମକୁ ଏକ ଘଣ୍ଟାରୁ ଅଧିକ ସମୟ ଲାଗିଥିଲା । ବାଲେଶ୍ୱରରୁ ଅସିଥିବା ତୀର୍ଥଯାତ୍ରୀଙ୍କର ଧାଡ଼ିରେ ଠିଆ ହୋଇଥିବା ସମୟରେ ମୁହଁ ବୁଲାଇବା

ଯୋଗୁଁ ଫେରିଯିବା ଖବର ବାହାରକୁ ଆସିବା ପରେ ଶୁଣିବାକୁ ପାଇଲୁ । ଦେବୀ କାମାକ୍ଷାଙ୍କ ମନ୍ଦିର ଗମ୍ବୁଜା କୃତି । ପ୍ରବେଶ ପ୍ରକୋଷ୍ଠରେ ବାରଟି ବିରାଟ ବିରାଟ ପ୍ରଶସ୍ତ ସ୍ତମ୍ଭ ବିଦ୍ୟମାନ । ସ୍ତମ୍ଭମାନଙ୍କରେ ସ୍ୱତନ୍ତ୍ର ଶୈଳୀର କଳାକୃତି ପରିସ୍ଫୁଟ । ମନ୍ଦିର କାନ୍ଥରେ ବିଭିନ୍ନ ମୁଦ୍ରାରେ ଦେବୀ ପ୍ରତିମାଗୁଡ଼ିକ ପୂଜିତ । ମଧ୍ୟସ୍ଥଳରେ ଦେବୀଙ୍କର ଚଳନ୍ତି ପ୍ରତିମା ପୂଜିତା । ଚଳନ୍ତି ପ୍ରତିମା ଅଷ୍ଟ ଧାତୁରେ ପରିସ୍ଫୁଟ । ମା'ଙ୍କ ଆସ୍ଥାନ ପାଞ୍ଚଟି ପାହାଚ ଉପରେ । ପାର୍ଶ୍ୱରେ କାମେଶ୍ୱର ମହାଦେବ, କାର୍ତ୍ତିକେୟ ଓ ଦ୍ୱାଦଶ ବାହୁ ବିଶିଷ୍ଟ ଅଷ୍ଟାଦଶ ଲୋଚନା ସିଂହବାହିନୀ କମଳାସନା ଦେବୀଙ୍କ ମୂର୍ତ୍ତି ବିରାଜିତ । ଏହି ମୂର୍ତ୍ତି କାମେଶ୍ୱର ନାମରେ ପରିଚିତ । ଭକ୍ତଗଣ ପ୍ରଥମେ କାମେଶ୍ୱରୀ ଦେବୀ ଓ କାମେଶ୍ୱର ଶିବଙ୍କ ଦର୍ଶନ ସାରି ମହାମାୟା ପରମ ତନ୍ତ୍ରମୟୀ ଦେବୀଙ୍କ ଦର୍ଶନ କରନ୍ତି । ମା'ଙ୍କର ସମ୍ମୁଖରେ କେତେ ଜଣ ଭକ୍ତ ସ୍ୱତନ୍ତ୍ର ପୂଜାର୍ଚ୍ଚନା କରୁଥିବା ଲକ୍ଷ୍ୟ କଲୁ । ମନ୍ଦିର ଭିଡ଼ ଯୋଗୁଁ ଏହି ସବୁ ଦୃଶ୍ୟ ଦର୍ଶନ ଓ ପୂଜକଙ୍କଠାରୁ ତଥ୍ୟ ସଂଗ୍ରହ ଆମ ପାଇଁ ଶୁଭଙ୍କର ହୋଇଥିଲା । ମା'ଙ୍କ ନିକଟରେ ପହଞ୍ଚିବା ପାଇଁ ଛୋଟ ବଡ଼ ଦଶଟି ଉଚ୍ଚ ଉଚ୍ଚ ପାହାଚ । ତଳକୁ ଗଲେ ନିଭୃତ ଅନ୍ଧକାର ଗୁମ୍ଫାରେ ସର୍ବଦା ପ୍ରଦୀପାଲୋକରେ ଆଲୋକିତ ହୋଇଥାଏ । ପ୍ରାଚୀର ଆକାରର ବିରାଟ ପ୍ରସ୍ତର ଆଢୁଆଳରେ ସ୍ୱର୍ଣ୍ଣାଳଙ୍କାର, ରକ୍ତବସ୍ତ୍ର ରକ୍ତମନ୍ଦାର ବିମଣ୍ଡିତା ମା'ଙ୍କ ଦର୍ଶନରେ କୋଟି ଗୋ-ଦାନର ଫଳ ଓ ପିତୃ-ଦେବ-ଋଷି ଋଣରୁ ମୁକ୍ତି ମିଳେ ବୋଲି ପୂଜକଙ୍କଠାରୁ ଶୁଣିବାକୁ ପାଇଲୁ । ନିଜ ନିଜ ନାମ ଓ ଗୋତ୍ର ଉଚ୍ଚାରଣ ପୂର୍ବକ ସପରିବାର ଉଦ୍ଦେଶ୍ୟରେ ପୂଜକମାନଙ୍କର ମା'ଙ୍କ ପୂଜା-ଅର୍ଚ୍ଚନା ମନକୁ ତୃପ୍ତି ପ୍ରଦାନ କଲା । ମାତୃ ଅଙ୍ଗ ପତିତ ଯୋନିପୀଠ କାମାକ୍ଷାଦେବୀଙ୍କ ମହିମା ଓ ଏହି ସ୍ଥାନର ତନ୍ତ୍ର ସାଧନା ବିଷୟ ଶାସ୍ତ୍ର ପୁରାଣରୁ ଶୁଣିଥିଲୁ, କିନ୍ତୁ ମା'ଙ୍କୁ ଅତି ନିକଟରୁ ଦର୍ଶନ କଲାପରେ ମନରେ ଅନିର୍ବଚନୀୟ ଆନନ୍ଦ ପରିପ୍ରକାଶ କଲା । ଦେବୀଙ୍କ ସମ୍ମୁଖରେ ସ୍ତମ୍ଭୀଭୂତ ହୋଇଗଲୁ । ବାକ୍ ଶକ୍ତି ଲୋପ ପାଇଗଲା । କିଛିକ୍ଷଣ ପରେ ପ୍ରକୃତିସ୍ଥ ହୋଇ ମନେ ମନେ ଜଗଦ୍‌ଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କର ''ଭବାନ୍ୟଷ୍ଟକମ୍'' ଗୁଣୁ ଗୁଣୁ ହେଲୁ-

''ନ ଜାନାମି ଦାନଂ ନ ଚ ଧ୍ୟାନଯୋଗଂ
ନ ଜାନାମି ତନ୍ତ୍ରଂ ନ ଚ ସ୍ତୋତ୍ର ମନ୍ତ୍ରମ୍
ନ ଜାନାମି ପୂଜାଂ ନ ଚ ନ୍ୟାସଯୋଗମ୍
ଗତିସ୍ତ୍ୱଂ ଗତିସ୍ତ୍ୱଂ ତ୍ୱମେକା ଭବାନୀ''

ମା'ଙ୍କ ସିଂହାସନ ତଳେ ଶୀତଳ ସଲିଳା ଝରଣା । ପୂଜକଙ୍କର ନିର୍ଦ୍ଦେଶରେ ନିଜେ ହାତ ବଢ଼ାଇ ଜଳ ଆଣି ମଥାରେ ସିଞ୍ଚନ କଲୁ । ମା'ଙ୍କ ଅପର ପାର୍ଶ୍ୱରେ ଲକ୍ଷ୍ମୀ,

ସରସ୍ୱତୀ ପ୍ରତିମା ପୂଜା ପାଉଛନ୍ତି । ମନ୍ଦିର ଭିଡ଼ ଥିଲେ ମଧ୍ୟ ସନ୍ତୋଷଜନକ ଭାବରେ ତ୍ରି-ଦେବୀଙ୍କ ଦର୍ଶନ ସାରି ମନ୍ଦିର ଗର୍ଭଗୃହରୁ ପ୍ରସ୍ଥାନ କଲୁ । ଫେରିବା ରାସ୍ତାରେ କଲ୍‌କୀରାମ, ଭୈରବ, ରୋଷେଇ ପ୍ରସ୍ତୁତକାରିଣୀ ମା' ଅନ୍ନପୂର୍ଣ୍ଣାଙ୍କ ମନ୍ଦିର ଦର୍ଶନ କଲୁ । ବେଢ଼ା ଭିତରେ ବିଚରଣ କରୁଥିବା ପୂଜକମାନଙ୍କର ରକ୍ତବସ୍ତ୍ର ଓ ରୁଦ୍ରାକ୍ଷମାଳ ବିଭୂଷିତ ବିରାଟକାୟ କୃଷ୍ଣବର୍ଣ୍ଣ ଶରୀର ତନ୍ତ୍ରବିଦ୍ୟାର ସୂଚନା ସଂଚାର କରି ମନ ଭିତରେ ଅଜଣା ଭୟ ସୃଷ୍ଟି କରୁଥିଲା । ବେଢ଼ା ସାରା ପାରା, କୁକୁଡ଼ା ଓ ଛେଳିମାନଙ୍କର ଉପସ୍ଥାନ ପରିଲକ୍ଷିତ ହେଉଥିଲା । ମନ୍ଦିର ବେଢ଼ାରେ ବିରାଟ ବିରାଟ ପ୍ରାଚୀନ ନିମ୍ବ ଗଛ । ଗଛ ମୂଳରେ ଠାକୁରାଣୀଙ୍କର ଅବସ୍ଥାନ ଦର୍ଶନ କଲୁ । ପୁଣି ବିପଣି ବଜାରରେ ପ୍ରବେଶ କରି ସ୍ମୃତିକୁ ସାଉଁଟି ରଖିବା ପାଇଁ ଆସାମ ପ୍ରସିଦ୍ଧ ବାଉଁଶ ତିଆରି ଜିନିଷ ଓ ମା'ଙ୍କ ମହିମା ବର୍ଣ୍ଣିତ କ୍ୟାସେଟ୍ କିଣି କ୍ଷୁଧା ପ୍ରପୀଡ଼ିତ ମନରେ ପ୍ରସାଦ ବିତରଣ ସ୍ଥାନ ଅନ୍ୱେଷଣରେ ଲାଗିପଡିଲୁ । ବସ୍ ପାର୍କିଙ୍ଗ୍ ନିକଟରେ ଏକ ବିଦ୍ୟାଳୟ ବାରଣ୍ଡାରେ ଯାତ୍ରୀଗଣଙ୍କର ଭୋଜନ ପର୍ବ ଆରମ୍ଭ ହୋଇଥିଲା । ସେଠାରେ ପହଞ୍ଚି ସାଢେ ୪ଟାରେ ପ୍ରସାଦ ଗ୍ରହଣ କଲୁ । ଅଧିକାଂଶ ଯାତ୍ରୀ ସଂଧ୍ୟା ପୂର୍ବରୁ ଦେବୀସ୍ଥାନ ପରିତ୍ୟାଗ କରିବା ଇଚ୍ଛା କରୁଥାଆନ୍ତି । କାମ ମଧ୍ୟ ଶେଷ ହୋଇଯାଇଥିଲା, ତେଣୁ ବସ୍ ଭିତରୁ ମା'ଙ୍କ ଉଦ୍ଦେଶ୍ୟରେ ହାତଟେକି ଫେରିବା ଯାତ୍ରା ଆରମ୍ଭ କଲୁ । ବସ୍ ଭିତରେ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କର 'ଦେବ୍ୟପରାଧ କ୍ଷମାପନ ସ୍ତୋତ୍ରମ୍'ର ଶେଷ ପଂକ୍ତିଟି ସ୍ମରଣ କରି କ୍ଷମା ପ୍ରାର୍ଥନା କଲୁ -

''ମତ୍ସମଃ ପାତକୀ ନାସ୍ତି ପାପଘ୍ନୀ ତ୍ୱତ୍ସମା ନ ହି
ଏବଂ ଜ୍ଞାତ୍ୱା ମହାଦେବୀ
ଯଥା ଯୋଗ୍ୟଂ ତଥା କୁରୁ ।''

ଟ୍ରେନ୍‌ର ଅହେତୁକ ବିଳମ୍ବ ଯୋଗୁଁ ବଶିଷ୍ଠ ଆଶ୍ରମ ଭଳି କେତୋଟି ଦର୍ଶନୀୟ ସ୍ଥାନ ଦର୍ଶନ ସୁଯୋଗରୁ ବଞ୍ଚିତ ହେଲୁ, ମାତ୍ର କେତେ ଜଣ ଯାତ୍ରୀ ଜିଦ୍ ଧରିଲେ, ବ୍ରହ୍ମପୁତ୍ର ନଦୀ ନିକଟରେ ପହଞ୍ଚିବା ପାଇଁ । 'ଯିବା', 'ନ ଯିବା', 'ହଁ', 'ନାହିଁ' ବିରୋଧାଭାସ ପରେ ବସ୍ ଅଟକିଲା ବ୍ରହ୍ମପୁତ୍ର ନଦୀ କୂଳରେ । ଜଣକ ପରେ ଜଣେ ଦୌଡ଼ିଲୁ ନଦୀ କୂଳର ନୌକା ନିକଟକୁ । ଟ. ୩୦.୦୦ ଟିକଟ ଦେଇ ବ୍ରହ୍ମପୁତ୍ରରେ ନୌ-ବିହାର ପାଇଁ ପ୍ରସ୍ତୁତ ହେଲୁ । ସ୍ନାତକୋତ୍ତର ଶ୍ରେଣୀରେ ପଢ଼ିଥିବା ସୁରେନ୍ଦ୍ର ମହାନ୍ତିଙ୍କ 'କ୍ଷୁଧିତ ବ୍ରହ୍ମପୁତ୍ର' ପ୍ରବନ୍ଧଟି ସ୍ମରଣ କରି ବ୍ରହ୍ମପୁତ୍ରର ପ୍ରଖର ସ୍ରୋତକୁ ଅନୁଧ୍ୟାନ କଲୁ । କୃଷ୍ଣ ତୃତୀୟା ଯୋଗୁଁ ଆକାଶରେ ଚନ୍ଦ୍ରମାଙ୍କର ଅନୁପସ୍ଥିତି 'ବ୍ରହ୍ମପୁତ୍ରରେ

ନୌ-ବିହାର' ମଜାକୁ ମଳିନ କରି ଦେଇଥିଲା । 'ବ୍ରହ୍ମପୁତ୍ର' ନଦୀର ନାମ ମନରେ ଅଜଣା ଆଶଙ୍କା ସୃଷ୍ଟି କରୁଥିଲେ ମଧ ଭାରତର ଭୌଗୋଳିକ ସୀମାରେଖା ମଧ୍ୟରେ ଏକମାତ୍ର 'ନଦ'(ଆଭିଧାନିକ ଅର୍ଥ ଅନୁସାରେ ପୁଲିଙ୍ଗ) ଦର୍ଶନର ସୁଯୋଗ ହାତଛଡ଼ା କରିବାକୁ ଇଚ୍ଛା କରୁ ନଥିଲୁ । ଦଶ ମିନିଟ୍‌ର ନୌ-ବିହାର ପରେ ଏକ ପାହାଡ଼ ନିକଟରେ ନୌକା ଅଟକିଲା । ବୃକ୍ଷଲତା ପରିପୂର୍ଣ୍ଣ ପାହାଡ଼, ଅନ୍ଧକାର ରାତ୍ରି ସମୟ ଶିବ ମନ୍ଦିର ଦର୍ଶନ ପ୍ରାୟତଃ ନିଷେଧ ତଥାପି କେତେଜଣ ଯାତ୍ରୀ ସାଙ୍ଗରେ ଆଲୋକ ଧରି ପାହାଡ଼ ଚଢ଼ିବା ପାଇଁ ଉଦ୍ୟତ ହେଲେ । ନାଉରିଆଠାରୁ ବୁଝିବାକୁ ପାଇଲୁ ସେଠାରେ ''ଉମାନନ୍ଦ ବାବା'' ପୂଜିତ । ମାତା କାମାକ୍ଷୀଦେବୀଙ୍କ ଭୈରବ 'ଉମାନନ୍ଦ ବାବା' ତେଣୁ ଏଠାରେ ସକଳ ପ୍ରକାର ତନ୍ତ୍ର ସାଧନା କରାଯାଏ । ଅନ୍ଧକାର ରାତ୍ରିରେ ପ୍ରଖର ସ୍ରୋତ କଳ କଲ୍ଲୋଳ ନାଦରେ ନଦୀ ସଲିଳ ସଲୀଳାରେ ନୌକା ଦେହରେ ମଧ୍ୟ ପିଟୁଥିବାର ଦୃଶ୍ୟ ଝାପ୍‌ସା ଆଲୋକରେ ବାସ୍ତବିକ ମନୋମୁଗ୍ଧକର ଥିଲା । କୁନ୍ତଳା କୁମାରୀ ସାବତଙ୍କ 'ମା' କବିତାର ପଂକ୍ତିଟି ଏଠାରେ ଉଲ୍ଲେଖଯୋଗ୍ୟ-

''ବ୍ରହ୍ମପୁତ୍ର ବହେ ପବିତ୍ର କଲ୍ଲୋଳେ
ଉଠେ ମହାଗୀତି ବ୍ୟୋମେ, ଜଳେ ସ୍ଥଳେ ।''

ନୌ-ବିହାର ପରେ ରାତ୍ର ନଅଟାରେ ହୋଟେଲ ଯିବା ସମୟରେ ଆମେ ଓଡ଼ିଆରେ କଥା ହେଉଥିବା ଶୁଣି ରାସ୍ତାରେ ରାୟଗଡ଼ା ଜିଲ୍ଲା ପଦ୍ମପୁର ବାସିନ୍ଦା ଆମର ଆତ୍ମୀୟଯୁବକଙ୍କ ସହ ବାର୍ତ୍ତାଳାପ ପରେ ହୋଟେଲ୍ ଆଣି ପରିବେଷଣ କରାଯାଇଥିବା ଯତ୍ କିଞ୍ଚିତ୍ ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ ।

**ତା. ୨୧.୦୫.୨୦୧୧**

ଆଜି ପୃଥିବୀର୍ ସର୍ବାଧିକ ବୃଷ୍ଟି ଅଞ୍ଚଳ ଚେରାପୁଞ୍ଜି ଓ ମେଘରାଣୀର ରାଜ୍ୟ ମେଘାଳୟର ରାଜଧାନୀ ଶିଲଂର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗର କାର୍ଯ୍ୟକ୍ରମ ଥିଲା । ନିର୍ଦ୍ଧାରିତ ବସ୍ ଯୋଗେ ଗୌହାଟୀରୁ ୭ ଘ. ୨୦ ମିନିଟ୍‌ରେ ଯାତ୍ରାରମ୍ଭ ହେଲା । ଗୌହାଟୀ ଠାରୁ ଶିଲଂର ଦୂରତା ୬୪ କି.ମି. 'ନଙ୍ଗପୋଲ' ନାମକ ଏକ ଘଞ୍ଚ ଜଙ୍ଗଲ ନିକଟରେ ୮ ଘ. ୫୦ ମି. ସମୟରେ ଚା' ପାନ ପାଇଁ ବସ୍ ଅଟକିଲା । ରାସ୍ତା ସାରା ବିରାଟ ବିରାଟ ବୃକ୍ଷ ପରିବେଷ୍ଟିତ ଜଙ୍ଗଲ, ମଝିରେ ମଝିରେ ରାଜଧାନୀର ସୁଉଚ୍ଚ ଅଟ୍ଟାଳିକା ମନୁଷ୍ୟ ଓ ପ୍ରକୃତି ମଧ୍ୟରେ ଥିବା ପ୍ରତିଯୋଗିତାକୁ ପରିପ୍ରକାଶ କରୁଥିଲା । ଶିଲଂ ସହରର ଅନତି ଦୂରରେ ଶିଲଂ କାଣ୍ଟନମେଣ୍ଟ୍ ହସ୍‌ପିଟାଲ ପରିସର ଦୃଷ୍ଟିଗୋଚର ହେଲା । ସେଠାରେ ସୁଉଚ୍ଚ ଫଳକରେ ଲେଖାଥିବା ଧାଡ଼ିଟି

ଏହିପରି ଥିଲା - "Indian Army Vigil and alert as ever", 'Sell-i-mark' ନାମକ ଏକ ସୁନ୍ଦର ପାର୍କର ମନଲୋଭା ଦୃଶ୍ୟ ବସ୍ ଉପରୁ ଉପଭୋଗ କଲୁ । ରାସ୍ତାର ପର୍ବତ ମଧ୍ୟସ୍ଥ ଛୋଟ ବଡ଼ କଳ କଳ ନିନାଦିନୀ ଶୁଭ୍ର ସଲିଳା ବନ ଝରଣାର ଅପୂର୍ବ ସୌନ୍ଦର୍ଯ୍ୟ ଓ ମଧୁର ଗୁଞ୍ଜନ ଅକ୍ଷୟ ମହାନ୍ତିଙ୍କର ସେଇ ଗୀତ ପଦଟିକୁ ସ୍ମରଣ କରାଉଥିଲା -

''ମୁଁ ଏକ ଅମାନିଆ ବଣ ଝରଣା
ଝରିବା ଯାଏଁ ମୋର ନାହିଁ ଠିକଣା
ଜାଣେନା ମୁଁ କେଉଁ ଦୂର ସାଗରକୁ ପାଇବି ଖୋଜି
ଅବା ହଜିଯିବି କେଉଁ ମରୁଭୂଇଁରେ ....''

ସ୍ଥାନେ ସ୍ଥାନେ ଛୋଟ ବଡ଼ କୋଇଲା ଗଦା ମଧ୍ୟ ଦେଖିବାକୁ ମିଳୁଥିଲା । ଆମ ଯାତ୍ରାରମ୍ଭ ସମୟରେ ପାଗ ସାମାନ୍ୟ ମେଘୁଆ ଥିଲା, ଶିଲଂ ପାଖାପାଖି ହେଲା ବେଳକୁ ମେଘରାଣୀ ବର୍ଷା ସାଙ୍ଗରେ ଧରି ଆମ ସହିତ ଏକାଠି ଯାଉଥିବାର ଲକ୍ଷ୍ୟ କଲୁ । ଦିନ ୧୧ ଘ. ୩୦ ମିନିଟ୍‌ରେ କିଏ ବସ୍ ଭିତରେ କିଏ ବସ୍ ବାହାରେ ପ୍ରସାଦ ସେବନ କଲୁ । ପୁଣି ଗାଡ଼ି ଛୁଟିଲା ଆମର ଇପ୍‌ସିତ ଲକ୍ଷ୍ୟସ୍ଥଳ ଚେରାପୁଞ୍ଜି ଅଭିମୁଖେ । ସମୁଦ୍ର ପତ୍ତନଠାରୁ ଚେରାପୁଞ୍ଜିର ଉଚ୍ଚତା ୬୫୪୦ ଫୁଟ । ଚେରାପୁଞ୍ଜି ଯିବା ରାସ୍ତାରେ ଗାଡ଼ିରୁ ଓହ୍ଲାଇ ଲେଡ଼ି ହାରଇଦରି ପାର୍କ ଓ ଏଲିଫେଣ୍ଟସ୍ ଫଲ୍‌ସରେ କିଛି ସମୟ ରହି ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ ସହ କିଛି ଉପହାର ସାମଗ୍ରୀ କିଣାକିଣିର ସୁଯୋଗ ନେଲୁ । ବର୍ଷାରେ ଗରମ ମକା ପୋଡ଼ାର ମଜା ଉଠାଇବା ପାଇଁ ଓଡ଼ିଶାର ଟ. ୫.୦୦ ର ମକାକୁ ଟ. ୧୫.୦୦ ବିନିମୟରେ କିଣି ପାହାଡ଼ିଆ ମକାର ସ୍ୱତନ୍ତ୍ର ସ୍ୱାଦ ଆସ୍ୱାଦନ କଲୁ । ସେଠାରେ ପ୍ରସ୍ତର ଗୁଡ଼ିକରେ ବିଭିନ୍ନ ପ୍ରକାର ଲେଖାଥିବା ଲକ୍ଷ୍ୟ କଲୁ । ଗୋଟିକରେ ଲେଖାଥିଲା - "Explore the caves inside the clouds". ଅବିଭକ୍ତ ଆସାମ ରାଜ୍ୟର ମୁଖ୍ୟ ପର୍ବତ ଗାରୋ, ଖାସି, ଜୟନ୍ତିଆର ଅପରୂପ ଦୃଶ୍ୟ ଦର୍ଶନର ସୁଯୋଗ ପାଇଲୁ । ବର୍ଷସାରା ବର୍ଷା ପ୍ଳାବିତ ଖାସି ପର୍ବତ ଉପରେ ଅବସ୍ଥିତ ଚେରାପୁଞ୍ଜି ଉଦ୍ଦେଶ୍ୟରେ ଗାଡ଼ି ଉପରକୁ ଉପରକୁ ଉଠୁଥିବା ବେଳେ ଏକ ଅଜଣା ମଜା ଉପଭୋଗ କରୁଥିଲୁ । ପ୍ରଶସ୍ତ ପକ୍‌କା ରାସ୍ତା ଉପରେ ଆମ ବସ୍ ଗୁଡ଼ିକ ଗଡ଼ି ଚାଲିଥାଏ । ଆମ ଡ୍ରାଇଭର ମାନଙ୍କର ସତର୍କତାପୂର୍ଣ୍ଣ ଗାଡ଼ି ଚାଳନା, ପର୍ଯ୍ୟଟନସ୍ଥଳୀ ଗୁଡ଼ିକୁ ଚିହ୍ନିତ କରାଇବା ଇତ୍ୟାଦି ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ଆମମାନଙ୍କୁ ଆପ୍ୟାୟିତ କରୁଥିଲା । ପର୍ବତ ବକ୍ଷର ଉଠାଣି ବୁଲାଣି ରାସ୍ତା ଦେଇ

ବସ୍ ପହଞ୍ଚିଲା ଚେରାପୁଞ୍ଜିର ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ଇଲାକାରେ । ମେଘାଚ୍ଛାଦିତ ଆକାଶରୁ ଫୁଲଝରି ସଦୃଶ୍ୟ ବାରିପାତକୁ ଭ୍ରୁକ୍ଷେପ ନକରି ହୁଏତ ଜୀବନରେ ଆଉ ଥରେ ଏହି ସୁଯୋଗ ଆସିନପାରେ ଭାବି ଶୀତବସ୍ତ୍ର ପରିଧାନ ପୂର୍ବକ ଜଣେ ଜଣେ ବସ୍‌ରୁ ଓହ୍ଲାଇଲୁ । ମାଇଲ୍ ପୋଷ୍ଟରୁ ପଢ଼ି ଜାଣିଲୁ ସେହି ସ୍ଥାନର ନାମ ଉଆକାଭା ଟୁରିଷ୍ଟ ସ୍ପଟ୍ 'Wahkaba Tourist Sopt' କେତେଜଣ ସବଳ ସାହସୀ ଯୁବକ ପାହାଚ ଦେଇ ତଳକୁ ଓହ୍ଲାଇଲେ ମେଘମାଳାଙ୍କୁ ସ୍ପର୍ଶ କରିବା ପାଇଁ । ଆମ ଭଳି କେତେଜଣ ଉପରେ ଥାଇ ମେଘମହ୍ଲାର ମନଲୋଭା ସୌନ୍ଦର୍ଯ୍ୟରେ ଅବଗାହନ କଲୁ । ସାତୋଟି ପାହାଡ଼ ମଧ୍ୟରେ ଶୁଭ୍ର ବାରିଦର ବିଚକ୍ଷଣ ବିଚରଣ ଦର୍ଶକ ପର୍ଯ୍ୟଟକଙ୍କ ମନରେ ପ୍ରକୃତି ପ୍ରେମ ରସ ସଞ୍ଚାର କରୁଥିଲା । ଗ୍ରୀଷ୍ମାବକାଶ ସମୟ ପୁଣି ଆସାମ, ମେଘାଳୟ, ଦାର୍ଜିଲିଂ-ଗ୍ୟାଙ୍ଗଟକ-ନେପାଳ ଭଳି ଚିତ୍ତାକର୍ଷକ ସ୍ଥାନ ଭ୍ରମଣର ସହଜ, ଶସ୍ତା ଓ ସୁବିଧାଜନକ ସୁଯୋଗ ଯୋଗୁଁ ଏଥର ବହୁତ ଜଣ ବାଳକ, ବାଳିକା ଆମ ତୀର୍ଥସାଥୀ ହୋଇଥିଲେ । ଆମ ଯାତ୍ରୀମାନଙ୍କ ଭିତରୁ କିଏ କିଏ ଆମେ ଜୀବିତ ଅବସ୍ଥାରେ ସ୍ୱର୍ଗରେ ପହଞ୍ଚିଗଲେ ବୋଲି ଲଘୁ ପରିହାସଛଳରେ ବ୍ୟକ୍ତ କରିଥିଲେ । ସେମାନଙ୍କର ପରିହାସରେ ଭାଗ ନେଇ ମୁଁ ମଧ୍ୟ ମୋର ମତାମତ ଉପସ୍ଥାପନ କରି କହିଲି- ''ଅଳକାପୁରୀରେ ପହଞ୍ଚିବା କଥା ଆପଣମାନେ କହୁଛନ୍ତି ଯେ ହେଲେ 'ଅମୃତ' ଓ 'ଅପ୍‌ସରା' କାହାନ୍ତି ? 'ଅ' ରେ ପହଞ୍ଚି ଦୁଇଟି 'ଅ'ର ଅଭାବ ରହିଗଲା ।'' ସେଠାରେ ସ୍ଥାନୀୟ ଲୋକମାନଙ୍କ ଠାରୁ ଶୁଣିବାକୁ ପାଇଲୁ ଯେ ଭୂ-ସ୍ୱର୍ଗ କାଶ୍ମୀରର ଶୋଭାଠାରୁ ଶିଲଂ ଓ ଚେରାପୁଞ୍ଜିର ନୈସର୍ଗିକ ସୌନ୍ଦର୍ଯ୍ୟ କୌଣସି ଗୁଣରେ ନ୍ୟୁନ ନୁହେଁ । ଆତଙ୍କବାଦୀଙ୍କ ଭୟ ଯୋଗୁଁ ବର୍ତ୍ତମାନ ବହୁସଂଖ୍ୟାରେ ପର୍ଯ୍ୟଟକମାନେ ଏହି ସ୍ଥାନକୁ ପସନ୍ଦ କରୁଛନ୍ତି । ଆମେ ମଧ୍ୟ ଉପଲବ୍ଧ କଲୁ - କେଉଁଠାରେ ବନ ନିର୍ଝରର ଝର ଝର ଧ୍ୱନୀ, ପାହାଡ଼ି ନଈର କଳ କଳ ନିନାଦ, ବନ ପକ୍ଷୀର କାକଳି, ଆସାମ ଜଙ୍ଗଲର ବାଉଁଶ ବଣରୁ ବହି ଆସୁଥିବା ମୃଦୁ ମନ୍ଦ ମଳୟର ସ୍ପର୍ଶ ଯାତ୍ରୀମାନଙ୍କର କର୍ଣ୍ଣକୁହରରେ ଅମୃତ ବର୍ଷା କରୁଥିଲା । ଭାବିନେଲୁ ଏହା ହିଁ 'ଅମୃତ', ଆଉ ସ୍ୱାଦିଷ୍ଟ ଅମୃତ ଲାଭ କରି ଅମର ହେବାର ଆବଶ୍ୟକତା ନାହିଁ । ବର୍ତ୍ତମାନ ବାକି ରହିଲା ଅପସରା ଗଣଙ୍କର ନୃତ୍ୟ, ହଠାତ୍ ସ୍ମରଣକୁ ଆସିଲା ସ୍ୱଭାବ କବି ଗଂଗାଧର ମେହେରଙ୍କର ନବମ ଶ୍ରେଣୀରେ ପଢ଼ିଥିବା 'ଆଶ୍ରମେ ପ୍ରଭାତ' କବିତାର ମନୋଜ୍ଞ ପଂକ୍ତିଟି -

''ସମୀର ସଙ୍ଗୀତ ଗାଏ ଭ୍ରମର ବୀଣା ବଜାଏ
ସୁରଭି ନର୍ତ୍ତନେ ଥାଏ ଭଷା ନିର୍ଦ୍ଦେଶେ ।''

ଏସବୁ ପ୍ରକୃତିର ଲୀଳାଖେଳା ଅପସରାଗଣଙ୍କ ନୃତ୍ୟ ସହ ସମକକ୍ଷ । ତେଣୁ ଅଳକାପୁରୀର ସମସ୍ତ ପ୍ରାଚୁର୍ଯ୍ୟ ଉପଭୋଗର ଅବକାଶ ମିଳିଗଲା ଭାବି ଆନନ୍ଦ ବିଭୋର ହୋଇଉଠିଲୁ । ଚା' ବାଲାଟିଏ ଆମକୁ 'ଚେରାପୁଞ୍ଜି'ର ଅର୍ଥ ବୁଝାଇବାକୁ ଯାଇ କହିଲା - ସେମାନଙ୍କ ଭାଷାରେ 'ଚେରା' ଅର୍ଥ ପାହାଡ଼, ପୁଞ୍ଜିମାନେ ୦୪, ଚାରୋଟି ମୁଖ୍ୟ ପାହାଡ଼ ମଧ୍ୟରେ ମେଘ ଘୂରିବୁଲୁଥିବା ସ୍ଥାନର ନାମ 'ଚେରାପୁଞ୍ଜି', ଆଖି ଫେରୁ ନଥିବା ଅବସ୍ଥାରେ ସେଠାରୁ ବାଧ୍ୟ ହୋଇ ଫେରିଆସିଲୁ ସଂଧ୍ୟା ପୂର୍ବରୁ ଆଉ ଗୋଟିଏ ଦୁଇଟି ନୂତନ ସ୍ଥାନର ସୌନ୍ଦର୍ଯ୍ୟ ରସ ସେବନର ଲାଳସା ନେଇ । ବସ୍ ଭିତରେ ବିଖ୍ୟାତ - American Poet Robert Frost ଙ୍କର କବିତାର ଦୁଇ ଧାଡ଼ି ସ୍ମରଣକୁ ଆସୁଥିଲା -

" The woods are lovely dark and deep
But have promises to keep
And miles to go before I sleep
And miles to go before I sleep".

ବର୍ତ୍ତମାନ ପହଞ୍ଚିଲୁ MAWSAMI CAVE ନିକଟରେ । ଏଠାରେ ଥିବା ପ୍ରାକୃତିକ ଗୁମ୍ଫାର ଦୈର୍ଘ୍ୟ ୧୫୦ମିଟର । ଭିତର ସଂପୂର୍ଣ୍ଣ ଅନ୍ଧକାର । ହାତରେ ଆଲୋକ ଧରି, ଖାଲି ପାଦରେ, ସ୍ଥାନେ ସ୍ଥାନେ ଗୁରୁଣ୍ଡି, ଘୋଷାରି ହୋଇ ଯିବାକୁ ହୋଇଥାଏ ତେଣୁ ଆମ ପକ୍ଷେ ଏହା ଅସମ୍ଭବ ଭାବି ବାହାରୁ ବାହାରୁ ଏହି ସ୍ଥାନ ଦେଖିଲୁ । ଆମ ଭିତରୁ କେତେ ଜଣ ଯୁବକ ସେହି ଗୁମ୍ଫା ଭ୍ରମଣ କରି ଫେରିଲେ । ସେମାନଙ୍କ ମୁହଁରୁ ସେମାନଙ୍କ ଅନୁଭୂତି ସଂଗ୍ରହ କଲୁ । ସ୍ମୃତିକୁ ଜାବୁଡ଼ି ରଖିବା ପାଇଁ ୨/୪ଟି ଫଟୋ ଉତ୍ତୋଳନ କଲୁ । ସ୍ୱାଦିଷ୍ଟ ଗରମ କଫି ପାନର ମଜ୍ଜା ନେଲୁ । ଦେଖା ଶିଖା ନ୍ୟାୟରେ ଡ଼ାଲଚିନି ପ୍ୟାକେଟ୍ ଟିଏ କିଣିଲୁ । ସମସ୍ତେ ଏକତ୍ର ହେବା ପର୍ଯ୍ୟନ୍ତ ପ୍ରାକୃତିକ ଦୃଶ୍ୟ ଉପରେ ଆଖି ବୁଲାଉଥିଲୁ । ଦିନ ୩ଘ. ୫୫ମିନିଟ ରେ ଆମେ ସେଠାରେ ପହଞ୍ଚିଥିଲୁ , କିନ୍ତୁ ଝିଙ୍କାରୀ ମାନଙ୍କର ତଣ୍ଡିଫଟା ଚିତ୍କାର ସେହି ସମୟରେ ଶୁଣିବାକୁ ପାଇଥିଲୁ । ୧୯୭୬ ମସିହାରେ ଦେଖିଥିବା ପ୍ରଶାନ୍ତ ନନ୍ଦ ଓ ମହାଶ୍ୱେତାଙ୍କ ଅଭିନୀତ ''ଶେଷ ଶ୍ରାବଣ'' ଚଳଚ୍ଚିତ୍ରର ସୁଲଳିତ ନୃତ୍ୟଭଙ୍ଗୀକୁ ମନେ ପକାଇଲୁ -

''ହାଏ ରେ ହାଏ - ଗରଜେ ମେଘ ଘୁମ୍ ଘୁମ୍
ବରଷା ଝରେ ରୁମ୍ ଝୁମ୍
ମୟୁର ନାଚେ ଛମ୍ ଛମ୍
ଝିଙ୍କାରୀ ଡ଼ାକେ ରିନ୍ ଝିନା ଝିନ୍ - ଝିନ୍ ଝିନ୍ ଝିନ୍'' ।

ଝିଙ୍କାରୀ ଡ଼ାକରୁ କାନ ଓ ମନକୁ ଫେରାଇ ଡ୍ରାଇଭର୍ ଡ଼ାକରେ ଗାଡ଼ିରେ ବସିଲୁ ଓ ପହଞ୍ଚିଲୁ ଭାରତ - ବାଂଲାଦେଶ ସୀମାରେ । ଉଭୟ ଦେଶର ନିଜ ନିଜ ସୀମା ଭିତରେ ଗୋଟିଏ ଗୋଟିଏ Check Post ଥିବା ଲକ୍ଷ୍ୟ କଲୁ । ୱାଘା ସୀମା ଭଳି ଏଠାରେ କଡ଼ା ନିରାପତ୍ତା ବ୍ୟବସ୍ଥା ନାହିଁ, କେବଳ ତାରବାଡ଼ ରହିଛି । ଆମ ଦେଶ Check Post ନିକଟରେ ଠିକଣା ବୋର୍ଡ଼ରେ ଲେଖାଥିଲା -

"Mawsami Nangthyammai Eco-Tourism
East Khasi Hills
Indo - Bangladesh Border 2540 mts Height".

ଏଇ ପର୍ଯ୍ୟଟନ ସ୍ଥଳୀ ସେ ଦିନର ଯାତ୍ରାର ଶେଷ ବିନ୍ଦୁ । ତା'ପରେ ପ୍ରତ୍ୟାବର୍ତ୍ତନ- ଶୀଳ ଯାତ୍ରାରମ୍ଭ । ରାତି ନଅଟାରେ ଗୌହାଟୀ ହୋଟେଲ୍‌ରେ ପହଞ୍ଚିଲୁ । ହୋଟେଲକୁ ଆଣି ପ୍ରସାଦ ଦିଆଯାଇଥିଲା । ପ୍ରସାଦ ସେବନ ପରେ ରାତ୍ରି ବିଶ୍ରାମ ନେଲୁ ।

*ତା. ୨୨.୦୪.୨୦୧୧*

ସକାଳୁ ସକାଳୁ ଗୌହାଟୀରେ ଝିପି ଝିପି ବର୍ଷା ଲାଗି ରହିଥିଲା । ତ୍ରିପାଠୀ ଦମ୍ପତିଙ୍କ ସହ ଗୋଟିଏ ଅଟୋରେ କାମାକ୍ଷା - ମାତାଙ୍କୁ ପ୍ରଣିପାତ କରି ୫ଘ.୩୦ମି,ରେ ହୋଟେଲରୁ ପ୍ରସ୍ଥାନ କଲୁ । ସକାଳ ୭ଘ.୩୫ମି.ରେ ଆମ ସଂରକ୍ଷିତ ଗୌହାଟୀ - ନବଦ୍ୱୀପ ଧାମ ଟ୍ରେନ୍ ଆରୋହଣ କରି ନିତାଇ-ଗୌର ଜନ୍ମସ୍ଥାନ ନବଦ୍ୱୀପ ଅଭିମୁଖେ ଯାତ୍ରାରମ୍ଭ କଲୁ । ଦିନ ବେଳା ଓ ସଂଧ୍ୟା ସମୟରେ ଟ୍ରେନ୍‌ରେ ପ୍ରସାଦ ସେବନ କରିଥିଲୁ । ପ୍ରାତଃ ୪ ଘଣ୍ଟା ସମୟରେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ନିର୍ଦ୍ଧାରିତ ହୋଇଥିବା ଯୋଗୁଁ S-5 ବଗିର 44 ଓ 45 ନଂ ସିଟ୍‌ରେ ରାତ୍ରି ବିଶ୍ରାମ ନେଲୁ ।

*ତା. ୨୩.୦୪.୨୦୧୧*

ପ୍ରାତଃ ୪ ଘଣ୍ଟା ସମୟରେ ନବଦ୍ୱୀପ ଧାମ ଷ୍ଟେସନରେ ଗାଡ଼ିରୁ ଓହ୍ଲାଇଲୁ । ସେଠାରୁ ନିଜସ୍ୱ ବ୍ୟବସ୍ଥାରେ ରିକ୍ସାରେ ଗଙ୍ଗାଘାଟ ନିକଟରେ ପହଞ୍ଚିଲୁ । ସେହି ସମୟରେ ନବଦ୍ୱୀପ ଧାମରେ ମନ୍ଦିର ମାନଙ୍କର ମଙ୍ଗଳ ଆଳତୀର ଶଙ୍ଖ ହୁଳହୁଳି ଓ ଘଣ୍ଟ ଧ୍ୱନି ଶ୍ରୁତି ଗୋଚର ହେଉଥିଲା । ଗଙ୍ଗାଘାଟରେ ପହଞ୍ଚି ଟିକଟ ସଂଗ୍ରହ କରି ଛୋଟ କାଠ ପୋଲଟିଏ ପାର ହୋଇ ନୌକାରେ ବସିଲୁ । ୪୦ମିନିଟ୍ ପୂତ ପୟୋଧାରା ଜାହ୍ନବୀ ବକ୍ଷରେ ନୌ ଯାତ୍ରା କରି ଅପର ପାର୍ଶ୍ୱସ୍ଥ ମାୟାପୁରୀରେ

ପହଞ୍ଚିଲୁ । ନଦିଆ ଜିଲ୍ଲାସ୍ଥ ମାୟାପୁରୀ ସହରରେ ଇସ୍କନ ମନ୍ଦିରର ମୁଖ୍ୟ ଫାଟକ ସମ୍ମୁଖରେ "ପୋରମା ହୋଟେଲ୍"ରେ ଆମ ପାଇଁ ସ୍ଥାନ ସଂରକ୍ଷିତ ହୋଇଥିଲା । ରୁମ୍ ଖାଲି ହେବା ସମୟ ସକାଳ ୬ଘଣ୍ଟା ଥିଲା, ଆମେ ପହଞ୍ଚିଥିଲୁ ସକାଳ ୫ଘ.୩୦ମି.ରେ । ତେଣୁ ଅଳ୍ପ ସମୟ ପାଇଁ ବାରଣ୍ଡାରେ ଅପେକ୍ଷା କରିବାକୁ ହେଲା । ଆମ ରୁମ୍ ପଡ଼ିଶାରେ ଶ୍ରୀ ରାଉତ ବାବୁଙ୍କର ରୁମ୍ ଥିଲା ଏବଂ ସେମାନେ ନିକଟ ଅତୀତରେ ମାୟାପୁରୀରେ ତିନିଦିନ ରହଣି କରି ମାୟାପୁରୀର କୋଣ ଅନୁକୋଣ ସହ ପରିଚିତ ଥିଲେ । ସକାଳ ମେଘର ଝିପି ଝିପି ବର୍ଷା ସତ୍ତ୍ୱେ ଝାନ୍‌ସୀ ମ୍ୟାଡ଼େମ୍ ଓ ମୁଁ ଗଂଗା ସ୍ନାନ ପାଇଁ ବାହାରିଲୁ । ଭାରତ ବର୍ଷର ଭୂଗୋଳ ଯାନ୍ତ୍ରିକ ସଭ୍ୟତାର ବିକାଶ ଯୋଗୁଁ ପ୍ରତି ଦିନ ବଦଳୁଛି, ସେମାନେ ଦୁଇ ବର୍ଷ ତଳେ ସେଠାକୁ ଆସିଥିଲେ ତେଣୁ ସେମାନେ ପୂର୍ବରୁ ଦେଖିଥିବା ପାଦ ଚଲା ରାସ୍ତା ବନ୍ଦ ହୋଇ ବିରାଟ ବିରାଟ ସୌଧ ଦଣ୍ଡାୟମାନ । ବାଟ ଖୋଜି ମଧ ପାଇପାରିଲୁ ନାହିଁ । ବର୍ଷା ପ୍ରବଳ ହେବାକୁ ଲାଗିଲା । ବର୍ଷାର ପରିମାଣ କମ୍ ହୋଇ ଆସିଲା ବେଳକୁ ପବନର ଗତି ବଢ଼ିବାକୁ ଲାଗିଲା । ଦୋକାନ ବାରଣ୍ଡାରେ ୧୦ମିନିଟ୍ ଅପେକ୍ଷା କଲୁ ତା'ପରେ ବାଟ ଖୋଜି ଖୋଜି ଯାଇ ଗଂଗା ନଦୀର ସ୍ନାନଘାଟ ନିକଟରେ ପହଞ୍ଚିଲୁ । ଆମଭଳି ବର୍ଷା ପବନକୁ ଖାତିର ନକରି ରାସ୍ତା ସାରା ଲୋକମାନଙ୍କର ଯିବା ଆସିବା ଲାଗି ରହିଥାଏ । ଘାଟରେ ପହଞ୍ଚି ପ୍ରଶାନ୍ତ ଗଂଗା ମାତାଙ୍କର ଅଶାନ୍ତ ରୂପ ଲକ୍ଷ୍ୟ କଲୁ । ସ୍ନାନ ତୁଠର ପାହାଚ ଉପରେ ବସିଥିବା ସମୟରେ ବେଗଗାମୀ ପବନର ହିଲ୍ଲୋଳରେ ଗଂଗା ମାତାଙ୍କର ତରଙ୍ଗ ଆମ ଆପାଦ ମସ୍ତକ ସିକ୍ତ କରି ଦେଉଥିଲା । ଆମ ଭଳି ଅକିଞ୍ଚନ ପ୍ରତି ଏହା ଗଂଗାମାତାଙ୍କର ଅପାର କରୁଣା ନୁହେଁ ତ ଆଉ କ'ଣ ହୋଇପାରେ? ଫେରିବା ସମୟରେ ବର୍ଷା ପବନ ଥମି ଯାଇଥିଲା । ଘରେ ପହଞ୍ଚି ଭାବିଲୁ ବର୍ଷା ପବନ ଭୟରେ ରହିଯାଇଥିଲେ ଗଂଗାସ୍ନାନ ସୁଯୋଗ ହାତଛଡ଼ା ହୋଇଥାଆନ୍ତା, ସକାଳ ୭ଟାରେ ଇସ୍କନ ସଂସ୍ଥାର କେନ୍ଦ୍ର ମାୟାପୁରୀର ମନ୍ଦିର ଦର୍ଶନରେ ବାହାରିଲୁ । ଆରତୀ କାର୍ଯ୍ୟକ୍ରମରେ ଭାଗନେଲୁ । କ୍ଳାନ୍ତି ଅନୁଭବ କଲା ପର୍ଯ୍ୟନ୍ତ ସଂକୀର୍ତ୍ତନ ମଣ୍ଡଳୀ ସହ କୀର୍ତ୍ତନରେ ଭାଗ ନେଲୁ । ଅନ୍ୟ ମନ୍ଦିର ଅପେକ୍ଷା ଏଠାରେ ଏକ ନୂତନ ଲକ୍ଷଣ ଲକ୍ଷ୍ୟ କଲୁ । ଅଷ୍ଟସଖୀଙ୍କ ସହ ଯୁଗଳ ମୂର୍ତ୍ତିଙ୍କର ଏକତ୍ର ସହାବସ୍ଥାନ ଏଠାରେ ଦର୍ଶନ କଲୁ । ଶ୍ରୀନୃସିଂହ ମହାପ୍ରଭୁ ଓ ପଞ୍ଚତତ୍ତ୍ୱଙ୍କର ମନ୍ଦିର ଓ ସମ୍ମୁଖରେ ପ୍ରଭୁପାଦଙ୍କର ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ବିଦ୍ୟମାନ । ତୁଳସୀ ଚଉରାରେ ପାଣି ଢ଼ାଳି ମନ୍ଦିର ଭିତରୁ ବାହାର ବେଢ଼ାକୁ ଆସିଲୁ । ଗୋବିନ୍ଦ ବଜାରରୁ ଜଳଖିଆ ଗ୍ରହଣ କଲୁ । ବିରାଟ ଆୟତନ ବିଶିଷ୍ଟ ମନ୍ଦିର ବେଢ଼ାର ଅନେକ ମନ୍ଦିର, ଅଖଣ୍ଡ କୀର୍ତ୍ତନ ସ୍ଥଳ,

ଗୋ-ଶାଳା, ସ୍ୱାମୀ ପ୍ରଭୁପାଦ ଜୀଙ୍କର ପୁଷ୍ପ ସମାଧି ଓ ପ୍ରଦର୍ଶନୀ ଦର୍ଶନ କଲୁ । ବିରାଟ ବିରାଟ କ୍ରେନ୍ ଓ ଆଧୁନିକ ଯନ୍ତ୍ରପାତି ସାହାଯ୍ୟରେ ବେଢ଼ା ଭିତରେ ଅନେକ ମନ୍ଦିର ତିଆରି ହେଉଥିବା ଲକ୍ଷ୍ୟ କଲୁ । ମଧ୍ୟାହ୍ନ ସମୟରେ 'ଗଦା ଭବନ'ରେ କୁପନ ଦେଖାଇ ଶୁଦ୍ଧ ସ୍ୱାଦିଷ୍ଟ ପ୍ରସାଦ ସେବନ କଲୁ । ଅପରାହ୍ନ ୩ଟା ସମୟରେ ଇଚ୍ଛୁକ ଯାତ୍ରୀମାନେ ଏକତ୍ରିତ ହୋଇ 'ନଦଦ୍ୱୀପ ଧାମ' ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କଲୁ । ଗଂଗାଘାଟରେ ଗଂଗାପାର ହୋଇ 'ନବଦ୍ୱୀପ'ରେ ପହଞ୍ଚିଲୁ । ସେଠାରେ ଇସ୍କନ ବାବା ଶରଣ ପ୍ରଭୁଙ୍କର ସହାୟତାରେ ୦୬ଟି ପ୍ରସିଦ୍ଧ ମନ୍ଦିର ଦର୍ଶନ ପାଇଁ ରିକ୍ସାବାଲାଙ୍କ ସହିତ ରିକ୍ସା ଭଡ଼ା ନିର୍ଦ୍ଧାରିତ ହେଲା । ତା'ପରେ ସବୁ ରିକ୍ସା ଏକ ସଙ୍ଗରେ ନଗର ପରିକ୍ରମା ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କଲେ । ପ୍ରଥମେ ପହଞ୍ଚିଲୁ ଦିନ ୪ ଘଣ୍ଟା ସମୟରେ 'ରାଧାରାଣୀ ମନ୍ଦିର' ନିକଟରେ । ସେଠାରେ ଟିକଟ ସଂଗ୍ରହ କରି 'ଗୁପ୍ତ ବୃନ୍ଦାବନ' ନାମକ ଏକ ଉଦ୍ୟାନ ସନ୍ନିବେଶିତ ମନ୍ଦିର  ଦର୍ଶନ କଲୁ । ଦ୍ୱିତୀୟରେ ନିତାଇ-ଗୌର ମିଳନ ସ୍ଥଳ । ତୃତୀୟରେ ଧାମେଶ୍ୱର ଓ ଗୌରାଙ୍ଗ ମହାପ୍ରଭୁଙ୍କର ଚରଣ ପାଦୁକା ଦର୍ଶନ କଲୁ । ଚତୁର୍ଥରେ ଗୌରାଙ୍ଗ ମହାପ୍ରଭୁଙ୍କର ଋଣମୁକ୍ତି ମନ୍ଦିର । ମନ୍ଦିର ଗୁଡ଼ିକ ପରିଷ୍କାର ପରିଚ୍ଛନ୍ନ ଓ ସବୁ ମନ୍ଦିରରେ ନାମ କୀର୍ତ୍ତନ ଚାଲିଥାଏ । ଆମ ରିକ୍ସାବାଲାଟି ଉତ୍ତମ ପ୍ରକୃତିର ବ୍ୟକ୍ତି ଥିଲେ । ସମସ୍ତଙ୍କ ଠାରୁ ଆଗରେ ଗଳି କନ୍ଦି ରାସ୍ତାରେ ଅତି ସାବଧାନରେ ରିକ୍ସା ଚଳାଇ ଗାଇଡ୍ ଭଳି ମନ୍ଦିର ବିଷୟରେ ସୂଚନା ଦେଇ ଆମର ସଂନ୍ଦେହ ଦୂର କରୁଥିଲେ । ପଞ୍ଚମରେ ପହଞ୍ଚିଲୁ ବୃକ୍ଷ ମୂଳରେ ଅବସ୍ଥାପିତ ପୋରମା କାଳୀ ମନ୍ଦିର ନିକଟରେ । ଗଳି କନ୍ଦିର ସହର ନବଦ୍ୱୀପ ଧାମ । ଅଣ ଓସାରିଆ ରାସ୍ତାରେ ମନ୍ଦିର ପାଖରେ ପ୍ରବଳ ଭିଡ଼ କିନ୍ତୁ ଶୃଙ୍ଖଳା ପରିଲକ୍ଷିତ ହେଉଥିଲା । ପୋରମା କାଳୀଙ୍କ ଫାଟକ ଫଳକରେ 'ବିଦଗ୍ଧା ଜନନୀ' ଲେଖାଥିବାର  ଦେଖିବାକୁ ପାଇଲୁ । ପୋରମା କାଳୀଙ୍କ ଦର୍ଶନ ପରେ ପହଞ୍ଚିଲୁ ସୁନାର ଗୌରାଙ୍ଗଙ୍କ  ନିକଟରେ । ଶେଷରେ ସମାଜ ବାଡ଼ି ଆଶ୍ରାମ । ସେଠାରେ ରାଧାକୃଷ୍ଣ, ନିତାଇ ଗୌର ଓ ସେହି ଆଶ୍ରମର ମହନ୍ତ ମାନଙ୍କର ମାର୍ବଲ ମୂର୍ତ୍ତି ଦର୍ଶନ ପରେ ଗଂଗାନଦୀ କୂଳରେ ପହଞ୍ଚିଲୁ । ଗଂଗାପାର ପରେ ବସାରେ ପହଞ୍ଚି ଚା'ପାନ ପରେ ଇସ୍କନ ମନ୍ଦିର ସଂାଧ ଆଳତୀ ଦର୍ଶନରେ ଉପସ୍ଥିତ ହେଲୁ । 'ଗଦା ଭବନ'ରେ ରାତ୍ରି ପ୍ରସାଦ ସେବନ କରି ବିଶ୍ରାମ ନେଲୁ ।

***ତା. ୨୪.୦୫.୨୦୧୧***

ପ୍ରାତଃ ନିତ୍ୟକର୍ମ ସମାପନ ପରେ ମନ୍ଦିର ମଙ୍ଗଳ ଆରତୀ ଦର୍ଶନ କଲୁ ।

ବୁଲାବୁଲି, କିଣାକିଣି କରି ହୋଟେଲ୍ ଫେରି ଲଗେଜ୍ ଧଡ଼ାଡ଼ିଲୁ । ଲଗେଜ୍ ସହ ପ୍ରସାଦ ସେବନର କାର୍ଯ୍ୟକ୍ରମ ପରେ ମାୟାପୁରୀରୁ ବିଦାୟ ନେଇ ନିର୍ଦ୍ଧାରିତ ବସ୍‌ରେ ଯାତ୍ରାରମ୍ଭ କଲୁ । ମାୟାପୁରୀଠାରୁ କଲିକତାର ଦୂରତା ୧୬୦କି.ମି । ପ୍ରଥମେ ନିକଟରେ ଥିବା ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଜନ୍ମସ୍ଥାନରେ ପହଞ୍ଚିଲୁ । ସେଠାରେ ମନ୍ଦିର ବନ୍ଦ ଥିଲା । ମାତ୍ର କିଛି ସମୟ ଅପେକ୍ଷା ପରେ ମନ୍ଦିର ଖୋଲା ହେଲା । ସେଠାରେ ରାଧାମାଧବ ଗୌର ହରି, ଗୌର ସୁନ୍ଦର, ଲକ୍ଷ୍ମୀ ପ୍ରିୟା, ବିଷ୍ଣୁ ପ୍ରିୟା, ପଞ୍ଚତତ୍ତ୍ୱ ଓ ଜଗନ୍ନାଥ, ଶିଶୁ ନିମାଇଁ ଓ ତାଙ୍କ ପିତାମାତା, କ୍ଷେତ୍ରପାଳ ଶିବ, ଗୌର ଗଦାଧର, ଲକ୍ଷ୍ମୀ ନୃସିଂହ ଦେବ ଓ ଗୁରୁ ପରମ୍ପରା ମନ୍ଦିର ଓ ମୂର୍ତ୍ତି ଦର୍ଶନ କଲୁ । ଭକ୍ତି ବିନୋଦ ଠାକୁରଙ୍କ ପୁଣ୍ୟ ସମାଧି ସ୍ଥଳ ଭଳି ଅନ୍ୟ କେତୋଟି ଦର୍ଶନୀୟ ସ୍ଥାନ ଭ୍ରମଣ କରି ପୁନଶ୍ଚ ଯାତ୍ରାରମ୍ଭ କଲୁ । ଦିବା ୨ଘଣ୍ଟା ସମୟରେ ଚା'ପାନ ପାଇଁ ରାସ୍ତାରେ ଗାଡ଼ି ଅଟକିଲା । ସଂଧ୍ୟା ୪ଟାରେ ପହଞ୍ଚିଲା ଦକ୍ଷିଣେଶ୍ୱର କାଳୀ ମନ୍ଦିର ନିକଟରେ । ଗତ ୨୦୦୮ ମସିହାରେ ଶାରଦୀୟ ଅବକାଶ ସମୟରେ ଜଗତ ଜନନୀ ମା'ଙ୍କ ଦର୍ଶନ କରିଥିଲୁ । ଦର୍ଶନ ପାଇଁ ଦୀର୍ଘ ସମୟ ଧାଡ଼ିରେ ଅପେକ୍ଷା କରିବା ବିଷୟରେ ଅବଗତ ହୋଇଥିଲୁ । ଧାଡ଼ିରେ ପହଞ୍ଚି ପ୍ରବଳ ଠେଲାପେଲା ଭିତରେ ମାତ୍ର କେତେ ସେକେଣ୍ଡ ପାଇଁ ପରମ ଆରାଧ୍ୟା ଦେବୀଙ୍କ ଦର୍ଶନ ଲାଭ କଲୁ । ମନ୍ଦିର ବାହାରକୁ ଆସି ମୁଣ୍ଡିଆ ମାରିବା ଅବସରରେ ଜଗଦ୍‌ଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ସ୍ତବ ସ୍ମରଣ କଲୁ । "କୁପୁତ୍ରୋ ଜାୟତେ କ୍ୱଚିଦପି କୁମାତା ନ ଭବତି"। ଦେବୀଙ୍କ ଦର୍ଶନ ପରେ ତରତର ହୋଇ ଲଞ୍ଚରେ ବେଲୁର ମଠରେ ପହଞ୍ଚିବା ପାଇଁ ପ୍ରସ୍ତୁତ ହେଲୁ । ସଂଧ୍ୟା ସମୟରେ ବେଲୁର ମଠରେ ଉପସ୍ଥିତ ହେବା ସମୟରେ ଆମ ଯାତ୍ରୀମାନେ କିଏ କେଉଁଆଡ଼େ ହୋଇଯାଇଥିଲେ ତଥାପି ଏକତ୍ର ହେବା ପାଇଁ କିଛି ସମସ୍ୟା ନ ଥିଲା । ସେ ଦିନ ସେହି ସମୟରେ ଆମ ସାଥୀ ଥିଲେ ଇଚ୍ଛାପୁରର ଶ୍ରୀ ପୂର୍ଣ୍ଣଚନ୍ଦ୍ର ପାତ୍ରୀ । ବେଲୁର ମଠର ବିରାଟ ପରିସର ସ୍ୱଳ୍ପ ସମୟ ମଧ୍ୟରେ ଭ୍ରମଣ କରି ରାମକୃଷ୍ଣ ମିଶନ୍ ବୁକ୍‌ଷ୍ଟଲ୍‌ରେ ପହଞ୍ଚିଲୁ । ଛୋଟ ବହି କେତୋଟି ଓ ରାମକୃଷ୍ଣ ପରମ ହଂସ ଓ ବିବେକାନନ୍ଦଙ୍କର କେତୋଟି ଫଟୋଚିତ୍ର କିଣିବା ସମୟରେ ଥାକ ଉପରେ ସଜା ଯାଇଥିବା ବହୁ ପ୍ରତୀକ୍ଷିତ " The Complete Work of Swami Vivekananda " ଗ୍ରନ୍ଥର ନଅଟି ଯାକ Volume ଉପରେ ନଜର ପଡ଼ିଲା । ରଙ୍କ କୁ ଧନ, ଅନ୍ଧ କୁ ଚକ୍ଷୁ ମିଳିଗଲା ଭଳି ଆମେ ପରମ ସନ୍ତୋଷ ଲାଭକଲୁ । ମାତ୍ର ୧୦ମିନିଟ ଭିତରେ ଟ.୧୨୦୦.୦୦ ବିନିମୟରେ ଗ୍ରନ୍ଥଟି କ୍ରୟ କରି ବିଲ୍ ନେଇ ନୌକା ନିକଟରେ ପହଞ୍ଚିଲୁ । ବସ୍‌ରେ କଲିକତାର ଗୋଟିଏ ବସ୍‌ଷ୍ଟାଣ୍ଡରେ ପହଞ୍ଚି ସଂଧ୍ୟ ଚା'ପାନ ଓ

ବହି ରଖିବା ପାଇଁ ପ୍ଲାଷ୍ଟିକ୍ ବ୍ୟାଗ୍ କିଣାକିଣି କଲୁ । ନିର୍ଦ୍ଧାରିତ ବସ୍‌ରେ ରାତ୍ରି ନଅଟାରେ ହାଓଡ଼ା ଷ୍ଟେସନରେ ପହଞ୍ଚିଲୁ । ରାତି ୧୧ଘ.୩୦ମି.ରେ ଆମ ସଂରକ୍ଷିତ ଭାସ୍କୋଡ଼ାଗାମା ଅମରାବତୀ ଏକ୍ସପ୍ରେସ୍‌ରେ ଓଡ଼ିଶା ଅଭିମୁଖେ ଯାତ୍ରାରମ୍ଭ କଲୁ । ଷ୍ଟେସନରେ ରାତ୍ରି ପ୍ରସାଦ ସେବନ କାର୍ଯ୍ୟକ୍ରମ ଶେଷ ହୋଇଯାଇଥିଲା । ତେଣୁ ଟ୍ରେନ୍‌ରେ ବିଶ୍ରାମ ନେବା ପାଇଁ ଆଶା କରିଥିଲୁ । କିନ୍ତୁ ଆମ ଟିକଟ ବ୍ରହ୍ମପୁର ପର୍ଯ୍ୟନ୍ତ ବର୍ଦ୍ଧିତ କରିବା ପାଇଁ ଇସ୍କନ ବାବାମାନଙ୍କ ପଛରେ ଦୌଡ଼ା ଦୌଡ଼ି କରିବାରେ ସମଗ୍ର ରାତିଟି ବିତିଯାଇଥିଲା । ଯହାହେଉ ହରେକୃଷ୍ଣଙ୍କର ଅପାର କରୁଣାରୁ ଓ ଇସ୍କନ ବାବାମାନଙ୍କର ସୁଦୟାରୁ ବଗି ବଦଳାଇବା ପରେ ଆମ ଟିକଟ ବର୍ଦ୍ଧିତ ହୋଇପାରିଥିଲା । ଭୁବନେଶ୍ୱର ଷ୍ଟେସନରେ ଇସ୍କନ ବାବାମାନଙ୍କୁ ଓ ଅନ୍ୟ ତୀର୍ଥ ସାଥୀ ମାନଙ୍କୁ ବିଦାୟ ମାଗି ପ୍ରଣାମ ଜଣାଇ ବ୍ରହ୍ମପୁର ଅଭିମୁଖେ ଯାତ୍ରା କଲୁ ।

**ତା. ୨୫.୦୫.୨୦୧୧**

ଆମେ ରହୁଥିବା ବମକୋଇ ଗ୍ରାମରେ ଠାକୁରାଣୀ ଯାତ୍ରା ୧୯.୦୫ ରୁ ଆରମ୍ଭ ହୋଇ ୨୬.୦୫ରେ ଶେଷ ହେବା ସ୍ଥିର ହୋଇଥିଲା । ତେଣୁ ଖରାଛୁଟି ହେଲେ ମଧ୍ୟ ମା'ଙ୍କ ଆଗମନରେ ବାସସ୍ଥାନ ଗ୍ରାମରୁ ଦୂରରେ ରହିବା ଠିକ୍ ମନେ କରୁ ନ ଥିଲୁ । ତେଣୁ ଷ୍ଟେସନ ନିକଟକୁ ଅଟୋ ଆଣିବା ପାଇଁ ଗାଁର ଅଟୋ ପିଲାଟିକୁ ଫୋନ୍‌ରେ ଜଣାଇଥିଲୁ । ଘରର ଚାବିକାଠି ବ୍ରହ୍ମପୁରରେ ନିତ୍ୟାନନ୍ଦଙ୍କ ଘରେ ରଖି ଯାଇଥିବାରୁ ସେଠାରେ ପହଞ୍ଚି ସ୍ନାନ ଓ ଭୋଜନ ଶେଷ କରି ଅପରାହ୍ନରେ ଗୋଟାଏ ସୁଦ୍ଧା ସ୍ୱ-ବାସଗୃହରେ ପହଞ୍ଚିଲୁ । ଥିଏଟର୍ ଷ୍ଟେଜ୍ ଓ ତୋରଣ ଯୋଗୁଁ ବାଡ଼ି ପଟ ଦେଇ ଘରେ ପହଞ୍ଚି ଧୂଳିଆ ପହଣ୍ଡରେ ଅସ୍ଥାୟୀ ମଣ୍ଡପରେ ଘର ସାମନାରେ ମା'ଙ୍କୁ ଅତି ନିକଟରୁ ଦର୍ଶନ କରି ସକୁଶଳେ ଫେରିଥିବା ଯୋଗୁଁ ପ୍ରାର୍ଥନା କଲୁ । ଡ଼ାକବାଜି ଯନ୍ତ୍ରର କୋଳାହଳ ଓ ବାରଣ୍ଡା ପାଖରେ ପ୍ରଦର୍ଶିତ ହେଉଥିବା 'ରାମାୟଣ' ଥିଏଟରର ଆତସବାଜି ଯୋଗୁଁ ବିଶ୍ରାମ ନେବା ସମ୍ଭବ ହୋଇ ପାରି ନଥିଲେ ମଧ୍ୟ ଆମେ ଯାତ୍ରାର ଶେଷ ଦିନ ସୁଦ୍ଧା ଗ୍ରାମର ଧାର୍ମିକ ତଥା ସାଂସ୍କୃତିକ କାର୍ଯ୍ୟକ୍ରମରେ ଉପସ୍ଥିତ ହୋଇପାରିଥିବାରୁ ନିଜକୁ ଧନ୍ୟ ମନେ କଲୁ କାରଣ ଆଗାମୀ ଦୁଇ ବର୍ଷ ପରେ ହେବାକୁ ଥିବା ଯାତ୍ରା ସମୟ ବେଳକୁ ମୋର ଚାକିରୀ କାର୍ଯ୍ୟକାଳ ଶେଷ ହୋଇସାରିଥିବ । ତେଣୁ ମମତାମୟୀ ମା'ଙ୍କ ଆଶୀର୍ବାଦ ଭିକ୍ଷାର ଆଶା ନେଇ ବିଶ୍ରାମ ନେଲୁ ।

କହିବା ବାହୁଲ୍ୟ ଯେ କିଏ କେତେ ପ୍ରକାର ତୀର୍ଥ ଯାତ୍ରାର ଆରାମ ଓ ସୁବିଧା ବିଷୟ ବର୍ଣ୍ଣନା କଲେ ମଧ୍ୟ ଆମ ପାଇଁ ଇସ୍କନ ଆୟୋଜିତ ତୀର୍ଥଯାତ୍ରା

ଆନନ୍ଦ ଓ ସୁବିଧା ଦାୟକ - ଏହା ମର୍ମେ ମର୍ମେ ଅନୁଭବ କରିଥିଲୁ । ସନ୍ଥ ତୁଳସୀ ଦାସଙ୍କ ଭାଷାରେ -

''ଏକ ଘଡ଼ି, ଆଧି ଘଡ଼ି,
ଆଧି ମେଁ ପୁନି ଆଧ,
ତୁଳସୀ ସଂଗତ ସାଧ କୀ
ହରେ କୋଟି ଅପରାଧ'' ।

ଆମ ଭଳି ପାପୀମାନଙ୍କର ଅପରାଧ ହରଣ ହେଉ କି ନ ହେଉ, ଆମ ପାଇଁ ସତ୍‌ସଙ୍ଗ ଲାଭର ଆଶୁଫଳ ହରେକୃଷ୍ଣଙ୍କ ଅପାର କରୁଣା ବୋଲି ମନକୁ ବୁଝାଇ ନେଇଚୁ । ଇସ୍କନ ବାବାମାନଙ୍କର ନିଃସ୍ୱାର୍ଥ ସେବା ଯୋଗୁଁ ଆମେ ଚିର ଋଣୀ ହୋଇ ରହିଲୁ ବୋଲି ବିଚାର କରୁଛୁ । ପୁଣି ନଭେମ୍ବର ମାସର ପଶ୍ଚିମ ଭାରତ ତୀର୍ଥଯାତ୍ରା ଅବସରରେ ସାଧୁ ସଙ୍ଗ ଲାଭର କାମନା କରି ହରେକୃଷ୍ଣ ଓ ଇସ୍କନ ବାବାମାନଙ୍କର କରୁଣା ଭିକ୍ଷା ପାଇଁ ଅଳି କରି ପରବର୍ତ୍ତୀ ଯାତ୍ରା ଅପେକ୍ଷାରେ ରହିଲୁ ।।

।। ହରେକୃଷ୍ଣ ।।



ଓଁ ଶ୍ରୀ ଶ୍ରୀ ଗୁରୁ ଗୌରାଙ୍ଗୌ ଜୟତଃ

# ଇସ୍କନ ଆୟୋଜିତ ପଶ୍ଚିମ ଭାରତ ତୀର୍ଥଯାତ୍ରା

# (ଯାତ୍ରାକାଳ - ତା. ୦୩.୧୧.୨୦୧୧ ଠାରୁ ୨୦.୧୧.୨୦୧୧)

# ସ୍ମୃତି ଓ ଅନୁଭୂତିରୁ ଦୁଇପଦ ।

**ପ୍ରାକ୍‌କଥନ :-**

ସୁବିଧାବାଦୀ ମନୁଷ୍ୟ ଥରେ ସୁବିଧା ପାଇଥିଲେ ସେହି ସୁବିଧା ଓ ସୁଯୋଗ ହାତଛଡ଼ା କରିବାକୁ ପଛାଇ ନଥାଏ । ଆମ ପକ୍ଷରେ ଏହାର ବ୍ୟତିକ୍ରମ ଘଟିଥାଆନ୍ତା କିପରି ? ଏଇ ପରିପ୍ରେକ୍ଷୀରେ ଇସ୍କନ ଆୟୋଜିତ ଉତ୍ତର, ଦକ୍ଷିଣ, ନେପାଳ ଓ ଉତ୍ତର-ପୂର୍ବ ଭାରତ ଯାତ୍ରା କଲାପରେ ପଶ୍ଚିମ ଭାରତ ତୀର୍ଥଯାତ୍ରା ପାଇଁ ମନେ ମନେ ସଂକଳ୍ପ ନେଇ ତା ୧୫.୦୭.୨୦୧୧ ଦିନ ଗୌରୀବାବୁଙ୍କ ମାଧ୍ୟମରେ ଏକ ହଜାର ଟଙ୍କା ଅଗ୍ରୀମ ଦେଇ ରାଧାମାଧବ ସ୍ୱାମୀଙ୍କୁ ପ୍ରଣାମ ଜଣାଇ ସ୍ଥାନ ସଂରକ୍ଷଣ କଲୁ । ପରେ ପୂଜା ଛୁଟି ଅବସରରେ ଚାକିରୀ କ୍ଷେତ୍ରରେ ଓ ପାରିବାରିକ କ୍ଷେତ୍ରରେ ଅନୁପସ୍ଥିତ ସମୟର ସୁବନ୍ଦୋବସ୍ତ ହୋଇପାରିବ ସମ୍ଭାବନାକୁ ଲକ୍ଷ୍ୟ ରଖି ତା. ୧୨.୧୦.୨୦୧୧ ରେ ସମସ୍ତ ଟଙ୍କା ପୈଠ କରି ଯାତ୍ରାରମ୍ଭର ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରି ରହିଲୁ । ଇତ୍ୟବସରରେ କାଳୀପୂଜା ଛୁଟିରେ ଘରକୁ ଆସିଥିବା ଆମ ସାନପୁଅ ବ୍ରହ୍ମପୁରଠାରୁ ଭୁବନେଶ୍ୱର ଯିବା ଟିକଟ ଏବଂ ଭୁବନେଶ୍ୱରରୁ ପୁରୀ ଓ ପୁରୀରୁ ବ୍ରହ୍ମପୁର ଫେରିବା ଟିକଟ ଇଣ୍ଟରନେଟ୍ ମାଧ୍ୟମରେ ସଂରକ୍ଷଣ କରି ଯାତ୍ରାଜନିତ କ୍ଳାନ୍ତିକୁ ଲାଘବ କରିଦେଇଥିଲା ।

***ଯାତ୍ରାରମ୍ଭ : ତା. ୦୨.୧୧.୨୦୧୧, ବୁଧବାର***

ତା. ୦୨.୧୧.୧୧ ବୁଧବାର ଦିନ ବମକୋଇ ଗ୍ରାମରୁ ଇଷ୍ଟଦେବୀ ଓ ପିତୃ ପୁରୁଷଙ୍କୁ ସ୍ମରଣ କରି ଅଟୋ ଯୋଗେ ସକାଳ ୯ ଘଣ୍ଟା ସମୟରେ ବ୍ରହ୍ମପୁର ଷ୍ଟେସନ ଅଭିମୁଖେ ଯାତ୍ରାରମ୍ଭ କଲୁ । ସେହିଦିନ ବିଶାଖା ଏକ୍ସପ୍ରେସ୍ ନିର୍ଦ୍ଧାରିତ ସମୟ ଅପେକ୍ଷା ବିଳମ୍ବରେ ପହଞ୍ଚିଥିଲା । କିନ୍ତୁ ନିତ୍ୟାନନ୍ଦ ବାବୁଙ୍କ ସାହାଯ୍ୟରେ ସୁବିଧାରେ ଗାଡ଼ି ଚଢ଼ିଲୁ । ଭୁବନେଶ୍ୱରରେ ଟ୍ରେନ୍‌ରୁ ଓହ୍ଲାଇଲା ବେଳକୁ ସାଢ଼େ ଚାରି ପାଖାପାଖି ହୋଇସାରିଥିଲା । ଆସନ୍ତାକାଲି ସକାଳ ୭ଟାରେ ଟ୍ରେନ ସମୟଥିବାରୁ ସିଧା ଷ୍ଟେସନ୍‌ରେ ପହଞ୍ଚିବା ପାଇଁ ଇସ୍କନ ତରଫରୁ ନିର୍ଦ୍ଦେଶ ମିଳିଥିଲା, ତେଣୁ ଇସ୍କନ ମନ୍ଦିରରେ ଦର୍ଶନ ସାରି ଗୌରଚନ୍ଦ୍ରଙ୍କ ଘରେ ପହଞ୍ଚିବା ବିଷୟ ଠିକ୍ କଲୁ । ସଂଧ୍ୟାରେ

ଦର୍ଶନ ସାରି ପରିଚିତ ଓ ଅପରିଚିତ କେତେକ ତୀର୍ଥଯାତ୍ରୀଙ୍କ ସହ ବାର୍ତ୍ତାଳାପ ପରେ କଳିଙ୍ଗ ବିହାରରେ (ଗୌରଚନ୍ଦ୍ରଙ୍କ) ବାସଭବନରେ ପହଞ୍ଚିଲୁ । କଥାବାର୍ତ୍ତା ଓ ଭୋଜନ ପରେ ବିଶ୍ରାମ ନେଲୁ ।

**ତା. ୦୩.୧୧.୨୦୧୧, ଗୁରୁବାର**

ସକାଳ ୫ଟାରେ ଘରୁ ବାହାରି ଷ୍ଟେସନ୍‌ରେ ପହଞ୍ଚିଲୁ । ଷ୍ଟେସନ୍‌ରେ ପ୍ରବେଶ ପରେ ଶୁଣିବାକୁ ପାଇଲୁ ଭୁବନେଶ୍ୱର-ନାସିକ ଲୋକମାନ୍ୟ ତିଳକ ଏକ୍ସପ୍ରେସ ବିଳମ୍ବରେ ଚାଲୁଅଛି । କିଛି ସମୟ ପରେ Display Board ରୁ ସୂଚନା ମିଳିଲା ଟ୍ରେନ୍ ଦିନ ୩ଟା ବେଳକୁ ଏଠାରେ ପହଞ୍ଚିବ । ତେଣୁ ପୂର୍ବ ତୀର୍ଥ ସାଥୀ ଆସ୍କାର ଶ୍ରୀ ଶରତଚନ୍ଦ୍ର ବିଷୋୟୀ ଓ ତାଙ୍କ ସହଧର୍ମିଣୀଙ୍କ ସହ ଇସ୍କନ ମନ୍ଦିରକୁ ଇସ୍କନ ବାବାଙ୍କଠାରୁ ନିର୍ଦ୍ଦେଶ ପାଇ ପ୍ରତ୍ୟାବର୍ତ୍ତନ କଲୁ । ଇସ୍କନ ମନ୍ଦିରରେ ଦର୍ଶନ ପରେ ପବିତ୍ର କାର୍ତ୍ତିକ ମାସର ଶୁଭ ଅବସରରେ ଶ୍ରୀ ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କ ଦର୍ଶନ ଇଚ୍ଛା ପୋଷଣ କରି ଆମେ ଦୁଇ ପରିବାର ଅଟୋ ଯୋଗେ ଯାତ୍ରାରମ୍ଭ କଲୁ । ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କ ଦର୍ଶନ ପରେ ଶ୍ରୀ ଅନନ୍ତ ବାସୁଦେବ ଓ ଶ୍ରୀରାମ ମନ୍ଦିର ଦର୍ଶନ ଶେଷକରି ଇସ୍କନ ମନ୍ଦିର ଫେରିଲୁ । ସେଠାରେ ପ୍ରସାଦ ସେବନ ପରେ ଷ୍ଟେସନ୍ ଅଭିମୁଖେ ଗତି କଲୁ । ସୂଚନାଯୋଗ୍ୟ ଯେ ଆମ ଗଳାରେ ଇସ୍କନ ପ୍ରଦତ୍ତ ବ୍ୟାଜ (Badge) ପଡ଼ିଗଲେ ଯାତ୍ରା ଚିନ୍ତାରୁ ଆମେ ନିବୃତ୍ତ ହେଉଥିଲୁ, କାରଣ ଆମର ଅଟଳ ବିଶ୍ୱାସ "ବାବା ଆମର, ଆମେ ବାବାଙ୍କର ।" ତେଣୁ ଶୀଘ୍ର/ବିଳମ୍ବ ପାଇଁ ଆମେ ବ୍ୟସ୍ତ ବିବ୍ରତ ନଥିଲୁ । ଅପରାହ୍ଣ ୪ଟା ସମୟରେ ଆମେ ଅପେକ୍ଷା କରିଥିବା ଯାନଟି ପହଞ୍ଚିଲା । ଏଇ ଯାତ୍ରାରେ ଆମ କ୍ରମିକ ନମ୍ବର ଥିଲା ୦୧ ଓ ୦୨ । ତେଣୁ ଟ୍ରେନ୍‌ରେ କିମ୍ବା ବିଶ୍ରାମସ୍ଥଳରେ କିଛି ସୁବିଧା ପାଇଲେ ଅଳ୍ପ କେତେ ଜଣ ଅସହିଷ୍ଣୁ ଯାତ୍ରୀଙ୍କର ସମାଲୋଚନାର ଶିକାର ହେବା ଭୟ ମଧ୍ୟ ରହିଥିଲା । ସେଦିନ ପ୍ରଥମ ସଂଧ୍ୟାରେ ସାଂଧ୍ୟ ଭଜନ, କୀର୍ତ୍ତନ ପରେ ରାତ୍ରି ପ୍ରସାଦ ସେବନ କଲୁ । ପ୍ରଥମ ଦିନର ପ୍ରଥମ ଟ୍ରେନ୍‌ରେ ଆମ ବଗି ନମ୍ବର S-୧ ଓ ସିଟ୍ ନମ୍ବର ୦୧ ଓ ୦୨ ଥିଲା । କେତେଜଣ ଯାତ୍ରୀଙ୍କର କାର୍ଯ୍ୟକ୍ରମ ତଥା ଦର୍ଶନରେ କିଛି ବାଧା ସୃଷ୍ଟି ହେବା ଆଶଙ୍କା ହେବାରୁ ଆୟୋଜକ ପଦ୍ମଧର ବାବା ଅଭୟବାଣୀ ଶୁଣାଇ ଘୋଷଣା କଲେ ଯେ କୌଣସି ପ୍ରକାରେ ୭ଟି ଜ୍ୟୋତିର୍ଲିଙ୍ଗ ଦର୍ଶନ ସୁଯୋଗ ଦିଆଯିବ । ବ୍ୟସ୍ତ ହେବା ଆବଶ୍ୟକ ନାହିଁ । "ଭଗବଦ୍ ଇଚ୍ଛା ବଳବତ୍ତର" ଭାବି ହରେକୃଷ୍ଣ ସ୍ମରଣ କରି ବିଶ୍ରାମ ନେଲୁ ।

## ତା. ୦୪.୧୧.୨୦୧୧, ଶୁକ୍ରବାର

ପ୍ରାତଃ ଭଜନ କୀର୍ତ୍ତନ ପରେ ମଧ୍ୟାହ୍ନ ପ୍ରସାଦ ସେବନ କଲୁ । ପାରିବାରିକ, ସାମାଜିକ, ରାଜନୈତିକ ଓ ଆଧ୍ୟାତ୍ମିକ ଆଲୋଚନାରେ ମଜ୍ଜି ରହି ଦିନ ଯାଇ ରାତି ପହଞ୍ଚି ସାରିଥିଲା । ଟ୍ରେନ୍‌ର ବିଳମ୍ବ ଯୋଗୁଁ ଏଠାରେ କାର୍ଯ୍ୟକ୍ରମର କିଛି ପରିବର୍ତ୍ତନ କରାଯାଇଥିଲା । ଗାଡ଼ି ମଧ୍ୟରେ ଘୋଷଣା କରାଯାଇଥିଲା ଯେ, ରାତ୍ରି ଘ. ୧୦ଟାରେ ଅତିଥିଶାଳାରୁ ଭୋଜନ ସାରି ଶ୍ରୀ ଭୀମାଶଙ୍କର ଅଭିମୁଖେ ବସ୍‌ରେ ଯାତ୍ରାରମ୍ଭ ହେବ । ଇଚ୍ଛୁକ ଯାତ୍ରୀମାନେ ଦର୍ଶନ ଉଦ୍ଦେଶ୍ୟରେ ଯାତ୍ରା କରିବେ ଓ ଅନ୍ୟ ଯାତ୍ରୀମାନେ ଗେଷ୍ଟ ହାଉସ୍‌ରେ ବିଶ୍ରାମ ନେବେ । ବସ୍‌ରେ ରାତ୍ରିକାଳୀନ ଯାତ୍ରା କଷ୍ଟଦାୟକ ମନେ ହେଉଥିଲେ ସୁଦ୍ଧା  ଜ୍ୟୋତିର୍ଲିଙ୍ଗ ଭୀମାଶଙ୍କରଙ୍କ ଦର୍ଶନର ତୀବ୍ର ଲାଳସା ମନ ମଧ୍ୟରେ ବସାବାନ୍ଧି ରହିଥିବାରୁ ବସ୍‌ରେ ଯିବାପାଇଁ ଠିକ୍ କଲୁ । ରାତ୍ରି ୯ ଘଣ୍ଟା ସମୟରେ 'ନାସିକ୍ ରୋଡ୍' ଷ୍ଟେସନ୍‌ରେ ଟ୍ରେନ୍ ଅଟକିଲା । ସଂରକ୍ଷିତ ବସ୍ ଯୋଗେ ନାସିକ ସହରର 'ରୋୟାଲ୍ ହେରିଟେଜ୍' ଅତିଥିଶାଳାରେ ପହଞ୍ଚିଲୁ । ସେଠାରେ ୧୦୫ ଓ ୧୦୬ ନମ୍ବର ରୁମ୍‌ରେ ୫ ଜଣ ପୁରୁଷ ଓ ୫ ଜଣ ମହିଳାଙ୍କ ନିତ୍ୟକର୍ମ ସମାପନ ପାଇଁ ବନ୍ଦୋବସ୍ତ  କରାଯାଇଥିଲା । ତରବରରେ ପ୍ରସାଦସେବନ କରି ଆସନ୍ତାକାଲି ପାଇଁ ଆବଶ୍ୟକ ହେଉଥିବା ଲଗେଜ୍ ସଜେଇ ବସ୍‌ରେ ବସିବା ଅପେକ୍ଷାରେ ରହିଲୁ ।  OTV ଚ୍ୟାନେଲ୍‌ରେ ପ୍ରସାରିତ ହେଉଥିବା 'The Great Political Circus ର ନିଖୁଣ କଳାକାର ସଂଗ୍ରାମ ଭାଇଙ୍କ ସଂକ୍ଷିପ୍ତୀକରଣ ବିବୃତି ଅନୁଯାୟୀ କହିବାକୁ ଗଲେ ଆମ ଯାତ୍ରୀମାନଙ୍କର ଚିରାଚରିତ ଅଭ୍ୟାସର ପୁନରାବୃତ୍ତି ଏଠାରେ ଘଟିଥିଲା । ଅର୍ଥାତ୍  B.B., ଏଇ  B.B. ର ମାନେ ପୁଣି କ'ଣ ? B.B. ମାନେ 'ବାହାରିବାରେ ବିଳମ୍ବ' । ଯାହାହେଉ ରାତି ବାରଟାରେ ତିନୋଟି ବସ୍ ଭୀମାଶଙ୍କର ଅଭିମୁଖେ ଯାତ୍ରାରମ୍ଭ କଲେ । ଦୁର୍ଭାଗ୍ୟବଶତଃ ରାସ୍ତାରେ ଗୋଟିଏ ବସ୍ ଭାଙ୍ଗିଯିବାରୁ ସେହି ଯାତ୍ରୀମାନେ ତା'ପରଦିନ ଦୁଇଟି ଛୋଟ ଗାଡ଼ିରେ ଯାତ୍ରା କରିଥିଲେ । ଅବଶିଷ୍ଟ ଦୁଇଟି ବସ୍ ଚାଲିଲା ନିଝୁମ ରାତିରେ ନିର୍ଜନ ବଣ ଜଙ୍ଗଲର ପକ୍କା ରାସ୍ତାରେ । ଅଭିଜ୍ଞ ଡ୍ରାଇଭରମାନଙ୍କର ଗାଡ଼ିଚାଳନା ଯାତ୍ରୀଗଣଙ୍କ ଆଖିରେ ନିଦ ଭରି ଦେଇଥିଲା ।

## ତା. ୦୫.୧୧.୨୦୧୧, ଶନିବାର

ସୂର୍ଯ୍ୟୋଦୟ ପୂର୍ବରୁ ରାସ୍ତାରେ ଭୀମା ନଦୀରେ ସ୍ନାନ ଶୌଚ ଶେଷ କରି ବସ୍ ଚାଲିଲା ଭୀମାଶଙ୍କର ଅଭିମୁଖେ । ବଣୁଆ ଫୁଲର ମହକ, ଘାଟି ରାସ୍ତାର ସୌନ୍ଦର୍ଯ୍ୟ, ପାର୍ଶ୍ୱରେ କଳାଗାଈ ମାନଙ୍କର ଆକର୍ଷକ ଚେହେରା ଦର୍ଶନରେ ରାତ୍ରି

ଅନିଦ୍ରା ଜନିତ କ୍ଲାନ୍ତି ଦୂର ହୋଇଯାଇଥିଲା । ଦିନ ୭ ଘ. ୩୦ ମିନିଟ୍‌ରେ ଭୀମାଶଙ୍କର ନିକଟରେ ଗାଡ଼ି ବିଶ୍ରାମ ନେଲା । ବସ୍‌ରୁ ଓହ୍ଲାଇବା ପରେ ପଦଯାତ୍ରା ଆରମ୍ଭ କରିବା ମାତ୍ରେ ଓସାରିଆ ଓସାରିଆ ଶତାଧିକ ପାହାଚର ଅବସ୍ଥିତି ଆମ ଭଳି ଶାରୀରିକ ଦୁର୍ବଳ ଯାତ୍ରୀମାନଙ୍କ ମନରେ ଅଜଣା ଆଶଙ୍କା ସୃଷ୍ଟି କରିଥିଲା, କିନ୍ତୁ ଦୁଇ ପାର୍ଶ୍ୱର ବିପଣୀ ସମୂହର କୋଳାହଳ, ଅସଂଖ୍ୟ ଯାତ୍ରୀଙ୍କର ଯିବା ଆସିବାର ଭିଡ଼ ଆମ ମାନସିକ ବଳକୁ ଦୃଢ଼ କରିଥିଲା ଆଗର ଚାଲିଥିବା ଯାତ୍ରୀମାନଙ୍କର ପଦାଙ୍କ ଅନୁସରଣ କରି ପହଞ୍ଚିଲୁ । କର୍ପୁରକାନ୍ତି ଧବଳାୟ, ଜଟାଧାରାୟ ଦେବ ଦେବ ମହାଦେବ ଜ୍ୟୋତିର୍ଲିଙ୍ଗ ଭୀମାଶଙ୍କର ଦର୍ଶନ ସମସ୍ତ କ୍ଲାନ୍ତି ଅପହରଣ କରିଦେଇଥିଲା । ଭୀମାଶଙ୍କରଙ୍କର ଛୋଟ ଶକ୍ତି, ଲିଙ୍ଗ ଉପରେ ରୂପାର ଆବରଣ ଦ୍ୱାରବନ୍ଧ ଇତ୍ୟାଦି ରୂପା ନିର୍ମିତ । ବିଜେ ବଖରାର ବାହାରୁ ଦର୍ଶନ କରିବାକୁ ହୁଏ । ସାମ୍ନାରେ ଗୋଟିଏ ମଣ୍ଡପ ପାର୍ଶ୍ୱରେ ମାତା ପାର୍ବତୀ, ବିନାୟକ ଓ କାର୍ତ୍ତିକେୟଙ୍କ ମନ୍ଦିର । ମଣ୍ଡପରେ କାର୍ତ୍ତିକ ସୋମବାର ଦିନ ବିଶେଷ ପୂଜାର୍ଚ୍ଚନା କରିବା ଉଦ୍ଦେଶ୍ୟରେ କେତେଜଣ ପୂଜକ ଟିକଟ ବିକ୍ରି କରୁଥିଲେ । ଆମେ ମଧ୍ୟ ସେହି କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବାକୁ ଇଚ୍ଛାକରି ନିଜର ନାମ, ଗୋତ୍ର ଓ ଠିକଣା ଲେଖି ପୂଜା ପାଇଁ ଟଙ୍କା ଜମା କଲୁ । ଫେରିବାର ଦେଢ଼ମାସ ପରେ ଡ଼ାକ ଯୋଗେ ବେଲପତ୍ର, ଚନ୍ଦନ ଓ ମିଶ୍ରି ପ୍ରସାଦ ପାଇ ଧନ୍ୟ ମନେକଲୁ । ନଭେମ୍ବର ମାସ ହୋଇଥିଲେ ସୁଦ୍ଧା ଫେରିବା ସମୟରେ ମୁହଁ ଖରା ଯାତ୍ରୀମାନଙ୍କୁ ବ୍ୟସ୍ତ ବିବ୍ରତ କରୁଥିଲା । କିଛି ଉପହାର ସାମଗ୍ରୀ କିଣିବା ସମୟରେ ଦୋକାନୀକୁ ପଚାରି ବୁଝିଲୁ ମୋଟ ପାହାଚ ସଂଖ୍ୟା ୨୦୨ । ଆମ ପକ୍ଷେ ଉପର ମହଲାକୁ ସିଡ଼ି ବାଡ଼ର ଆଶ୍ରୟ ନେଇ ଯିବାକୁ ପଡ଼ିଥାଏ, ଅଥଚ ଏଠାରେ ବିନା ଆଶ୍ରୟରେ ଏତେଗୁଡ଼ିଏ ପାହାଚ ଉଠିବା ଓ ଓହ୍ଲାଇବା ପାଇଁ ଶକ୍ତି ଦେଇଥିବା ସେହି ଶକ୍ତି ସ୍ୱରୂପା ମାତା ପାର୍ବତୀ ଓ ପିତା ମହାଦେବଙ୍କୁ କୋଟି କୋଟି ପ୍ରଣାମ ଜଣାଇ ଦିନ ୯ ଘ. ୩୦ ମିନିଟ୍‌ରେ ଫେରିବା ପାଇଁ ବସ୍ ଆରୋହଣ କଲୁ । ଘଞ୍ଚ ଜଙ୍ଗଲ ପରିବେଷ୍ଟିତ, କ୍ଷୁଦ୍ର ଜନବସତି ସୁଶୋଭିତ, ପ୍ରାକୃତିକ ଗୁମ୍ଫା ବିମଣ୍ଡିତ ଡ଼ାକିନୀ ଭୀମାଶଙ୍କରଙ୍କର ପ୍ରାକୃତିକ ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଆଲୋଚନା କରୁ କରୁ ଦିନ ୪ଟାରେ ବସ୍ ପହଞ୍ଚିଲା ନାସିକ ଅତିଥି ଶାଳାରେ । ପରିବେଷଣ କରିବା ପାଇଁ ଅପେକ୍ଷା କରିଥିବା ରୋଷେଇଆ ବାବୁ ମାନଙ୍କଠାରୁ ସୁସ୍ୱାଦୁ ପ୍ରସାଦ ଗ୍ରହଣ କରି ସେହି ବସ୍‌ଗୁଡ଼ିକରେ ପ୍ରସିଦ୍ଧ ଜ୍ୟୋତିର୍ଲିଙ୍ଗ ତ୍ରୟମ୍ବକେଶ୍ୱରଙ୍କ ଦର୍ଶନ ଉଦ୍ଦେଶ୍ୟରେ ବାହାରି ପଡିଲୁ । ୨୦୦୭ ମସିହାରେ ବଡ଼ପୁଅ ନାସିକ ନିକଟସ୍ଥ ଦେବଲାଲିରେ ମିଲଟାରୀ ଟ୍ରେନିଂରେ ଥିବା ସମୟରେ ତ୍ରୟମ୍ବକେଶ୍ୱରଙ୍କ ଦର୍ଶନ

ସୁଯୋଗ ପାଇଥିଲୁ । ପୂର୍ବ ସ୍ମୃତିକୁ ଉଜ୍ଜୀବିତ କରି ସଂଧ୍ୟା ସମୟର ଅସଂଖ୍ୟ ଭିଡ଼ ଭିତରେ ଠିଆ ହେଲୁ । ତ୍ରୟମ୍ବକେଶ୍ୱରଙ୍କର ବିରାଟ ଶକ୍ତି, ଲିଙ୍ଗ ପ୍ରାୟ ଅସ୍ପଷ୍ଟ । ବିଶାଳ ଆୟତନ ବିଶିଷ୍ଟ ବେଢ଼ା । ବେଢ଼ା ମଧ୍ୟରେ ପାର୍ବତୀ, ଗଣେଶ, କାର୍ତ୍ତିକେୟ, ନବଗ୍ରହ, ଶନିଦେବ ଇତ୍ୟାଦି ବିରାଜମାନ କରିଛନ୍ତି । ଭିତର ବେଢ଼ା ଓ ବାହାର ବେଢ଼ା ଦର୍ଶନ କରିବା ପରେ ଅନ୍ଧକାର ରାତିରେ ଏକାଭଳି ଦେଖାଯାଉଥିବା ଗଳିରେ ବାଟ ଭୁଲି ଏଣେ ତେଣେ ବୁଲିବା ସମୟରେ ଇସ୍କନ ପ୍ରଭୁ ବଳରାମ ବାବାଙ୍କ ସହାୟତାରେ ବସ୍ ନିକଟରେ ପହଞ୍ଚିଲୁ । ବସ୍ ଯୋଗେ ଅତିଥିଶାଳାରେ ପହଞ୍ଚିବା ବେଳକୁ ରାତି ନଅଟା ବାଜିଥାଏ । ରାତ୍ରି ପ୍ରସାଦ ସେବନ କରି ୫ ଜଣ ମହିଳା ଗୋଟିଏ ରୁମ୍‌ରେ ଓ ୫ ଜଣ ପୁରୁଷ ଗୋଟିଏ ରୁମ୍‌ରେ ବିଶ୍ରାମ ନେଲୁ । ଟ୍ରେନ୍ ବିଳମ୍ବ ଜନିତ ବ୍ୟାଘାତ ଯୋଗୁଁ କାର୍ଯ୍ୟସୂଚୀରେ ଆଂଶିକ ପରିବର୍ତ୍ତନ କରାଯାଇଥିଲେ ମଧ୍ୟ ଇସ୍କନ ବାବାମାନଙ୍କର ଅକ୍ଲାନ୍ତ ପରିଶ୍ରମ ଓ ଅକୁଣ୍ଠିତ ସାହାଯ୍ୟ ବଳରେ ଦୁଇଟି ଜ୍ୟୋତିର୍ଲିଙ୍ଗ ଦର୍ଶନ ଶେଷ କରିପାରିଥିବା ଯୋଗୁଁ ଇସ୍କନ ବାବାମାନଙ୍କୁ ଓ ହରେକୃଷ୍ଣ ପ୍ରଭୁଙ୍କୁ ଧନ୍ୟବାଦ ଜଣାଇ ସୁଖ ନିଦ୍ରାରେ ହଜିଗଲୁ ।

### *ତା. ୦୬.୧୧.୨୦୧୧, ରବିବାର-ବଡ଼ ଏକାଦଶୀ*

ସକାଳ ୭ଘଣ୍ଟା ସମୟରେ ନାସିକ ଠାରୁ ବାହାରି ଶ୍ରୀ ଘୃଷ୍ଣେଶ୍ୱର ଜ୍ୟୋତିର୍ଲିଙ୍ଗ ଦର୍ଶନ ଉଦ୍ଦେଶ୍ୟରେ ଯାତ୍ରାରମ୍ଭ ହେଲା । ସକାଳ ୮ଘଣ୍ଟା ସମୟରେ 'ବିଞ୍ଚୁର' ନାମକ ସ୍ଥାନରେ ଚା'ପାନ କାର୍ଯ୍ୟକ୍ରମ ଅଧଘଣ୍ଟାଏ ପର୍ଯ୍ୟନ୍ତ ଚାଲୁ ରହିଲା । ଦିନ ୧୧ଟାରେ ଶ୍ରୀ ଘୃଷ୍ଣେଶ୍ୱର ପୀଠରେ ବସ୍ ଅଟକିଲା । ରାସ୍ତାରେ ଗଲାବେଳେ ଦୌଲତାବାଦର ପ୍ରସିଦ୍ଧ 'ପୁରାନା କିଲ୍ଲା' ଓ ବିରାଟ ଏକ ଗଡ଼ଖାଇ ଦୃଷ୍ଟିଗୋଚର ହେଲା । ଶ୍ରୀଘୃଷ୍ଣେଶ୍ୱରଙ୍କ ପୀଠରେ ରବିବାର ଯୋଗୁଁ ଭିଡ଼ ଜମିଥିଲା । ରାସ୍ତାରୁ କେତୋଟି ଛୋଟ ବଡ଼ ପାହାଚ ଅତିକ୍ରମ କଲାପରେ ଦୋକାନ ବଜାର, ତା'ପରେ ମନ୍ଦିର, ମନ୍ଦିର ମଧ୍ୟରେ ବିରାଟ ଶକ୍ତି ଓ ଲିଙ୍ଗ ରୂପରେ ଶ୍ରୀଘୃଷ୍ଣେଶ୍ୱର ବିଦ୍ୟମାନ । ସହଜ ଓ ସୁବିଧାରେ କିଛି ସମୟ ଦର୍ଶନ କରି ଫେରିବା ବାଟରେ ପାର୍ଶ୍ୱରେ ଏକ ବିରାଟ ପୋଖରୀ ଦେଖିଲୁ । ସେହି ପୋଖରୀ ଭିତରେ କୋଟିଏ ଶିବ ଲିଙ୍ଗ ନିମଗ୍ନ ହୋଇ ରହିଥିବା ବିଷୟ ପୂଜକଙ୍କଠାରୁ ଶୁଣିବାକୁ ପାଇଲୁ । ଶ୍ରୀ ଶ୍ରୀଘୃଷ୍ଣେଶ୍ୱରଙ୍କ ଦର୍ଶନ, ବେଢ଼ା ପରିକ୍ରମା ପରେ ପାର୍ଶ୍ୱରେ ଏକ ବିରାଟ ନିବୁଜ ଗମ୍ବୁଜ ଦୃଷ୍ଟିଗୋଚର ହେଲା । ଧାର୍ମିକ ପୀଠର ଅତ୍ର, ତତ୍ର, ଯତ୍ର, ସର୍ବତ୍ର ଦେବତା ବିଦ୍ୟମାନ ବୋଲି ଅଟଳ ବିଶ୍ୱାସ ଥିବାରୁ ସ୍ଥାନଟିର ପରିଚୟ ନ ପାଇ ମଧ୍ୟ ପ୍ରଣାମ ଜଣାଇଲୁ ସିନା

ମନ ମଧ୍ୟରେ ସନ୍ଦେହ ବସା ବାନ୍ଧିରହିଥାଏ । ସମସ୍ତ ଯାତ୍ରୀ ଆଗରେ ଆଗରେ ଚାଲିଯାଇଥିବାରୁ କୌଣସି ସହୃଦୟ ବ୍ୟକ୍ତିଙ୍କ ଠାରୁ ପଚାରି ବୁଝିବା ପାଇଁ ଆମ ପାଖରେ ସମୟ ନ ଥାଏ । ପରେ ବସ୍‌ରେ ଆମ ପୂର୍ବ ପରିଚିତ ତୀର୍ଥ ସାଥୀ ବ୍ରହ୍ମପୁରର ଶାସ୍ତ୍ରୀନଗର ନିବାସୀ ଅବସରପ୍ରାପ୍ତ ହାଇସ୍କୁଲ ଶିକ୍ଷକ ଶ୍ରୀ କୁମୁନ୍ଦ ରଂଜନ ତ୍ରିପାଠୀ ଆମ ସନ୍ଦେହ ମୋଚନ କରି କହିଲେ ଯେ ସେହି ନିବୁଜ ଗମ୍ବୁଜାକୃତି ପ୍ରସ୍ତର ନିର୍ମିତ କଳାକୃତି ମରାଠା ଛତ୍ରପତି ଶିବାଜୀଙ୍କର ମହାନ୍ ଗୁରୁ ରାମଦାସଙ୍କର ସମାଧି ପୀଠ । ନ ଜାଣି ଥରେ ପ୍ରଣାମ କରିଥିଲୁ, ଜାଣିଲା ପରେ ଦୂରରୁ ପୁଣି ଥରେ ପ୍ରଣାମ ଜଣାଇଲୁ । ଦର୍ଶନ ପରେ ଏକାଦଶୀ ପ୍ରସାଦ ସେବନ ପାଇଁ ନିକଟସ୍ଥ ଏକ ଧର୍ମଶାଳାରେ ଏକତ୍ରିତ ହେଲୁ । ଆମ ଭଳି କେତେ ତୀର୍ଥଯାତ୍ରୀଙ୍କର ବାରଣ ସତ୍ତ୍ୱେ ଫଳାହାର ପାଇଁ ବିଭିନ୍ନ ସାମଗ୍ରୀ ସଂଗ୍ରହ ପାଇଁ ଇସ୍କନ ବାବାମାନେ ଖୁବ୍ ତତ୍ପର ହେଲେ, ସୁସ୍ୱାଦୁ ପ୍ରସାଦ ପ୍ରସ୍ତୁତ କରିବାରେ ଏକଘଣ୍ଟା ସମୟ ବିତିଗଲା । ପ୍ରସାଦ ସେବନ ପରେ ଶ୍ରୀ ଘୃଷ୍ଣେଶ୍ୱର ଜ୍ୟୋତିର୍ଲିଙ୍ଗଙ୍କୁ ପ୍ରଣାମ ଜଣାଇ ଦିନ ୧ଘ.୩୦ମି.ରେ 'ଶନିଶିଙ୍ଗ୍ନାପୁର' ଉଦ୍ଦେଶ୍ୟରେ ବସ୍ ଚାଲିଲା । ବଣଜଙ୍ଗଲ ଘେରା ରାସ୍ତାରେ ଗଲାବେଳେ ଅଳ୍ପ ରାସ୍ତା ଅତିକ୍ରମ କଲାପରେ ପାର୍ଶ୍ୱରେ ବିଶ୍ୱବିଖ୍ୟାତ 'ଏଲୋରା ଗୁମ୍ଫା' ଦୃଷ୍ଟିଗୋଚର ହେଲା । ଅଧିକାଂଶ ଯାତ୍ରୀଙ୍କର କାରୁକାର୍ଯ୍ୟ ବିମଣ୍ଡିତ ଏଲୋରା ଗୁମ୍ଫା ଦର୍ଶନର ପ୍ରବଳ ଇଚ୍ଛା ରହିଥିଲା । ଶନିଶ୍ଚର ଦେବଙ୍କ ଦର୍ଶନ ଓ ଶିରିଡ଼ି ସାଇବାବାଙ୍କର ଦର୍ଶନ ଆଉ ଦୁଇଟି କାର୍ଯ୍ୟକ୍ରମ ଥିଲା ତେଣୁ ବାଧ ହୋଇ ଏଲୋରା ଗୁମ୍ଫା ଭିତରେ ପ୍ରବେଶ କାର୍ଯ୍ୟକ୍ରମକୁ ବାତିଲ୍ କରିବାକୁ ପଡ଼ିଲା । ଏଠାରୁ ଅଜନ୍ତାର ଦୂରତା ୧୬୦ କି.ମି ତେଣୁ ଉଭୟ ଅଜନ୍ତା ଓ ଏଲୋରା ଦର୍ଶନର ସୁଯୋଗ ଆମ ଭାଗ୍ୟରେ ନଥିଲା । ବସ୍ ଭିତରେ ବସି ଆଖି ଦେଖି ପାରୁଥିବା ଭଳି ଘଞ୍ଚ ଜଙ୍ଗଲ ସ୍ଥାନେ ସ୍ଥାନେ ଗୁମ୍ଫା ସାଇଟ୍ ସିନ୍ ଦର୍ଶନରେ ମନ ତୃପ୍ତ କରିବାକୁ ପଡ଼ିଥିଲା । ବସ୍ ଭିତରର କେତେ ଜଣ ଯାତ୍ରୀଙ୍କର କଥାବାର୍ତ୍ତାରୁ ଜଣାଯାଉଥିଲା ଆମ ଓଡ଼ିଶାର ଖଣ୍ଡଗିରି ଭଳି ନିବିଡ଼ ଜଙ୍ଗଲ ମଧ୍ୟରେ ଉଚ୍ଚକୋଟୀର କଳା କାରିଗରୀ ଶୋଭିତ ଅନେକ ଗୁମ୍ଫା ସେଠାରେ ରହିଛି । ପୂର୍ବରୁ ଦେଖିଥିବା ଯାତ୍ରୀଙ୍କର ମୁହଁରୁ ଓ ଇତିହାସ ବହିରୁ ଯାହା ଶୁଣିଲୁ ଓ ଜାଣିଥିଲୁ ସେ ସବୁ ଆଲୋଚନା କରୁ କରୁ ସଂଧ୍ୟା ୪ଘ.୩୦ମି.ରେ ବସ୍ ଅଟକିଲା ଶନିଶିଙ୍ଗ୍ନାପୁରରେ ଶୀତ ଦିନ ହୋଇଥିବାରୁ ଶୀଘ୍ର ଅନ୍ଧକାର ଘୋଟିବାର ଭୟ ଥିଲା । ତେଣୁ ତରବର ହୋଇ ଶନିଦେବଙ୍କ ଦର୍ଶନ ଉଦ୍ଦେଶ୍ୟରେ ଧାଡ଼ିରେ ଠିଆ ହେଲୁ । ରବିବାର ଯୋଗୁଁ ସେଦିନ ସେଠାରେ ପ୍ରବଳ ଭିଡ଼ ହୋଇଥିଲା । ଲମ୍ବାଧାଡ଼ି ଅତିକ୍ରମ କଲାପରେ ଯାହା ଦର୍ଶନ କଲୁ ସେଥିରେ ନୟନ ମନ ତୃପ୍ତ ହେଲା ଭଳି

ଜଣାଗଲା । ଖୋଲା ଆକାଶ ତଳେ ବିରାଟ କଳାମୁଗୁନି ପ୍ରସ୍ତର ଖଣ୍ଡ ସ୍ୱରୂପରେ ଶନିଶ୍ଚର ଦେବ ବିରାଜିତ । ମଥା ଉପରେ ଅନବରତ ତେଲ ଅଭିଷେକର ବ୍ୟବସ୍ଥା ପାଇପ ଲାଇନ୍ ସଂଯୋଗରେ କରାଯାଇଛି । ସମ୍ମୁଖରେ ଏକ ମଣ୍ଡପ କାନ୍ଥରେ ଅନ୍ୟ ଦେବ ଦେବୀ ପୂଜିତ ହେଉଛନ୍ତି । ମାର୍ବଲ ପ୍ରସ୍ତର ଚଟାଣଟି ତେଲାକ୍ତ କିନ୍ତୁ ଦର୍ଶନ ସମୟ ରହଣି ଭିତରେ ପ୍ରବଳ ଭିଡ଼ରେ କାହା ଗୋଡ଼ ଖସିବାର ଦୃଶ୍ୟ ଦେଖିବାକୁ ମିଳି ନ ଥିଲା । ଏହା କେବଳ ଶନିଦେବଙ୍କ ମହିମା ବୋଲି ମନରେ ସ୍ଥିର କଲୁ । ଅଧିକ କୃପା ଲାଭ କରିବାର ଇଚ୍ଛା ଆମ ଭିତରୁ କେତେଜଣ ଯାତ୍ରୀଙ୍କର ମନରେ ବସା ବାନ୍ଧି ରହିଥିବାରୁ ସ୍ଥିରୀକୃତ କାର୍ଯ୍ୟକ୍ରମରେ ସେହିମାନେ ସର୍ବଦା ବ୍ୟାଘାତ ସୃଷ୍ଟି କରୁଥାଆନ୍ତି । ତେଣୁ ଆମକୁ ପ୍ରାୟ ଅଧଘଣ୍ଟାଏ ବସ୍ ଭିତରେ ଅପେକ୍ଷା କରିବାକୁ ପଡ଼ିଲା । ସେହି ସମୟ ମଧ୍ୟରେ ଆମ ଆଖି ପାଇବାଯାଏ ଦେଖାଯାଇଥିବା କେତୋଟି ଅସ୍ଥାୟୀ ଝୁମ୍ପୁଡ଼ି ଘରଠାରୁ ଆରମ୍ଭ କରି ବିରାଟ ବିରାଟ ଗୋଦାମ ଓ ମୂଲ୍ୟବାନ ସାମଗ୍ରୀ ବିକ୍ରି ହେଉଥିବା ଦୋକାନକୁ ଲକ୍ଷ୍ୟ କଲୁ - ସତରେ ସେଠାରେ କବାଟ ନାହିଁ । ଅତ୍ୟାଧୁନିକ ଯୁଗର ଏହି ବିରଳ ଦୃଶ୍ୟ ଦର୍ଶନରେ ସୂର୍ଯ୍ୟପୁତ୍ର ଶନିଦେବଙ୍କ ନିକଟରେ ଆଭୂମ ପ୍ରଣାମ ଜଣାଇଲୁ । ସଂଧ୍ୟା ୬ଟାରେ ଶିରିଡ଼ି ଧାମ ଅଭିମୁଖେ ଯାତ୍ରାରମ୍ଭ ହେଲା, କଥାବାର୍ତ୍ତା, ଆଳାପ ଆଲୋଚନା ମଧ୍ୟରେ ଶିରିଡ଼ି ସାଇବାବାଙ୍କର ଦର୍ଶନର ପ୍ରବଳ ଆକାଂକ୍ଷା ନେଇ ଗତି କରୁଥିବା ବସ୍‌ଟି ହଠାତ୍ ଅଟକିଗଲା ରାତି ୭ଘଣ୍ଟା ସମୟରେ 'ରାହତା' ନିକଟରେ । ଆଗ ଚକ ଫାଟିଯିବା ଯୋଗୁଁ, ସେଠାରେ ଅବସ୍ଥିତ 'Dr. Kanada Hospital' ନାମକ ଏକ ଘରୋଇ ହସ୍‌ପିଟାଲର କର୍ମଚାରୀ ଗଣ ସାହାଯ୍ୟ ପାଇଁ ପ୍ରସ୍ତୁତ ହୋଇଥିଲେ । କିନ୍ତୁ ଆମର କାହାର କିଛି ଅସୁବିଧା ହୋଇ ନ ଥିଲା । ସେହି ଚକଟି ମରାମତି ହେଲେ ଗାଡ଼ି ଚାଲିବ ବୋଲି ଡ୍ରାଇଭର୍ ଜଣାଇଦେଲେ । ତେଣୁ ସେ ପରାମର୍ଶ ଦେଲେ ଅଟୋରେ ଯାଇ ଦର୍ଶନ କରି ଫେରିଆସିବା ପାଇଁ । ବସ୍‌ର ଦୁର୍ଦ୍ଦଶା ଦେଖି କେତେଗୁଡ଼ିଏ ଅଟୋ ସେହି ସ୍ଥାନରେ ଅଟକିଲେ । କାଳ ବିଳମ୍ବ ନ କରି ସାତ ଆଠ ଜଣ ଲେଖାଁଏ ଅଟୋରେ ଚଢ଼ିଲୁ । ନାସିକ ରୋଡ଼ ଷ୍ଟେସନରେ ଆମ ଟ୍ରେନ୍ ସମୟ ଥିଲା ୧୧ଘ.୨୫ମି. । ଦର୍ଶନ ପରେ ପାଖାପାଖି ୬୦କି.ମି ରାସ୍ତା ଯିବାକୁ ହେବ । ତେଣୁ ଦଳ ଦଳ ହୋଇ ଅଟୋ ଭିତରେ ପଶିଗଲୁ ଇସ୍କନ ଯାତ୍ରୀ ବୋଲି ପରିଚୟ ନେଇ ପରେ ଅଟୋ ଭିତରେ ପରସ୍ପରକୁ ଜାଣିଲୁ । ରବିବାର ଯୋଗୁଁ ପ୍ରବଳ ଭିଡ଼ର ସମ୍ଭାବନା ବିଷୟ ଅଟୋ ଡ୍ରାଇଭରଙ୍କ ଠାରୁ ଶୁଣିଲୁ । ଅଟୋ ଭିତରେ ଜଣେ ଯାତ୍ରୀ ଆମକୁ ସାନ୍ତ୍ୱନା ବାଣୀ ଶୁଣାଉଥାନ୍ତି । ସେ କହିଲେ - "ମୁଁ ଗତ ବର୍ଷ ଏହି ସ୍ଥାନକୁ ଆସିଥିଲି, ପ୍ରବଳ ଭିଡ଼ ସମୟରେ

କେଉଁ ରାସ୍ତା ଦେଇଗଲେ ଶୀଘ୍ର ଦର୍ଶନ ମିଳିବ, ମୁଁ ଜାଣିଛି, ଆପଣମାନେ ବ୍ୟସ୍ତ ହୁଅନ୍ତୁ ନାହିଁ ''। ପରିଚୟ ମାଗିବାରୁ ଜଣାଗଲା - ସେ ଅବସର ପ୍ରାପ୍ତ ଖୋର୍ଦ୍ଧା ଜିଲ୍ଲା କ୍ରୀଡ଼ା ନିର୍ଦ୍ଦେଶକ, ଶୁଭନାମ ସୁଶ୍ରୀ ଦୀପ୍ତି ଦାଶ । ବୃତ୍ତି ସହ ପ୍ରବୃତ୍ତିର ମଧ୍ୟ ଢ଼େର ସାମଞ୍ଜସ୍ୟ ରହିଛି ତାଙ୍କ ପାଖରେ । ସାମାଜିକ ସେବା ପାଇଁ ସଦା ପ୍ରସ୍ତୁତ ରହିଲା ଭଳି ଜଣାପଡୁଥାନ୍ତି । ଅଟୋକୁ ମନ୍ଦିର ପାଖକୁ ନେଇ ଯିବା ପାଇଁ ପ୍ରଥମେ ନିର୍ଦ୍ଦେଶ ଦେଲେ ତା'ପରେ ଅଟୋରୁ ଓହ୍ଲାଇ ଅତି ସଂକ୍ଷିପ୍ତ ରାସ୍ତାରେ ଅତି ଶୀଘ୍ର ବାବାଙ୍କ ସମ୍ମୁଖରେ ପହଞ୍ଚାଇ ଦେଲେ । ସମ୍ମୁଖସ୍ଥ ଏକ ମଣ୍ଡପ ଉପରୁ ବାବାଙ୍କର ଶ୍ୱେତ ମାର୍ବଲ ପ୍ରସ୍ତରର କମନୀୟ ମୂର୍ତ୍ତି ଆମ ଚକ୍ଷୁ ସାମନାରେ ଦେଖି ମଧ୍ୟ ପ୍ରତ୍ୟୟ ଜନ୍ମିଲା ନାହିଁ । କାରଣ ଆମେ ମନ୍ଦିର ଭିତରେ ପ୍ରବେଶ କରିବା ପୂର୍ବରୁ ଛାତ ଉପରେ ଯେଉଁ ଲମ୍ବା ଧାଡ଼ି ଦେଖିଥିଲୁ ସେହି ଧାଡ଼ିରେ ଆସିଲେ ଦର୍ଶନ ଅତି କମ୍‌ରେ ଘଣ୍ଟାଏ କିମ୍ବା ଦେଢ଼ ଘଣ୍ଟା ପରେ ସମ୍ଭବ ହୋଇପାରିବ, ସେହି ଧାଡ଼ିରେ ଆମେ ଆମର କେତେଜଣ ତୀର୍ଥଯାତ୍ରୀ ଠିଆହେବା ଦେଖିଲୁ ପରେ ଜାଣିଲୁ ଅଧଘଣ୍ଟାଏ ଠିଆ ହେବା ପରେ ଟ୍ରେନ୍ ସମୟକୁ ମନେ ପକାଇ ସେମାନେ ବିନା ଦର୍ଶନରେ ନିରାଶ ହୋଇ ଫେରି ଥିଲେ । ଏହିସବୁ ପ୍ରତିକୂଳ ପରିସ୍ଥିତିରେ ଆମେ ସ୍ୱଚ୍ଛନ୍ଦରେ ଦର୍ଶନ ପାଇବା ଆମର ପରମ ସୌଭାଗ୍ୟ ଓ ବାବାଙ୍କ କରୁଣା ବୋଲି ଭାବିନେଲୁ । ମନଭରି ସାଇବାବାଙ୍କୁ ଦର୍ଶନ କଲୁ । ପାର୍ଶ୍ୱରେ ବିଜେ ପ୍ରତିମା ନଗର ପରିକ୍ରମାରେ ଯିବା ପାଇଁ ପ୍ରସ୍ତୁତ ହେଉଥିବା ସୁନ୍ଦର ଦୃଶ୍ୟ ଅବଲୋକନ କଲୁ । ପରମ ସନ୍ତୋଷରେ 'ସବ୍‌କା ମାଲିକ ଏକ', ସାଇବାବାଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇ ମନ୍ଦିରରୁ ବିଦାୟ ନେଲୁ । ଆମ ପାଇଁ ଦେବଦୂତ ସାଜି ଆସିଥିବା ସୁଶ୍ରୀ ଦୀପ୍ତି ଦାଶ ମହୋଦୟାଙ୍କର ସୁସ୍ଥ ନିରାମୟ ଜୀବନ କାମନା କରି ଅଟୋ ପାଖରେ ପହଞ୍ଚିଲୁ । ବସ୍ ଛାଡ଼ିଲା ବେଳକୁ ରାତି ୯ଘଣ୍ଟା ୩୦ମିନିଟ୍ । ବସ୍‌ଟିର ଗତି ମଧ୍ୟ ଶିଥିଳ ଜଣାପଡୁଥିଲା ତେଣୁ ସମସ୍ତ ଯାତ୍ରୀ ମଧ୍ୟ ବ୍ୟସ୍ତ ବିବ୍ରତ ଜଣାପଡୁଥାନ୍ତି । କେହି କେହି ଆଶାବାଦୀ ଯାତ୍ରୀ କହୁଥାଆନ୍ତି ଏତେ ବାଧା ବିଘ୍ନ ସତ୍ତ୍ୱେ ଯେଉଁ ବାବା ଆମ ପାଇଁ ଏତେ ସୁବିଧା କରିଦେଲେ ସେହି ସାଇରାମ, ସାଇ ଶ୍ୟାମ ବାବା ଏ ବିପତ୍ତିରୁ ମଧ୍ୟ ରକ୍ଷା କରିବେ । ସାଇ ଭଗବାନଙ୍କ ଅପାର କରୁଣାରୁ ୧୧ଘ.୨୦ମି.ରେ ଷ୍ଟେସନରୁ ଖଣ୍ଡେ ଦୂରରେ ବସ୍ ଅଟକିଲା ଡ୍ରାଇଭର୍ ଷ୍ଟେସନରେ ପହଞ୍ଚିବାର ସଂକ୍ଷିପ୍ତ ରାସ୍ତାଟି ବୁଝାଇ ଦେଲେ । ପ୍ରାଣ ବିକଳରେ ଅମାପ ଉତ୍ସାହରେ ସମସ୍ତ ଶକ୍ତି ସଂଗ୍ରହ କରି ବିଭୁ ସ୍ମରଣ ପୂର୍ବକ କ୍ଳାନ୍ତ ଯାତ୍ରୀଗଣ ଠିକ୍ ସମୟରେ ଷ୍ଟେସନରେ ପହଞ୍ଚିଲୁ । ସୂଚନା ଫଳକ (Display Board) ଦେଖିଲା ବେଳକୁ ଗାଡ଼ି ପନ୍ଦର ମିନିଟ୍‌ରେ ପହଞ୍ଚିବ ବୋଲି ଜଣାପଡ଼ିଲା । ପ୍ରବଳ କ୍ଳାନ୍ତି ପରେ

ଦୀର୍ଘଶ୍ୱାସ ନେଇ କରୁଣା ନିଧାନ ସାଇ ଭଗବାନଙ୍କୁ ପ୍ରଣାମ ଜଣାଇ ଟ୍ରେନ୍ ଅପେକ୍ଷାରେ ରହିଲୁ । ଟ୍ରେନ୍‌ରେ ଚଢ଼ିଲାପରେ ଜାଣିଲୁ ଆମର 'ବଳଭଦ୍ର' ବସ୍‌ଟି କିଲୋମିଟର ଟି ଦୂରରେ ଭାଙ୍ଗିଥିଲା ଏବଂ ଯେନ କେନ ଉପାୟରେ ସମସ୍ତ ଯାତ୍ରୀ ଟ୍ରେନ୍ ଛାଡ଼ିବା ବେଳକୁ ଷ୍ଟେସନରେ ଉପସ୍ଥିତ ହୋଇପାରିଥିଲେ । ସେଦିନ ଟ୍ରେନ୍‌ର S-5 ବଗିର ୪୧ ଓ ୪୨ ନମ୍ବର ସିଟ୍‌ରେ ଆମେ ବିଶ୍ରାମ ନେଲୁ । ଅଧଘଣ୍ଟାଏ ପରେ ଏକାଦଶୀ ପ୍ରସାଦ ଯାତ୍ରୀମାନଙ୍କୁ ନିଦରୁ ଉଠାଇ ପରିବେଷଣ କରାଗଲା । ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସମସ୍ତ ଯାତ୍ରୀଙ୍କୁ ସନ୍ତୁଷ୍ଟ କରିପାରୁଥିବା ଇସ୍କନ ବାବାମାନଙ୍କୁ ଓ ସାଇବାବାଙ୍କୁ ପ୍ରଣାମ ଜଣାଇ ବିଶ୍ରାମ ନେଲୁ ।

### *ତା.୦୭.୧୧.୨୦୧୧, ସୋମବାର*

ସକାଳ ୫ ଘଣ୍ଟା ୫ ମିନିଟ୍‌ରେ ଖଣ୍ଡଓ୍ୱା ଷ୍ଟେସନରେ ଟ୍ରେନ୍ ପହଞ୍ଚିଲା । ଷ୍ଟେସନରୁ ସଂରକ୍ଷିତ ବସ୍ ଯୋଗେ ଏକ ଧର୍ମଶାଳାରେ ପହଞ୍ଚିଲୁ । ସେଠାରେ ସ୍ନାନ ଶୌଚାଦି ନିତ୍ୟକର୍ମ ଶେଷ କରିବା ପାଇଁ ପୁରୁଷଙ୍କ ପାଇଁ ୧୦ଟି ଓ ମହିଳାଙ୍କ ପାଇଁ ୧୦ଟି ରୁମ୍‌ର ବ୍ୟବସ୍ଥା କରାଯାଇଥିଲା । ବସ୍‌ରୁ ଲଗେଜ୍ ନ ଓହ୍ଲାଇ ନିତ୍ୟକର୍ମ ସମାପନ ପରେ ପ୍ରସିଦ୍ଧ ଜ୍ୟୋତିର୍ଲିଙ୍ଗ 'ଓଁ କାରେଶ୍ୱର' ଦର୍ଶନ ଅଭିମୁଖେ ଯାତ୍ରା ଆରମ୍ଭ ହେଲା । ରାସ୍ତାରେ ୯ଘ.୧୫ମି. ସମୟରେ 'ସୋନାବଦ୍' ସହରର 'ଭାରତ ଶ୍ରୀ ଢ଼ାବା'ରେ ଚା'ପାନ ପାଇଁ କିଛି ସମୟ ଗାଡ଼ି ଅଟକିଲା । ତା'ପରେ ୧୨ କି.ମି ରାସ୍ତା ଗତି କଲାପରେ 'ଓଁ କାରେଶ୍ୱର' ପବିତ୍ର ସ୍ଥାନରେ ଗାଡ଼ି ପହଞ୍ଚିଲା । 'ଓଁ କାରେଶ୍ୱର' ପାଓ୍ୱାର ଷ୍ଟେସନ୍ ନିକଟରେ ଗାଡ଼ି ପାର୍କିଙ୍ଗ୍ କଲା । ପାଦରେ ଚାଲି କିଛି ବାଟ ଗଲାପରେ ନର୍ମଦା ନଦୀର ବିରାଟ ନଦୀବନ୍ଧ ପାର ହୋଇ ଓଁ କାରେଶ୍ୱର ମନ୍ଦିରରେ ପହଞ୍ଚିବାକୁ ହୋଇଥାଏ । ନର୍ମଦା ନଦୀର ସାତତାଳ ପାଣିର ପ୍ରବଳ ସ୍ରୋତ ପାର୍ଶ୍ୱରେ ବିନ୍ଧ୍ୟାଦ୍ରିର ଅପରୂପ ପ୍ରାକୃତିକ ସୌନ୍ଦର୍ଯ୍ୟ ତଥା ବିଜ୍ଞାନୀ ମଣିଷର ସୁଉଚ୍ଚ ସୁଦୀର୍ଘ ନଦୀବନ୍ଧ ଯୋଜନାର ରୂପରେଖ ଯାତ୍ରୀ ମନକୁ ହରଣ କରିଥାଏ । ସେ ଦିନ ଥିଲା କାର୍ତ୍ତିକ ଶେଷ ସୋମବାର । ପ୍ରବଳ ଜନ୍‌ସମାଗମ ମଧ୍ୟରେ ଆମେ ମଧ୍ୟ ସାମିଲ ହେଲୁ । ମନ୍ଦିର ଭିତରେ ବିଜେ ବଖରା ସମ୍ମୁଖରେ ସିଢ଼ିରେ ୭/୮ଟି ପାହାଚ ଚଢ଼ିଗଲାପରେ ବାବାଙ୍କ ଦର୍ଶନ ମିଳିଥାଏ । ଅସମ୍ଭବ ଭିଡ଼ ମଧ୍ୟରେ ସିଢ଼ିରୁ ଖସିଯିବାର ଭୟ ଥିଲେ ସୁଦ୍ଧା ନିର୍ବିଘ୍ନରେ ''ଓଁ କାର ବିନ୍ଦୁ ସଂଯୁକ୍ତଂ ନିତ୍ୟଂ ଧ୍ୟାୟନ୍ତି ଯୋଗିନଃ'' ବାବା ଓଁ କାରେଶ୍ୱରଙ୍କୁ ମନଭରି ଦର୍ଶନ କଲୁ । ବେଢ଼ାରେ ଦେବୀ ଅନ୍ନପୂର୍ଣ୍ଣା, କାର୍ତ୍ତିକେୟ ଓ ଗଣେଶଙ୍କୁ ଦର୍ଶନ କଲୁ । ବିନ୍ଧ୍ୟ ପର୍ବତର ପାଦ ଦେଶରେ

ନର୍ମଦା ନଦୀ କୂଳରେ ନିଘଞ୍ଚ ସବୁଜ ବନାନୀ ପରିବେଷ୍ଟିତ ଶାନ୍ତ ସ୍ନିଗ୍ଧ ପରିବେଶରେ ବାବା ଓଁ କାରେଶ୍ୱରଙ୍କ ଆସ୍ଥାନ ଆଧ୍ୟାତ୍ମିକ ଦୃଷ୍ଟିରୁ ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଜନଶ୍ରୁତି କହେ ନର୍ମଦା ନଦୀର ଦୁଇ ପାର୍ଶ୍ୱରେ ଓଁ କାରେଶ୍ୱରଙ୍କର ଦୁଇଟି ଲିଙ୍ଗ ବିରାଜିତ । ନଦୀବନ୍ଧ ପାରହେଲେ ଓଁକାରେଶ୍ୱର ମହାଦେବ ଅନ୍ୟ ପ୍ରଭୁ ଜଣକ ମମଲେଶ୍ୱର/ଅମଲେଶ୍ୱର । ମନ୍ଦିର ଦୁଇଟି ଅଲଗା ହେଲେ ମଧ୍ୟ ଲିଙ୍ଗ ସ୍ୱରୂପ ଏକ ଓ ଅଭିନ୍ନ । ଶ୍ଳୋକରେ ବର୍ଣ୍ଣିତ ଏହି ପ୍ରସଙ୍ଗ ଉପରେ ଆମର ସାମାନ୍ୟତମ ଜ୍ଞାନ ଥିଲା ପୁଣି ବାବା ନିର୍ଦ୍ଦେଶ ଦେଲେ ଅମଲେଶ୍ୱରଙ୍କ ଦର୍ଶନ କରିବା ପାଇଁ । କଷ୍ଟ ଅନୁଭବ ହେଉଥିଲେ ମଧ୍ୟ ଜ୍ୟୋତିର୍ଲିଙ୍ଗ ଦର୍ଶନ ଅପୂର୍ଣ୍ଣ ରହିଯିବା ଭୟରେ ଶକ୍ତି ସଂଗ୍ରହ କରି ଅମଲେଶ୍ୱରଙ୍କ ଦର୍ଶନରେ ବାହାରିଲୁ । ଓସାରିଆ ଓସାରିଆ ୨୦/୩୦ଟି ପାହାଚ ଅତିକ୍ରମ କରି ମନ୍ଦିର ସମ୍ମୁଖରେ ପହଞ୍ଚି କ୍ଳାନ୍ତି ଦୂର କଲୁ । ତା'ପରେ ଦର୍ଶନ ପାଇଁ ବାହାରିଲୁ । ବିରାଟ ଆୟତନ ବିଶିଷ୍ଟ ମନ୍ଦିର । ପ୍ରାଚୀନ ମନ୍ଦିରର ସମ୍ମୁଖରେ ପ୍ରସ୍ତର ନର୍ମିତ ମଣ୍ଡପ । ମଣ୍ଡପରେ ୮୪ ଟି ଖମ୍ବ ବିରାଜିତ । ମଣ୍ଡପ ପରେ ବିଜେ ବଖରାରେ ଅମଲେଶ୍ୱର ଦେବଙ୍କ ଅବସ୍ଥାନ । ଭଗବଦ୍ ଦର୍ଶନ ପରେ ସକଳ କ୍ଳାନ୍ତି ଦୂରୀଭୂତ ହେଲା ଭଳି ମନେ ହେଲା । ଅଦମ୍ୟ ଉତ୍ସାହରେ ପାର୍ଶ୍ୱରେ ଥିବା ନର୍ମଦା ଘାଟକୁ ନର୍ମଦା ଜଳ ମଥାରେ ସିଞ୍ଚନ କରିବା ଉଦ୍ଦେଶ୍ୟରେ ଯିବା ପାଇଁ ଉଦ୍ୟତ ହେଲୁ । ପ୍ରାୟ ୪୦/୪୫ଟି ପାହାଚ ଓହ୍ଲାଇବା ପରେ, ଦୋକାନ ବଜାରର ଭିଡ଼ ମଧ୍ୟରେ ଯାଇ ନର୍ମଦା ଜଳ ନିକଟରେ ପହଞ୍ଚିଲୁ । ପ୍ରବଳ ଭିଡ଼ ମଧ୍ୟରେ ଆଞ୍ଜୁଳାଏ ପାଣି ମଥାରେ ପକାଇ ନର୍ମଦା ମାତାଙ୍କର କୃପା ଲାଭ ପାଇଁ ପ୍ରାର୍ଥନା କଲୁ । ସବୁ ଦର୍ଶନ ଶେଷ ହେବାବେଳକୁ ମଧ୍ୟାହ୍ନ ପ୍ରସାଦ ସେବନ ସମୟ ଉପନୀତ ହୋଇଯାଇଥାଏ । ତେଣୁ ତରବରରେ 'ଗଜାନନ ସେବାଶ୍ରମ'କୁ ପ୍ରସାଦ ସେବନ ଉଦ୍ଦେଶ୍ୟରେ ଗମନ କଲୁ । ଦିନ ୨ଘ.୩୦ମି. ସମୟରେ ଫେରିବା ଯାତ୍ରା ଆରମ୍ଭ ହେଲା । ନର୍ମଦା ନଦୀ, ବିନ୍ଧ୍ୟ ପର୍ବତର ପ୍ରାକୃତିକ ଦୃଶ୍ୟ ସନ୍ଦର୍ଶନରେ ମନ ମଧ୍ୟରେ ଚଳଚ୍ଚିତ୍ର ସଂଗୀତର ଧାଡ଼ିଟିଏ ଗୁଞ୍ଜରି ଉଠୁଥିଲା -

''ଏଇ ଯେ ବନ ଲତା ପାହାଡ଼

ହାୟରେ ଦିଶେ କେଡ଼େ ସୁନ୍ଦର

ଏଠି ଦିନ ସରେନା ଏଠି ରାତି ସରେନା

ଏଇ ଯେ ବନ ଲତା ପାହାଡ଼'' ।

ନୟନ ମନକୁ ଜୋର ଜବରଦସ୍ତ ଆୟତ୍ତରେ ରଖି ବାବା ଓଁ କାରେଶ୍ୱରଙ୍କୁ ଓ ସୃଷ୍ଟି କର୍ତ୍ତାଙ୍କ ଅପରୂପ ସୃଷ୍ଟିକୁ ବିନମ୍ର ପ୍ରଣାମ ଜଣାଇ ଫେରିବାକୁ ବାଧ୍ୟ ହେଲୁ । ଲକ୍ଷ୍ୟସ୍ଥଳ ଉଜ୍ଜୟିନୀର ଦୂରତା ଏଠାରୁ ୧୨୮ କି.ମି । ରାତ୍ରି ୭ଘଣ୍ଟା ସମୟରେ ଶ୍ରୀ ଶ୍ରୀ ମହାକାଳେଶ୍ୱର ମନ୍ଦିର ନିକଟସ୍ଥ ଚୌବିଶ ଖମ୍ବ ମାର୍ଗର 'ଦୁଗ୍‌ଗଦ ଯାତ୍ରୀକୀ ଗୃହ' ନାମକ ଧର୍ମଶାଳାରେ ଉପନୀତ ହେଲୁ । ଦ୍ୱିତୀୟ ମହଲାର ୨୧୭ ନମ୍ବର ରୁମ୍‌ରେ ପଟ୍ଟନାୟକ ଦମ୍ପତିଙ୍କ ସହ ଆମେ ରହିବା ବ୍ୟବସ୍ଥା ହୋଇଥିଲା । ଲୁଗାପଟା ସଫା କରି ସାରିବା ପରେ ରାତ୍ରି ପ୍ରସାଦ ସେବନ ସ୍ଥାନରେ ଅନ୍ୟ ବସ୍‌ର ଯାତ୍ରୀମାନେ ଶ୍ରୀ ଶ୍ରୀ ମହାକାଳେଶ୍ୱରଙ୍କର ସଂଧ୍ୟ ଆରତୀ ଦର୍ଶନ କରିଥିବା ବିଷୟ ଶୁଣିବାକୁ ପାଇଲୁ । ହୋଟେଲ୍ ମାଲିକ ଓ ଦୋକାନୀଙ୍କ ଠାରୁ ଭସ୍ମବେଶ ଦର୍ଶନ ବିଷୟ ବୁଝିବାରୁ ଜଣାଗଲା ଯେ ଦିନେ / ଦୁଇଦିନ ପୂର୍ବରୁ ଭସ୍ମବେଶ ଦର୍ଶନ ପାଇଁ ଟିକଟ କରିବାକୁ ହୋଇଥାଏ । ଆମ ପାଇଁ ଭସ୍ମବେଶ ଦର୍ଶନ ସୁଲଭ ନୁହେଁ ବୋଲି ଭାବି କେବଳ ମଙ୍ଗଳ ଆରତୀ ଦର୍ଶନ ପାଇଁ ଯିବା ପାଇଁ ମନେ ମନେ ଠିକ୍ କଲୁ । ଦୂରରୁ ଶ୍ରୀ ଶ୍ରୀ ମହାକାଳେଶ୍ୱରଙ୍କୁ ପ୍ରଣତି ଜଣାଇ ବିଶ୍ରାମ ନେଲୁ ।

*ତା.୦୮.୧୧.୨୦୧୧, ମଙ୍ଗଳବାର*

ଉଜ୍ଜୟିନୀର ଧର୍ମଶାଳାରେ ୨୧୭ ନଂ ରୁମ୍‌ରେ ପଟ୍ଟନାୟକ ଦମ୍ପତିଙ୍କ ସହ ଆମ ରହିବାର ବ୍ୟବସ୍ଥା ହୋଇଥାଏ । ସ୍ନାନାଦି ନିତ୍ୟକର୍ମ ଶେଷକରି ରାତି ୩ଟାରେ ମନ୍ଦିରର ସଂକ୍ଷିପ୍ତ ରାସ୍ତା ଦେଇ ମନ୍ଦିର ସମ୍ମୁଖରେ ପହଞ୍ଚିଲୁ । ରାତି ୩ଟା ବେଳକୁ ରାସ୍ତାଘାଟ ଓ ମନ୍ଦିର ଚଳ ଚଞ୍ଚଳ ଦେଖି ବିସ୍ମିତ ହେଲୁ । ୩ଘ.୩୦ମି.ରେ ଲମ୍ବା ଧାଡ଼ିରେ ଦର୍ଶନ ପାଇଁ ଅପେକ୍ଷା କଲୁ । ମୁଣ୍ଡ ଉପରେ ଖୋଲା ଆକାଶର ଚତୁର୍ଦ୍ଦଶୀର ଜହ୍ନ କିରଣ କାର୍ତ୍ତିକ ମାସର ପାହାନ୍ତି ଶୀତକୁ ବଢ଼ାଇ ଦେଉଥାଏ । ଟିକଟ କରିବା ଜାଗାରେ ବୋର୍ଡ଼ ପଢ଼ି ଜାଣିଲୁ ପ୍ରାତଃ ୬ ଟାରେ ଦ୍ୱାର ଖୋଲା ହେବ । ରାତି ୩ ଟାରୁ ସକାଳ ୬ ଘଣ୍ଟା ପର୍ଯ୍ୟନ୍ତ ୩ ଘଣ୍ଟାର ଅପେକ୍ଷା ପ୍ରବଳ ଭକ୍ତ ସମାଗମ ହେତୁ ଅଳ୍ପସମୟ ଭଳି ଅନୁଭୂତ ହେଉଥିଲା । ସକାଳ ୬ ଟାରେ ଦ୍ୱାର ଖୋଲିବା ପରେ ସଭାଗୃହର ସୁନ୍ଦର ମାର୍ବଲ ଚଟାଣ ଉପରେ ଜଣେ ଜଣେ ପଛକୁ ପଛ ହୋଇ ଧାଡ଼ିରେ ବସି ଟି.ଭିରେ ଭସ୍ମବେଶ ଓ ଆରତୀ ଦର୍ଶନ କଲୁ । ସେତିକିରେ ଆମେ ପରମତୃପ୍ତି ଅନୁଭବ କଲୁ । ଭସ୍ମବେଶ ଓ ଭସ୍ମ ଆରତୀ ଶ୍ରୀ ଶ୍ରୀ ମହାକାଳେଶ୍ୱର ପ୍ରଭୁଙ୍କର ଏକ ସ୍ୱତନ୍ତ୍ର ପୂଜାବିଧି । ଭାରତ ବର୍ଷର ଅନ୍ୟ କୌଣସି ଶୈବପୀଠରେ ଏହି ପ୍ରଥା ପ୍ରଚଳିତ ନୁହେଁ । ପ୍ରାତଃ ୪ ଘଣ୍ଟାରୁ ୬ ଘଣ୍ଟା ଭିତରେ ଏହି ଆରତୀ ସଂପନ୍ନ ହୋଇଥାଏ ।

ରାତି ୧୨ଟା ପରେ ଦାହ ହୋଇଥିବା ଶବର ଚିତାଭସ୍ମରେ ଏହି ଆରତୀ କରାଯିବା ପରଂପରା ଥିଲା କିନ୍ତୁ ବର୍ତ୍ତମାନ ଗାଈ ଗୋବରକୁ ଅଖଣ୍ଡ ଧୁନିରେ ପଞ୍ଚମନ୍ତ୍ରରେ ଅଭିମନ୍ତ୍ରିତ କରିବା ଦାୟିତ୍ୱ ଅଖିଳ ଭାରତୀୟ ମହାନିର୍ବାଣ ଆଖଡ଼ାଙ୍କୁ ଦିଆଯାଇଛି । ସେଠାରୁ ଭସ୍ମ ସଂଗ୍ରହ କରାଯାଇ ଭସ୍ମ ଆରତୀ ସଂପନ୍ନ କରାଯାଉଛି, ଭସ୍ମ ଆରତୀ ସମୟରେ ଗର୍ଭଗୃହରେ ନାରୀ ପ୍ରବେଶ ନିଷେଧ କରାଯାଇଛି କେବଳ ପୁରୁଷମାନେ ଶୁଦ୍ଧପୂତ ଭାବେ ଧୋତି ପିନ୍ଧି ପ୍ରବେଶ କରିପାରିବେ । ଭସ୍ମ ଆରତୀ ଓ ଭସ୍ମବେଶ ଧାରଣ ମାଧ୍ୟମରେ ଶ୍ରୀ ଶ୍ରୀ ମହାକାଳେଶ୍ୱର ଜଗତକୁ ଜଣାଇ ଦିଅନ୍ତି ଯେ ସଂସାରରେ ପ୍ରତ୍ୟେକଙ୍କୁ ଦିନେ ଭସ୍ମରେ ପରିଣତ ହେବାକୁ ପଡ଼ିବ । ତେଣୁ ମହାକାଳ ଯାହାଙ୍କର ନାମ - କାଳ ଗଣନାକୁ ନେଇ ନାମିତ, ସେ ଚେତାବନୀ ଛଳରେ ପ୍ରକାଶ କରନ୍ତି - ଭସ୍ମ ହୋଇ ମାଟିରେ ମିଶିବା ପୂର୍ବରୁ ସତର୍କ ରହ, ପାପରୁ ନିବୃତ୍ତ ହୁଅ, ପୁଣ୍ୟ ଅର୍ଜ୍ଜନ କର । କବିବର ରାଧାନାଥ ରାୟଙ୍କ ଭାଷାରେ -

''ବଡ଼ କ୍ରୁର କାଳ ବଡ଼ ଅବିଶ୍ୱାସୀ,
ହାବୋଡ଼ି ଯିବ ସେ ଆଚମ୍ବିତେ ଆସି''।

ମହାକାଳେଶ୍ୱରଙ୍କ ଭସ୍ମ ଆରତୀ ଦର୍ଶନ ସମୟରେ ସଂସାରୀ ଭକ୍ତ ମନରେ କ୍ଷଣିକ ବୈରାଗ୍ୟ ଜାତ ହୋଇଥାଏ । ମନ୍ଦିର ବାହାରେ ଦର୍ଶନ ଅପେକ୍ଷାରେ ଥିବା ସମୟରେ ଲକ୍ଷ୍ୟ କରିଥିଲୁ - ଗର୍ଭଗୃହ ଠାରୁ ସମ୍ମୁଖ ଦ୍ୱାର ପର୍ଯ୍ୟନ୍ତ ମୋଟ ୪୧ଟି ଛୋଟ ମନ୍ଦିର । ମନ୍ଦିରର ଶିଖର ଦେଶ ସ୍ୱର୍ଣ୍ଣ ଆଚ୍ଛାଦିତ । ଦାତାମାନଙ୍କର ଦାନ ରାଶିରେ ଛୋଟ ବଡ଼ ମନ୍ଦିର ଚୂଡ଼ାକୁ ସ୍ୱର୍ଣ୍ଣ ମଣ୍ଡିତ କରାଯାଇଛି । ବାବା ମହାକାଳେଶ୍ୱରଙ୍କର ଗର୍ଭଗୃହର ପ୍ରାଚୀର ରଜତ ମଣ୍ଡିତ । ଭଗବାନ ମହାକାଳେଶ୍ୱରଙ୍କର ବିରାଟ ଲିଙ୍ଗ ଓ ବିଶାଳ ଶକ୍ତି ଦକ୍ଷିଣ ମୁଖୀ । ତେଣୁ ତନ୍ତ୍ର ପୂଜା ପାଇଁ ଏହା ପ୍ରକୃଷ୍ଟ କ୍ଷେତ୍ର ରୂପେ ପରିଚିତ । ଗର୍ଭଗୃହକୁ ପ୍ରବେଶ କରିବା ସମୟରେ ପୂର୍ବରେ କୋଟେଶ୍ୱର ରାମେଶ୍ୱରଙ୍କ ସ୍ଥାନ, ଉତ୍ତରରେ ରାମ ମନ୍ଦିର ଓ ଅବନ୍ତିକା ଦେବୀଙ୍କ ମନ୍ଦିର, ଦକ୍ଷିଣରେ ବୀରଭଦ୍ର ଓ ଗଣେଶଙ୍କ ବିଶାଳ ପ୍ରତିମା ଏବଂ ଗର୍ଭଗୃହରେ ସ୍ୱୟଂଭୂ ଜ୍ୟୋତିର୍ଲିଙ୍ଗ ମହାକାଳେଶ୍ୱର ଦେବୀ ପାର୍ବତୀ, ଗଣେଶ ଏବଂ କାର୍ତ୍ତିକେୟଙ୍କ ସହ ବିରାଜିତ । ଫେରିବା ରାସ୍ତାରେ ପ୍ରଣତ ମୁଦ୍ରାରେ ବିଶାଳ ଧାତୁ ନିର୍ମିତ ନନ୍ଦୀ ବିଦ୍ୟମାନ । ଭିତର ବେଢ଼ାରେ ବିଭିନ୍ନ ନାମରେ ୮୪ଟି ଶିବ ମନ୍ଦିର ରହିଛି । ମୁଖ୍ୟ ଓ ନିକଟରେ ଥିବା କେତୋଟି ମନ୍ଦିର ଯଥା ହନୁମାନ, ଗଣେଶ, ରାମ ଦରବାର, ସାକ୍ଷୀଗୋପାଳ, ସ୍ୱପ୍ନେଶ୍ୱର ମହାଦେବ, ଚନ୍ଦ୍ରାଦିତ୍ୟେଶ୍ୱର ଓ ଅବନ୍ତିକା ଦେବୀ ମନ୍ଦିର ଦର୍ଶନ କଲୁ ।

ବିରାଟ ଆୟତନ ବିଶିଷ୍ଟ ମହାକାଳେଶ୍ୱରଙ୍କର ପ୍ରାଙ୍ଗଣରେ ମାତ୍ର କିଛି ଅଂଶ ପରିକ୍ରମା କଲା ପରେ ସିପ୍ରା ନଦୀ ଦର୍ଶନ ପାଇଁ ଯାତ୍ରା କଲୁ । ରାଧାନାଥ ରାୟଙ୍କ 'ଚିଲିକା' କାବ୍ୟରୁ ପଢ଼ିଥିଲୁ - ''କ୍ଷୁଦ୍ର ସିପ୍ରା ସ୍ରୋତ ବିଖ୍ୟାତ ଜଗତେ'' । ସିପ୍ରା ନଦୀ ଦର୍ଶନ ପାଇଁ ଯିବା ସମୟରେ ଇସ୍କନ କୀର୍ତ୍ତନ ମଣ୍ଡଳୀ ସହ ମିଶିଲୁ ଏବଂ ସିପ୍ରା ନଦୀର ରାମଘାଟରେ ପୂଜାର୍ଚ୍ଚନା ସାରି ଅନ୍ୟ ମନ୍ଦିର ଦର୍ଶନ ପାଇଁ ବାହାରିଲୁ । ଶ୍ରୀରାମ ମନ୍ଦିର, ରାଧାକୃଷ୍ଣ ମନ୍ଦିର, ଦ୍ୱାରକାଧୀଶ ମନ୍ଦିର ପ୍ରଦକ୍ଷିଣ କଲୁ । ଦିନ ୧୦ଘ.୩୦ମି. ସମୟରେ ଅଟୋ ଯୋଗେ ଇସ୍କନ ମନ୍ଦିରରେ ଶ୍ରୀ ରାଧା ମଦନମୋହନ ସ୍ୱାମୀଙ୍କୁ ଦର୍ଶନ କରି ବସାକୁ ଫେରିଲୁ । ଭର୍ତ୍ତୃହରି ଗୁମ୍ଫା ଓ ଶ୍ରୀ କାଳଭୈରବ ଦୁଇଟି ପ୍ରସିଦ୍ଧ ସ୍ଥାନ ଅତିଶୟ କ୍ଳାନ୍ତି ଯୋଗୁଁ ଯାଇପାରିଲୁ ନାହିଁ । ମଧ୍ୟାହ୍ନ ପ୍ରସାଦ ସେବନ ପରେ ବସ୍‌ରେ ଲଗେଜ୍ ରଖି ଦିନ ୨ଘ.୪୫ମି. ସମୟରେ ବିଶ୍ୱ ବିଖ୍ୟାତ ସାନ୍ଦିପନୀ ଆଶ୍ରମରେ ପହଞ୍ଚିଲୁ । ଆଜକୁ ୬୬୪୦ ବର୍ଷ ପୂର୍ବେ ଗୁରୁ ସାନ୍ଦିପନୀଙ୍କ ଦ୍ୱାରା ଏହି ଆଶ୍ରମ ପ୍ରତିଷ୍ଠିତ ବିଷୟ ଗାଇଡ଼ଙ୍କ ଠାରୁ ଶୁଣିବାକୁ ପାଇଲୁ । ଗାଇଡ଼ଙ୍କ ସହାୟତାରେ ଆଶ୍ରମର କୋଣ ଅନୁକୋଣ ବୁଲି ବିଭିନ୍ନ ତଥ୍ୟ ଜାଣିବାରେ ସକ୍ଷମ ହେଲୁ । ସାନ୍ଦିପନୀ ଆଶ୍ରମରେ ବିଲ୍ୱପତ୍ରରୁ ଉତ୍ପତ୍ତି ଲାଭ କରିଥିବା ଶିବ ଲିଙ୍ଗ ଦର୍ଶନ କଲୁ । ପାଠଶାଳାରେ କୃଷ୍ଣ ବଳରାମଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ମହାକାଳ ପ୍ରବେଶ ହେବା ସମୟରେ ନନ୍ଦୀ ଠିଆ ହୋଇଥିଲେ । ସେହି ଦିନଠାରୁ ନନ୍ଦୀ ସେହି ଅବସ୍ଥାରେ ରହିଛନ୍ତି । ମନ୍ଦିର ଭିତରେ ଦଣ୍ଡାୟମାନ ନନ୍ଦୀ ସମଗ୍ର ଭାରତ ବର୍ଷରେ କେବଳ ଏହିଠାରେ ହିଁ ଅବସ୍ଥାନ କରିଛନ୍ତି ବୋଲି ଗାଇଡ୍ ବୁଝାଇ କହିଲେ । ଦ୍ୱାରକାସ୍ଥିତ ଗୋମତୀ ନଦୀରେ ସ୍ନାନ କରିବାକୁ ପ୍ରତିଦିନ ଗୁରୁଦେବ ସାନ୍ଦିପନୀ ଦୀର୍ଘ ପଥ ଯାତ୍ରା କରୁଥିଲେ । ଗୁରୁଭକ୍ତ ଶ୍ରୀକୃଷ୍ଣ ଗୁରୁଙ୍କର ଯାତ୍ରାକଷ୍ଟ ଲାଘବ ପାଇଁ ଆଶ୍ରମରେ ଗୋମତୀ କୁଣ୍ଡ ପ୍ରକଟ କରିଥିଲେ । ସେହି ଗୋଟିଏ ମନ୍ଦିର ଭିତରେ ଗୁରୁ ସାନ୍ଦିପନୀ, ଶ୍ରୀକୃଷ୍ଣ, ବଳରାମ, ମଧୁ ମଙ୍ଗଳ ଇତ୍ୟାଦି ପୂଜା ପାଉଛନ୍ତି । ଆଶ୍ରମରେ ଏକ ବିରାଟ ଗୋଶାଳା ରହିଛି । ସୁଶୀତଳ ଚନ୍ଦନ ଗଛରେ ପରିପୂର୍ଣ୍ଣ ସାନ୍ଦିପନୀ ଆଶ୍ରମରେ ଶାନ୍ତି ବିରାଜମାନ । ଆବହମାନ କାଳରୁ ଶାନ୍ତି ଭଙ୍ଗ ହେବା ଉଦ୍ଦେଶ୍ୟରେ ଏଠାରେ ଦୋକାନ ବଜାର ବନ୍ଦ । ଗାଇଡ଼ଙ୍କ ମୁହଁରୁ ଏହାଶୁଣି ବାହାରକୁ ଆସି ଦେଖିଲାବେଳକୁ କଥାଟି ସଂପୂର୍ଣ୍ଣ ସତ୍ୟ । ତା'ପରେ ରତଲମ୍ ରେଲୱେ ଷ୍ଟେସନ ଅଭିମୁଖେ ଯାତ୍ରାରମ୍ଭ ହେଲା । ସଂଧ୍ୟା ୬ଘ. ୩୦ମି.ରେ ରତଲମ୍ ଠାରୁ ୩୦/୩୫ କି.ମି ପୂର୍ବରୁ 'ମୁଲଥାନ୍' ନାମକ ସ୍ଥାନରେ ଚା'ପାନ ପାଇଁ ଗାଡ଼ି ଅଟକିଲା । ପରେ ରାତି ୯ଘ.୩୦ମି.ରେ ରତଲାମ୍ ଠାରେ ଗାଡ଼ି ପହଞ୍ଚିଲା । ଷ୍ଟେସନରୁ ଯଥେଷ୍ଟ ଦୂରରେ ଗାଡ଼ି ପାର୍କିଙ୍ଗ ବ୍ୟବସ୍ଥା ।

ଜିନିଷ ପତ୍ର ଅଟୋରେ ପଠେଇ ଆମେ, ତ୍ରିପାଠି ବାବୁ, ନନ୍ଦ ବାବୁ ଓ ସମ୍ବନ୍ଧୀ, ସମସ୍ତେ ମିଶି ଖୁସି ବାସିରେ ଗପସପ କରି ଯଥା ସମୟରେ ଷ୍ଟେସନରେ ପହଞ୍ଚିଲୁ । S-5 ର ୨୮ ଓ ୩୨ ନମ୍ବର ସିଟ୍‌ରେ ରାତ୍ରି ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ ।

**ତା.୦୯.୧୧.୨୦୧୧, ବୁଧବାର**

ସକାଳ ୯ ଘଣ୍ଟା ୩୦ ମିନିଟ୍‌ରେ 'ଗୋଲାପି ସହର' ଜୟପୁର ଷ୍ଟେସନରୁ ବସ୍ ଯୋଗେ 'ହୋଟେଲ୍ ମଙ୍ଗଲ୍'ରେ ପହଞ୍ଚିଲୁ । ନିତ୍ୟ କର୍ମ ସମାପନ ଓ ମଧ୍ୟାହ୍ନ ପ୍ରସାଦ ସେବନ ପରେ ଦର୍ଶନୀୟ ସ୍ଥାନ ଭ୍ରମଣରେ ଦିନ ୧ ଘଣ୍ଟା ସମୟରେ ବାହାରି ପଡ଼ିଲୁ । ରାସ୍ତାରେ 'ଜଲ ମହଲ' ନାମକ ଏକ ବିରାଟ ଗଡ଼ଖାଇ ଓ ଅପର ପାର୍ଶ୍ୱରେ ନିଘଞ୍ଚ ସଂରକ୍ଷିତ ଜଙ୍ଗଲ ଦୃଷ୍ଟିଗୋଚର ହେଲା । 'କନକ ବୃନ୍ଦାବନ ଘାଟି' ମଧ୍ୟ ଦେଇ । ଅମ୍ବର ପାଲେସ ଦୁର୍ଗ'ରେ ପହଞ୍ଚିଲୁ । ଉନ୍ନତ ମାନର ଦୁର୍ଗ ନିର୍ମାଣ ଶୈଳୀ ଓ ଉଚ୍ଚକୋଟୀର କଳା କାରୁକାର୍ଯ୍ୟ ଆମକୁ ବିମୋହିତ କରିଥିଲା । ଉପରକୁ ଉପରକୁ ଗଲେ ସୂକ୍ଷ୍ମ କାରୁକାର୍ଯ୍ୟକୁ ପୂର୍ଣ୍ଣ ଉପଭୋଗ କରି ହେବ କିନ୍ତୁ ଆମ ପକ୍ଷରେ ତାହା ସମ୍ଭବ ନ ଥିଲା । ଭଂଜନଗରର ଶ୍ରୀ ସ୍ୱାଇଁ ଦମ୍ପତି ଓ ଆମେ ନିମ୍ନ ପ୍ରଦେଶରୁ କିଛି ପାହାଚ ଉପରକୁ ଉଠି ଏକ ବିଶାଳ ପ୍ରାଙ୍ଗଣରେ ଉପର ମହଲାକୁ ଯାଇଥିବା ଯାତ୍ରୀମାନଙ୍କୁ ଅପେକ୍ଷା କଲୁ । ସେଠାରୁ ଫେରି ସଂଧ୍ୟା ୪ଘ.୩୦ମି.ରେ ମହାରାଜା ସୱାଇ ମାନସିଂଙ୍କ ପ୍ରାସାଦ ''ସିଟି ପ୍ୟାଲେସ'' ବାହାରୁ ବାହାରୁ ଦେଖିଲୁ । ତା'ପରେ ବିଶ୍ୱ ପ୍ରସିଦ୍ଧ - 'ଜନ୍ତର ମନ୍ତର'ରେ ପ୍ରବେଶ କଲୁ । ଚାରିଶହ ବର୍ଷ ପୂର୍ବେ ନିର୍ମିତ ପ୍ରତ୍ୟେକ କଳାକୃତିର ସୂକ୍ଷ୍ମାତି ସୂକ୍ଷ୍ମ ବୈଜ୍ଞାନିକ ଓ ଭୌଗଳିକ ତତ୍ତ୍ୱ, ସମୟ ଗଣନା, ଅକ୍ଷାଂଶ, ଦ୍ରାଘିମାର ମାପକ ଇତ୍ୟାଦି ଆମ ପାଇଁ ବୋଧଗମ୍ୟ ନ ଥିଲା । କେତେ ବୁଝିଲୁ କେତେ ନ ବୁଝି ଗଣନାକାରଙ୍କ ବୁଦ୍ଧିକୁ ପ୍ରଶଂସା କଲୁ । ଗାଇଡ୍‌ଙ୍କର ସାହାଯ୍ୟରେ ସାମାନ୍ୟତମ ଜ୍ଞାନ ଆହରଣ କରି ପୂର୍ବ ସମ୍ରାଟ ମାନଙ୍କର ସୁଦୂରପ୍ରସାରୀ ଦୃଷ୍ଟିକୋଣର ଭୂୟସୀ ଗୁଣଗାନ କଲୁ । ସର୍ବଶେଷରେ ସାଂଧ୍ୟ ଆରତୀ ଦର୍ଶନ ଉଦ୍ଦେଶ୍ୟରେ ପହଞ୍ଚିଲୁ ରାମ ଗୋବିନ୍ଦ ମନ୍ଦିରରେ । ପବିତ୍ର କାର୍ତ୍ତିକ ମାସ ଅବସରରେ ଆୟୋଜିତ ପ୍ରବଚନ କାର୍ଯ୍ୟକ୍ରମରେ ବସିଲୁ । ସାଂଧ୍ୟ ଆରତୀ ଦର୍ଶନ ପରେ ପ୍ରସାଦ ଓ ଉପହାର ସାମଗ୍ରୀ କିଣାକିଣି କରି ବସ୍‌ରେ 'ହୋଟେଲ୍ ମଙ୍ଗଲ୍'ରେ ପହଞ୍ଚିଲୁ । ରାତ୍ରି ପ୍ରସାଦ ସେବନ ପରେ ରାତି ଗୋଟାଏରେ ପୁଷ୍କର ତୀର୍ଥ ଆଜମୀର ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲୁ । ଜୟପୁର ଠାରୁ ଆଜମୀର ର ଦୂରତା ୧୩୦ କି.ମି । ପ୍ରାତଃ ୫ଘଣ୍ଟା ସମୟରେ ଆଜମୀରର ପୃଥ୍ୱିରାଜ ମାର୍ଗସ୍ଥ 'ଲୋଧା ଧର୍ମଶାଳା' ନିକଟରେ ବସ୍ ଅଟକିଲା ।

### ତା.୧୦.୧୧.୨୦୧୧, ଗୁରୁବାର-କାର୍ତ୍ତିକ ପୂର୍ଣ୍ଣିମା

ପ୍ରାତଃ ୫ ଟାରେ ବସ୍‌ରୁ 'ଲୋଧା ଧର୍ମଶାଳା'ରେ ଓହ୍ଲାଇଲୁ । ସେ ଦିନର କାର୍ଯ୍ୟକ୍ରମ ଥିଲା ସକାଳ ୭ଟା ପୂର୍ବରୁ ବସ୍ ଯୋଗେ ପୁଷ୍କର ତୀର୍ଥଯାତ୍ରା । ପୁଷ୍କର ତୀର୍ଥରେ କାର୍ତ୍ତିକ ପୂର୍ଣ୍ଣିମା ଗୋଟିଏ ଦିନ ମେଳା ହୁଏ । ଅମୃତ ସ୍ନାନ, ପିଣ୍ଡ ଦାନ ଓ ବ୍ରହ୍ମାଜୀଙ୍କ ଦର୍ଶନ ହୋଇଥାଏ । ଏଥି ସହିତ ଏଠାରେ ଏକ ପୃଥିବୀ ପ୍ରସିଦ୍ଧ ଓଟମେଳା ଅନୁଷ୍ଠିତ ହୋଇଥାଏ । ପୁଷ୍କର ତୀର୍ଥରେ ପହଞ୍ଚିଲୁ । ପ୍ରବଳ ଭିଡ଼ ଦୃଷ୍ଟିରୁ ୪ କି.ମି ପୂର୍ବରୁ ବସ୍ ପାର୍କିଙ୍ଗ ବ୍ୟବସ୍ଥା କରାଯାଇଥିଲା । ତେଣୁ ସଂକୀର୍ତ୍ତନ ମଣ୍ଡଳୀଙ୍କ ସହ ପଦଯାତ୍ରା ଆରମ୍ଭ କଲୁ । ପୁଷ୍କରର ପବିତ୍ର ଘାଟରେ ଅମୃତ ସ୍ନାନ ଓ ପିଣ୍ଡଦାନ ପରେ ସଂକୀର୍ତ୍ତନ ମଣ୍ଡଳୀ ସହ ପୃଥିବୀର ଏକମାତ୍ର ବ୍ରହ୍ମାଜୀଙ୍କ ମନ୍ଦିର, ଶ୍ରୀ ଲକ୍ଷ୍ମୀ ନୃସିଂହ ମନ୍ଦିର ଓ ଅନ୍ୟ କେତୋଟି ଛୋଟ ବଡ଼ ମନ୍ଦିର ଦର୍ଶନ ସାରି ବସ୍ ପାର୍କିଂଙ୍ଗ୍ ସ୍ଥାନରେ ପହଞ୍ଚିଲୁ । ରାଜସ୍ଥାନ ସରକାରଙ୍କର ଚରମ ବିଶୃଙ୍ଖଳାର ଉଦାହରଣଟିଏ ଦେବା ଏଠାରେ ଉଚିତ୍ ମନେ ହେଉଛି । କର୍ତ୍ତବ୍ୟ ବିମୁଖ କେତୋଟି ପୋଲିସ୍ ପହରା ଦେଉଥାଆନ୍ତି । ଯାତ୍ରୀ ମାନଙ୍କର ଜୋତା ରଖିବା ପାଇଁ କିଛି ବ୍ୟବସ୍ଥା ନାହିଁ । ଏଣେ ତେଣେ ଜୋତା ରଖି ମନ୍ଦିର ବୁଲି ଆସି ପୁଣି ଜୋତା ଖୋଜି କରି ପାଇବା ଯେ କୌଣସି ବ୍ୟକ୍ତି ପକ୍ଷେ କଷ୍ଟକର ତେଣୁ ପରମ ସହୃଦୟ ବଳରାମ ବାବା ଆମ ଜୋତା ଜଗିଲେ ଆମେ ଦର୍ଶନ ପାଇଁ ଗଲୁ। ସାଧୁଙ୍କ ସେବା କରିବା ଆମ ଭାଗ୍ୟରେ ନାହିଁ; ସାଧୁଙ୍କ ଠାରୁ ସେବା ପାଇ ଚିର ଋଣୀ ରହିଲୁ । ରାଜସ୍ଥାନର ବିଚିତ୍ର ପ୍ରକାର ଖରା ଝାଞ୍ଜିରେ ବସ୍‌ରେ ଧର୍ମଶାଳାକୁ ପହଞ୍ଚିବା ସମୟରେ ୪/୫ କି.ମି ପୂର୍ବରୁ ଟ୍ରାଫିକ୍ ଅଟକାଇବାରୁ ବାଧ ହୋଇ ଓହ୍ଲାଇଲୁ, ଅଟୋ ଯୋଗେ ଧର୍ମଶାଳାରେ ପହଞ୍ଚିଲୁ । ସୁସ୍ୱାଦୁ ମଧ୍ୟାହ୍ନ ପ୍ରସାଦ ସେବନ ପରେ କିଛି ସମୟ ପାଇଁ ବିଶ୍ରାମ ନେଲୁ । ବିଳମ୍ବିତ ଅପରାହ୍ନରେ କିଛି ଲୁଗାପଟା ସଫା କଲୁ । ପ୍ରବଳ କ୍ଳାନ୍ତି ଯୋଗୁଁ ରାତ୍ରି ପ୍ରସାଦ ସେବନ ପର୍ଯ୍ୟନ୍ତ ଧର୍ମଶାଳାର ପ୍ରଶସ୍ତ ପ୍ରାଙ୍ଗଣରେ ତୀର୍ଥ ଯାତ୍ରୀଙ୍କ ସହ ପାରିବାରିକ ଓ ଆଧାତ୍ମିକ ଚର୍ଚ୍ଚାରେ ସମୟ ବିତାଇଲୁ । ରାତ୍ରି ପ୍ରସାଦ ସେବନ ସମୟରେ ଯାତ୍ରୀମାନଙ୍କଠାରୁ ଶୁଣିଲୁ ଏଠାରୁ ୨ କି.ମି ଦୂରରେ ମଇନୁଦ୍ଦିନ୍ ଚିସ୍ତିଙ୍କ ବିରାଟ ଦରଘା ଦେଖି ସେମାନେ ଫେରିଛନ୍ତି । ଅଳସ ଦେହ ଓ ଅବଶ ମନରେ ସେହି ସ୍ଥାନକୁ ଯିବା ଆମ ପକ୍ଷରେ ଅସମ୍ଭବ ବୋଲି ଭାବି ମନକୁ ବୁଝାଇ ନେଲୁ । ରାତ୍ରି ବିଶ୍ରାମ ପୂର୍ବରୁ ପୃଥକ୍ ପୃଥକ୍ ସମୟରେ ଆମ ଦୁଇ ପୁଅ ଯାକ ପ୍ରଶ୍ନ କଲେ - 'ଦରଘା ଦେଖିଲ ? ଦରଘା ନ ଗଲେ ଆଜମୀର ଯିବା ମୂଲ୍ୟହୀନ'' ସକାଳ ୯

ଟାରେ ଆମକୁ ଷ୍ଟେସନରେ ପହଞ୍ଚିବା ପାଇଁ ନିର୍ଦ୍ଦେଶ ଥାଏ । ମନେ ମନେ ଭାବିଲୁ ସେହି ସୁଫି ସନ୍ଥଙ୍କର କରୁଣା ଥିଲେ ଦର୍ଶନ ପାଇବୁ । ଭଗବଦ୍ ସ୍ମରଣ କରି ରାତ୍ରି ବିଶ୍ରାମ ନେଲୁ ।

**ତା. ୧୧.୧୧.୨୦୧୧, ଶୁକ୍ରବାର**

ଲୋଧା ଧର୍ମଶାଳାର ୨୧୫ ନମ୍ବର କୋଠରୀରେ ଆମେ ଓ ଭୁବନେଶ୍ୱରର ପଟ୍ଟନାୟକ ଦମ୍ପତିଙ୍କର ରହିବା ବ୍ୟବସ୍ଥା ହୋଇଥିଲା । ତେଣୁ ରାତି ୪ ଟାରୁ ଉଠି ନିତ୍ୟକର୍ମ ଶେଷ କରିବାକୁ ଠିକ୍ ମନେକଲୁ । ସାମନା ହିନ୍ଦ୍ ଧର୍ମଶାଳାରେ ସ୍ୱାଦିଷ୍ଟ ଚା' ପାନ କଲୁ । ସକାଳ ୫ଟା ବେଳକୁ ପାଖ ଗଳି ରାସ୍ତା ଦେଇ ଆମର କେତେଜଣ ଯାତ୍ରୀ 'ଦରଘା' ଯିବା ବିଷୟ କଥାବାର୍ତ୍ତା ହେବା ଶୁଣିଲୁ । ଦର୍ଶନ ଇଚ୍ଛା ବଳବତ୍ତର ହେଲା । ହଠାତ୍ ଅଟୋ ଯୋଗେ ସାଙ୍ଗ ସାଥୀଙ୍କ ସହ ଦରଘା ଯିବା ଉଦ୍ଦେଶ୍ୟରେ ବାହାରି ପଡ଼ିଲୁ । ଅଟୋରେ ପହଞ୍ଚିବା ପରେ ସେଦିନ ଶୁକ୍ରବାର, ମୁସଲମାନମାନଙ୍କର ଏକ ବିଶେଷ ବାର, ପ୍ରବଳ ଭିଡ଼ ହେବା କଳ୍ପନା କଲୁ । ଦୀର୍ଘ ସମୟ ଧାଡ଼ିରେ ଅପେକ୍ଷା କରିବା ପରେ ଭିତର ବଖରାରେ ପହଞ୍ଚିଲୁ । ଅପେକ୍ଷା କରିଥିବା ସମୟରେ ମାର୍ବଲ ଖଚିତ ଦରଓ୍ୱାଜା, ତୋରଣ ଗୁଡ଼ିକର କଳା ଚାତୁରୀ ଉପରେ ନଜର ପକାଇଥିଲୁ । ପ୍ରବଳ ଭିଡ଼, ଠେଲା ପେଲାରେ ଅଣ ନିଃଶ୍ୱାସୀ ହୋଇ ଭିତର ମହଲାରେ ପଶି ସୁଫି ସନ୍ଥଙ୍କ ଚାଦରରେ ଗୋଲାପ ଫୁଲ ଚଢ଼ାଇ ଶାନ୍ତି ଲାଭ କଲୁ । ଦରଘାରୁ ଫେରିବା ରାସ୍ତାରେ ଭିତର ବେଢ଼ାରେ ପାର୍ଶ୍ୱରେ ଏକ ବିରାଟ କୁଣ୍ଡ 'ଡବରୁକ୍' ଦର୍ଶନ କଲୁ । ଶୁଣିବାକୁ ପାଇଲୁ ଯାତ୍ରୀଗଣ ସେଠାରେ ମାନସିକ ପୂରଣ ଉଦ୍ଦେଶ୍ୟରେ ଟଙ୍କା ଓ ଚାଉଳ ପକାଇଥାନ୍ତି ଓ ଉର୍ସ ଉତ୍ସବ ସମୟରେ ଏଠାରେ ରୋଷେଇ କରାଯାଇ ପ୍ରସାଦ ବିତରଣ କରାଯାଇଥାଏ । ଦର୍ଶନ ପରେ ସକାଳ ୮ ଘ. ୩୦ ମିନିଟରେ ଧର୍ମଶାଳାରେ ପହଞ୍ଚିଲୁ । ଲଗେଜ୍ ସଜାଇ ପ୍ରସାଦ ପାଇଁ ଧାଡ଼ିରେ ଠିଆ ହେଲାବେଳକୁ ଦେଖିଲୁ ସୁସ୍ୱାଦୁ ବ୍ୟଞ୍ଜନ ଶାଗର ପ୍ରସ୍ତୁତି ପାଇଁ ଯାତ୍ରୀଗଣ ଅପେକ୍ଷା କରିଛନ୍ତି । ଭାବିଲୁ ଯାହାହେଉ ମଇନୁଦ୍ଦିନ ଚିସ୍ତି ବାବାଙ୍କ ଦୟାରୁ ଆମର ବେଶି ଡ଼େରି ହୋଇନାହିଁ । ପ୍ରସାଦ ସେବନ କରି ଅଜମେର ଷ୍ଟେସନ୍‌ରେ ଅଟୋ ଯୋଗେ ପହଞ୍ଚିଲୁ । ଦିନ ୧୧ ଘଣ୍ଟା ୨୫ ମିନିଟରେ ଟ୍ରେନ୍ ଛାଡ଼ିଲା ଓ ସଂଧ୍ୟା ୫ ଘ. ୫ ମିନିଟରେ ଆବୁରୋଡ଼ ଷ୍ଟେସନ୍‌ରେ ପହଞ୍ଚାଇଲା । ଆବୁରୋଡ଼ ଷ୍ଟେସନ୍‌ଠାରୁ ସଂରକ୍ଷିତ ବସ୍ ଯୋଗେ ନାଥଦ୍ୱାରା ଯାତ୍ରାରମ୍ଭ କଲୁ । ଉଦୟପୁର-ଆଜମେର ରୋଡ଼ N.H. 8 ରେ ଗାଡ଼ି ଗତି କରୁଥାଏ । N.H. 8 ଶେଷ ହେବାପରେ ପାହାଡ଼ିଆ ଘାଟି ରାସ୍ତା ଓ ସ୍ଥାନେ

ସ୍ଥାନେ ମାଟି ରାସ୍ତା (ରାସ୍ତା କାମ ଚାଲିଥିବାରୁ) ଅତିକ୍ରମ କରି ରାତି ୧୦ଟାରେ ପହଞ୍ଚିଲୁ ନାଥଦ୍ୱାରା 'ଖଡ଼ାୟତ ଅତିଥି ଭବନ'ରେ । Advanced Partyଙ୍କ ଦ୍ୱାରା ପ୍ରସ୍ତୁତ ଉତ୍ତମ ପ୍ରସାଦ ସେବନ ପରେ ଦ୍ୱିତୀୟ ମହଲାର ୨୧୭ ନମ୍ବର କୋଠରୀରେ ପଟ୍ଟନାୟକ ବାବୁଙ୍କ ସହ ବିଶ୍ରାମ ନେଲୁ ।

***ତା. ୧୨.୧୧.୨୦୧୧, ଶନିବାର***

ପ୍ରାତଃ ୪ଟା ରୁ ପ୍ରସ୍ତୁତ ହୋଇ ମଙ୍ଗଳ ଆରତୀ ଦର୍ଶନ ଅଭିଳାଷରେ ଅଟୋରେ ଯାଇ ମନ୍ଦିର ସମ୍ମୁଖରେ ପହଞ୍ଚିଲୁ । ମନ୍ଦିରର ମୁଖ୍ୟ ଦ୍ୱାର ସମ୍ମୁଖରେ ୪ଘ. ୩୦ ମିନିଟରେ ପୁରୁଷ ଓ ମହିଳାଙ୍କ ଧାଡ଼ି ଲମ୍ବିଯାଇଥାଏ । ସକାଳ ୬ଟାରେ ମନ୍ଦିର ଖୋଲା ହେଲା । ହଠାତ୍ ଜଣେ ପୂଜକ ଆମ ପାଖରେ ପହଞ୍ଚି ଟ ୫୦.୦୦ ଙ୍କା ଟିକଟରେ ତୁରନ୍ତ ଦର୍ଶନ କରାଇ ଦେବାପାଇଁ କହିଲେ । ତ୍ରିପାଠୀ ଦମ୍ପତି, ନନ୍ଦ ଦମ୍ପତି ଓ ଆମେ ଦୁହେଁ ପୂଜକଙ୍କୁ ଅନୁସରଣ କଲୁ ଅସଂଖ୍ୟ ଜନଗହଳି ଭିତରେ । ପ୍ରବଳ ଜନସମାଗମ ସତ୍ତ୍ୱେ ଅତିକଷ୍ଟରେ ମଙ୍ଗଳ ଆରତୀ ଦର୍ଶନର ସୌଭାଗ୍ୟ ମିଳିଲା । ଜନଶ୍ରୁତିରୁ ଜଣାଯାଏ ଶ୍ରୀକୃଷ୍ଣଙ୍କୁ  ମଥୁରାରୁ ମିବାର ନେବା ରାସ୍ତାରେ ରଥର ଚକ ଏହି ସ୍ଥାନରେ ଅଟକିଗଲା, ତେଣୁ ୧୬୬୯ ଖ୍ରୀଷ୍ଟାବ୍ଦରେ ଏହି ସ୍ଥାନରେ ଶ୍ରୀକୃଷ୍ଣ ଶ୍ରୀନାଥ ନାମରେ ବିଖ୍ୟାତ ହୋଇ ପୂଜିତ ହେଲେ । ଗବେଷକଙ୍କ ମତରେ ଦ୍ୱାଦଶ ଶତାବ୍ଦୀରେ ଏହି କଳାମୁଗୁନିପଥରର ମୂର୍ତ୍ତି ନିର୍ମିତ । ଦ୍ୱାରକାଧୀଶଙ୍କ ଠାଣିରେ ବିରାଜମାନ ହୋଇଥିବା  ଶ୍ରୀନାଥଙ୍କ ଅପୂର୍ବ ରୂପ ଲାବଣ୍ୟ ଦର୍ଶନରେ ନୟନ ମନ ତୃପ୍ତ ହେଲା । କାଉଣ୍ଟରରୁ କିଛି ପ୍ରସାଦ ଓ ବାହାରୁ ଶ୍ରୀନାଥଙ୍କ ଫଟୋଚିତ୍ର କିଣି ଧର୍ମଶାଳା ଫେରିଲୁ । ସକାଳ ଦଶଟାରେ ମଧ୍ୟାହ୍ନ ପ୍ରସାଦସେବନ କରି ଉଦୟପୁର ଓ ହଳଦୀଘାଟି ଦର୍ଶନରେ ବାହାରି ପଡ଼ିଲୁ । ନାଥଦ୍ୱାରାଠାରୁ ଉଦୟପୁରର ଦୂରତା ୪୮ କିଲୋମିଟର । ମିବାରର ରାଣା ଉଦୟ ସିଂଙ୍କ ନାମରେ ନାମିତ ଏହି ସହରର ପ୍ରତି ଧୂଳିକଣାରେ ଅପୂର୍ବ ଦେଶଭକ୍ତିର ସ୍ମାରକୀ ପୂରି ରହିଛି । ଭଗବଦ୍ ଭକ୍ତିରୁ କିଛି ସମୟ ପାଇଁ ଦେଶଭକ୍ତିରେ ନିମଜ୍ଜିତ ହେଲୁ । ବିସ୍ମୟକର କାରୁକାର୍ଯ୍ୟପୂର୍ଣ୍ଣ ବିଶାଳ 'ମାନେକଚୌକ' ପରିଦର୍ଶନ କଲୁ । ପ୍ରତି ପ୍ରସ୍ତର ଗାତ୍ରରେ କଳା ନୈପୁଣ୍ୟ, ସୂକ୍ଷ୍ମାତିସୂକ୍ଷ୍ମ ଭୌଗୋଳିକ, ବୈଜ୍ଞାନିକ ଓ ପ୍ରତିରକ୍ଷା ସମ୍ବନ୍ଧୀୟ କୌଶଳ ପରିପୂର୍ଣ୍ଣ ଅବସ୍ଥାରେ ବିଦ୍ୟମାନ ଥିବା ସ୍ପଷ୍ଟ ବାରିହେଉଥିଲା । ଧନ୍ୟ ସେ ରାଜା, ଧନ୍ୟ ସେ ଶିଳ୍ପୀ ଓ ଶତବାର ଧନ୍ୟ ସେ ପ୍ରଜାଗଣ ଯାହାଙ୍କର ଝାଳପୋଛା ଧନରେ ନିର୍ମିତ ଏହି କୀର୍ତ୍ତିରାଜି ଯୁଗେ ଯୁଗେ ଇତିହାସର ସ୍ୱାକ୍ଷର ବହନ କରି ଦଣ୍ଡାୟମାନ । ଦିନ ଦିନ ବିତିଗଲେ

ଯେଉଁ କଳାକୃତିର କଳନା କରିବା ଅସମ୍ଭବ, ମାତ୍ର କେତେ ମିନିଟର ଦର୍ଶନର ସହସ୍ରାଂଶରୁ ଏକ ଅଂଶ ଅବଲୋକନ କରି ଅବାଧ ମନ ଓ ଅବୁଝା ଆଖିକୁ ବାଧ ହୋଇ ଫେରାଇ ଆଣିଲୁ । ତା'ପରେ ବସ୍ ଛୁଟିଲା ହଳଦୀଘାଟି ଅଭିମୁଖେ । ଉଦୟପୁର ଠାରୁ ହଳଦୀଘାଟିର ଦୂରତା ୧୬ କିଲୋମିଟର । ବସ୍‌ରୁ ଓହ୍ଲାଇ ପ୍ରଥମେ ଅପୂର୍ବ ବୀରତ୍ୱ, ଅନନ୍ୟ ଦେଶପ୍ରେମ, ତ୍ୟାଗ ଓ ନିର୍ଭିକତାର ମୂର୍ତ୍ତିମନ୍ତ ପ୍ରତୀକ ମହାରାଣା ପ୍ରତାପଙ୍କ ଦୁର୍ଗର ରକ୍ତଭିଜାମାଟିକୁ ମଥାରେ ଲଗାଇଲୁ । ବାହାରେ କିଛି ସମୟ ବୁଲାବୁଲି କରି ସଂଗ୍ରହାଳୟର ସଂଗୃହୀତ ଜିନିଷ ସବୁ ଦେଖିଲା ପରେ ଶାନ୍ତ, ସୁଶୀତଳ ଗୁମ୍ଫା ଆକାରର ମହଲ ଭିତରେ ଭିଡ଼ିଓ ସୋ' ଦେଖିବା ପାଇଁ ପ୍ରବେଶ କଲୁ । ରାଣା ଉଦୟ ସିଂଙ୍କ ରାଜତ୍ୱ ଠାରୁ ଆରମ୍ଭ କରି ମହାରାଣା ପ୍ରତାପଙ୍କ ବଳିଦାନ ପର୍ଯ୍ୟନ୍ତ ସମସ୍ତ ଐତିହାସିକ ଘଟଣାବଳୀର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଓ ଦୃଶ୍ୟ ବେଶ ଚିତ୍ତାକର୍ଷକ ଥିଲା । ମାତୃଭୂମି ଉଦ୍ଦେଶ୍ୟରେ ମହାରାଣା ପ୍ରତାପଙ୍କ କଣ୍ଠ ନିଃସୃତ ବାଣୀ ତାଙ୍କ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ତଳେ ମାର୍ବଲ ଫଳକରେ ଲିପିବଦ୍ଧ ହୋଇରହିଛି । ଲେଖାଟି ଏହିପରି ଥିଲା - ''ଜବତକ୍ ମୈଁ ଶତ୍ରୁଓଁ ସେ ଅପନୀ ପାବନ ମାତୃଭୂମିକା ମୁକ୍ତ ନହିଁ କରାଲେତା, ତବତକ ନ ତୋ ମୈଁ ମହଲୋଁ ମେଁ ରହୁଙ୍ଗା, ନ ଶଯ୍ୟାପର ଶୋଉଁଙ୍ଗା ଔର ନ ସୋନେ, ଚାନ୍ଦି ଅଥବା କିସି ଧାତୁ କେ ପାତ୍ର ମେଁ ଭୋଜନ କରୁଙ୍ଗା । ବୃକ୍ଷୋଁ କି ଛାବ ହିଁ ମେରେ ମହଲ, ଘାସ ହିଁ ମେରା ବିଛୋନା ଔର ପତ୍‌ତେ ହିଁ ମେରେ ଭୋଜନ  କରନେ କେ ପାତ୍ର ହୋଙ୍ଗେ ।'' (ରାଣାପ୍ରତାପ ସିଂ) । ଫେରିଲାବେଳେ 'ଗୋଗୁନ୍ଦାଷ୍ଟ', 'ଗୋବିନ୍ଦ ପ୍ୟାଲେସ୍' ରେ ଚା'ପାନ କରି ସାରିବା ପରେ ରାତି ୯ ଘ. ୩୦ ମିନିଟରେ ନାଥଦ୍ୱାରା ଧର୍ମଶାଳାରେ ପହଞ୍ଚିଲୁ । ରାତ୍ରି ପ୍ରସାଦ ସେବନ ପରେ ଶ୍ରୀନାଥଙ୍କର ଶ୍ରୀଚରଣରେ ପ୍ରଣାମ ଜଣାଇ ବିଶ୍ରାମ ନେଲୁ ।

**_ତା. ୧୩.୧୧.୨୦୧୧, ରବିବାର_**

ପ୍ରାତଃ ୪ଟା ସମୟରେ ନାଥଦ୍ୱାରାର ଆରାଧ୍ୟ ଦେବତା ଶ୍ରୀନାଥଜୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇ ସଂରକ୍ଷିତ ବସ୍ ଯୋଗେ ମାଉଣ୍ଟଆବୁ ଦର୍ଶନ ନିମନ୍ତେ ଯାତ୍ରା କଲୁ । ଆବୁରୋଡ଼ଠାରୁ ମାଉଣ୍ଟଆବୁରପ ଦୂରତା ୨୮ କି.ମି. । ଯିବା ରାସ୍ତାରେ 'ଭାବରୀ ଚୌରାୟା' ନାମକ ସ୍ଥାନରେ 'ମାଳି' ଧର୍ମଶାଳାରେ ମଧ୍ୟାହ୍ନ ପ୍ରସାଦ ସେବନ ପରେ ମାଉଣ୍ଟଆବୁ ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ରାଜସ୍ଥାନ ମରୁଭୂମିର ପ୍ରଚଣ୍ଡ ରୌଦ୍ରତାପ ଉପରକୁ ଉପରକୁ ଉଠିଲା ବେଳକୁ ଶୀତଳ ସମୀରରେ ପରିଣତ ହେଲାଭଳି ଅନୁଭୂତ ହେଲା । ଗାଡ଼ି ଅଟକିଲା ପ୍ରାକୃତିକ ଦୃଶ୍ୟରାଜି ପରିପୂର୍ଣ୍ଣ ସ୍ଥାନ 'ନକ୍କୀଝିଲ୍'

ନିକଟରେ । ଚତୁଃପାର୍ଶ୍ୱରେ ଆରାବଳୀ ପର୍ବତମାଳା ବେଷ୍ଟିତ, ଦର୍ଶକ ଭାବୁକ, ଲେଖକ ମନଲୋଭା, 'ନକ୍କୀଝିଲା'ର ସୌନ୍ଦର୍ଯ୍ୟ ଭାଷାରେ ବର୍ଣ୍ଣନା କରିବା କଷ୍ଟସାଧ୍ୟ । ଗଙ୍ଗା, ଯମୁନା ଓ ପୁଷ୍କର ହ୍ରଦ ଭଳି ଏହି ହ୍ରଦଟି ମଧ୍ୟ ତୀର୍ଥସ୍ଥାନର ମାନ୍ୟତା ପାଇଛି । ଜନଶ୍ରୁତିରୁ ଜଣାପଡ଼େ ପୂର୍ବେ ବାଲମ୍ ବାସିୟା ନାମକ ଏକ ସିଦ୍ଧ ପୁରୁଷ ନଖରେ ଖୋଳି ଏହି ହ୍ରଦଟି ନିର୍ମାଣ କରିଥିଲେ ବୋଲି ଏହାର ଏପରି ନାମକରଣ ହୋଇଛି । ଖର୍ଜୁର ବୃକ୍ଷ ଶୋଭିତ, ଆରାବଳୀ ପର୍ବତ ବେଷ୍ଟିତ ଓ ରମଣୀୟ ଦୃଶ୍ୟ ବିମଣ୍ଡିତ 'ନକ୍କୀ ଝିଲ୍' ପର୍ଯ୍ୟଟକଙ୍କ ମୁଖ୍ୟ ଆକର୍ଷଣର କେନ୍ଦ୍ରବିନ୍ଦୁ । ଅଳ୍ପ ସମୟ ପାଇଁ ସେହି ସୁଷମା ରାଜିରେ ଅବଗାହନ କରିସାରିବା ପରେ ଫେରିଆସି ପହଞ୍ଚିଲୁ ପ୍ରଜାପତି ବ୍ରହ୍ମକୁମାରୀ 'ଓଁ ଶାନ୍ତି ଭବନ' ରେ । ଏହା ଆନ୍ତଃରାଷ୍ଟ୍ରୀୟ ପ୍ରଜାପତି ବ୍ରହ୍ମାକୁମାରୀ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟ ନାମରେ ମଧ୍ୟ ବିଖ୍ୟାତ । ପାହାଡ଼ି ଝରଣା ବେଷ୍ଟିତ ଅପରୂପ ପ୍ରାକୃତିକ ସୌନ୍ଦର୍ଯ୍ୟ ସୁଶୋଭିତ ଶାନ୍ତ-କାନ୍ତ କମନୀୟ ପରିବେଶରେ ସ୍ଥାପିତ ବିଶାଳ ସୁରମ୍ୟ ପ୍ରାସାଦ ଓ ସୁଉଚ୍ଚ ତୋରଣ ଦର୍ଶନ, ପ୍ରବେଶ ମାତ୍ରକେ ଈଶ୍ୱର ସତ୍ତା ଉପଲବ୍ଧି ଉଦ୍ଦେଶ୍ୟରେ ମନକୁ ଟାଣି ନେଇଥିଲା । ପାହାଡ଼ ପରେ ପାହାଡ଼ ଅତିକ୍ରମ କରି ପହଞ୍ଚିଲୁ 'ଓଁ ଶାନ୍ତି ଭବନ'ର ମୁଖ୍ୟ ଆକର୍ଷଣ ପାଣ୍ଡବ ଭବନର ପବିତ୍ର କକ୍ଷରେ । ୧୯୮୩ ଖ୍ରୀଷ୍ଟାବ୍ଦରେ ନିର୍ମିତ 'ଓଁ ଶାନ୍ତି ଭବନ'ରେ ଏକତ୍ର ୩/୪ ହଜାର ଭକ୍ତଙ୍କ ସମାଗମ ପାଇଁ ସ୍ଥାନ ସଜ୍ଜିତ । 'ଓଁ ଶାନ୍ତି ଭବନ'ଟି ଏକତ୍ର ଉପବେଶନର କ୍ଷମତା ଦୃଷ୍ଟିରୁ ରାଜସ୍ଥାନରେ ପ୍ରଥମ, ଭାରତରେ ତୃତୀୟ ଓ ଏସିଆରେ ପଞ୍ଚମ ସ୍ଥାନ ଅଧିକାର କରିଥିବା ବିଷୟ ଗାଇଡ୍‌ଙ୍କ ଠାରୁ ଶୁଣିଲୁ । ଚରମ ବିସ୍ମୟର ବିଷୟ ଏହି ଯେ, ଏହି ପ୍ରାସାଦର ଛାତ ବିନା ସ୍ତମ୍ଭର ଆଶ୍ରୟରେ ନିର୍ମିତ । ଭିଡ଼ିଓ ମାଧ୍ୟମରେ ହିନ୍ଦୀ ଭାଷାରେ ଗାଇଡ୍ ଆମକୁ ଈଶ୍ୱରୀୟ ତତ୍ତ୍ୱ ବିଷୟରେ ପ୍ରାଞ୍ଜଳଭାବେ ପନ୍ଦର ମିନିଟ୍ ପର୍ଯ୍ୟନ୍ତ ବୁଝାଇଲେ । ବାହାର ବେଢ଼ାରେ ପ୍ରାଚୀରମାନଙ୍କର କାରୁକାର୍ଯ୍ୟ ରାଧାକୃଷ୍ଣ, ସୀତାରାମ, ବାଳକୃଷ୍ଣ ପ୍ରଭୃତି ଦେବଦେବୀଙ୍କୁ ଦର୍ଶନ କରି କିଛି ପୁସ୍ତକ କିଣି ଶାନ୍ତି ଉଦ୍ୟାନ ମଧ୍ୟ ଦେଇ ବସ୍ ନିକଟରେ ପହଞ୍ଚିଲୁ । ପ୍ରଜାପତି ବ୍ରହ୍ମାକୁମାରୀ ସଂସ୍ଥାର ଆରାଧ୍ୟ ଦେବତା ଶିବବାବାଙ୍କୁ ପ୍ରଣାମ ଜଣାଇ ବିଶ୍ୱ ପ୍ରସିଦ୍ଧ ଜୈନ ମନ୍ଦିରର 'ଦିଲ୍‌ୱାରା' ଅଭିମୁଖେ ଯାତ୍ରା କଲୁ । ଏକାଦଶ ଶତାବ୍ଦୀ ଠାରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ନିର୍ମିତ ଏହି ମନ୍ଦିରର ଶିଳ୍ପ ଭାସ୍କର୍ଯ୍ୟ ପୃଥିବୀରେ ବିରଳ । ଅନେକ ଗୁଡ଼ିଏ ଜୈନ ମନ୍ଦିର ମଧ୍ୟରୁ ବିମଲ ବାସହୀ ମନ୍ଦିର ସବୁଠାରୁ ପ୍ରାଚୀନ । ୧୦୩୧ ଖ୍ରୀଷ୍ଟାବ୍ଦରେ ମହାରାଜା ଭୀମ, ନିଜ ମନ୍ତ୍ରୀ ବିମଲ ଶାହଙ୍କ ଦ୍ୱାରା ଅଜସ୍ର ଧନ ସଂପତ୍ତି ହାତୀପିଠିରେ ବୋହି ଆଣି ଏହି ପର୍ବତ ଉପରେ ଅପୂର୍ବ କଳାକୃତିର ସ୍ୱାକ୍ଷର ବହନ କରିଥିବା

ମନ୍ଦିର ନିର୍ମାଣ କରାଇଥିଲେ । ସବୁ ମନ୍ଦିର ଶ୍ୱେତ ଶଙ୍ଖ ମଲ ମଲ ପଥରରେ ତିଆରି । କବାଟ, ଦ୍ୱାରବନ୍ଧ, କାନ୍ଥ, ଚଟାଣ ଓ ଚୂଡ଼ା ସବୁ ପ୍ରସ୍ତର ନିର୍ମିତ ଓ ପ୍ରତ୍ୟେକ ସ୍ଥଳରେ ସୂକ୍ଷ୍ମାତିସୂକ୍ଷ୍ମ କାରୁକାର୍ଯ୍ୟ ଖୋଦିତ । ବହିରେ ପଢ଼ିଲେ କିମ୍ବା ଫଟୋ ବା ଟି.ଭି. ପରଦାରେ ଦେଖିଲେ ଏହି ମନୋମୁଗ୍ଧକର ସୌନ୍ଦର୍ଯ୍ୟ ବିଶ୍ୱାସ କରିହେବ ନାହିଁ । ଏତେ ସୂକ୍ଷ୍ମ କଳା ପରିପାଟୀ ବିମଣ୍ଡିତ ଏହି ମନ୍ଦିରର ପ୍ରତି ସ୍ଥାନ ଚାଳିଶା' ବ୍ୟକ୍ତିଙ୍କ ପକ୍ଷେ ବିନା ଚଷମାରେ ଦେଖିବା ଓ ଉପଭୋଗ କରିବା ସମ୍ଭବ ନୁହେଁ । ବିମଲ ବସହି, ଲୁଣ ବସହି, ଶ୍ରୀ ଋଷଭ ଦେବଜୀ, ଶ୍ରୀ ପାର୍ଶ୍ୱନାଥଜୀ, ଶ୍ରୀ ମହାବୀର ସ୍ୱାମୀଜୀ ଭଳି ୫ଟି ମୁଖ୍ୟ ମନ୍ଦିର ମଧ୍ୟରୁ ଲୁଣ ବସହିର କଳା ପରିପାଟୀ ଅତୀବ ମନୋହର ଅଟେ । ବିଭିନ୍ନ ଦେବ-ଦେବୀ, ନୃତ୍ୟରତା ଦେବାଙ୍ଗନା, ପଶୁ-ପକ୍ଷୀ, ଫୁଲ-ଫଳ ଇତ୍ୟାଦି କଳାକୃତି ଗୁଡ଼ିକର ନିଖୁଣ କାରିଗରୀ ଶୈଳୀ ଜୀବନ୍ତ ମନେହୁଏ । ବାସ୍ତୁକଳା ଓ ଶିଳ୍ପକଳାରେ ଅଦ୍ୱିତୀୟ ଏଭଳି ମନ୍ଦିର ପୃଥିବୀରେ ବିରଳ । ଲୁଣ ବସହି ମନ୍ଦିର ଭିତରେ ଜେଠାନୀ କା ମନ୍ଦିର ଓ ଦେବରାନୀ କା ମନ୍ଦିର ଦୁଇଟି ବିଦ୍ୟମାନ । ଗାଇଡ୍‌ଙ୍କ କହିବାନୁସାରେ ଜେଠାନୀ (ବଡ଼ ଯାଆ) ଦେବରାନୀ (ସାନ ଯାଆ) ପ୍ରତି ଅସହିଷ୍ଣୁ ହେବାରୁ ଲୋକଙ୍କୁ ଶିକ୍ଷା ଦେବା ପାଇଁ ଜେଠାନୀଙ୍କ ମୂର୍ତ୍ତି ଦେବରାନୀଙ୍କ ମୂର୍ତ୍ତିଠାରୁ ଆପେ ଆପେ ଛୋଟ ଆକାର ପାଲଟି ଯାଇଛି । କିମ୍ବଦନ୍ତୀ ଯାହା ହେଉନା କାହିଁକି ବିଚକ୍ଷଣ କଳା ପରିପାଟୀ ତଥା କାରିଗରର କାରିଗରୀ ସ୍ପର୍ଶରେ ପାଷାଣ ଦେହରେ ପ୍ରାଣ ସଞ୍ଚାର ହୋଇଛି । ଶେଷରେ ଦିଲୱାରା ମନ୍ଦିର ପାଖକୁ ଆମକୁ ନେଇଗଲେ । ମନ୍ଦିର ଭିତରର ଗଠନ ଶୈଳୀ, କଳାଚାତୁରୀ ଦର୍ଶନ କରିବା ସମୟରେ ଗାଇଡ୍ ବର୍ଣ୍ଣନା କଲେ- ମନ୍ଦିର ତିଆରିରେ ଲାଗିଥିବା କାରିଗରମାନେ ଶଙ୍ଖ ମଲ୍‌ମଲ୍ ପଥରରେ ବଳି ପଡ଼ିଥିବା ଟୁକୁରା ଗୁଡ଼ିକୁ ଯୋଡ଼ି ଏକାଠି କରି ମଧ୍ୟାହ୍ନ ଭୋଜନ ବିରତି ସମୟରେ ବିଶ୍ରାମ ନ ନେଇ ଗୋଟିଏ ସୁନ୍ଦର ମନ୍ଦିର ତୋଳି ଠିଆ କରେଇଛନ୍ତି । ଆଲୋଚ୍ୟ ମନ୍ଦିରର କଳା-କୌଶଳ ରାଜା-ମହାରାଜା ଓ ମନ୍ତ୍ରୀଙ୍କ ଦ୍ୱାରା ନିର୍ମିତ ମନ୍ଦିର ଠାରୁ କୌଣସି ଦୃଷ୍ଟିରୁ ନ୍ୟୁନ ନୁହେଁ, ପରନ୍ତୁ ଏହି ମନ୍ଦିରର ଛତ୍ରେ ଛତ୍ରେ ଶ୍ରମିକର ଶ୍ରମଝାଳ, ନିଃସ୍ୱାର୍ଥ ତ୍ୟାଗ ପରିପୂର୍ଣ୍ଣ ହୋଇ ଯୁଗଯୁଗ ଧରି ଭାରତୀୟ ତ୍ୟାଗବାଦର ଆଦର୍ଶକୁ ଉଜ୍ଜୀବିତ କରି ରଖଛି, ଏଠାରେ ଏହି ପାଷାଣ ଶିଳ୍ପୀଙ୍କର କଳା ଚାତୁରୀ ଓ ଅଦମ୍ୟ ଉଦ୍ୟମ ଦେଖିଲେ ଆମ ଓଡ଼ିଶାର ସୂର୍ଯ୍ୟ ମନ୍ଦିର କୋଣାର୍କ କଥା ମନେପଡ଼େ । ରାଜା ଅକ୍ଲେଶରେ ଅକୁଣ୍ଠିତ ଚିତ୍ତରେ ଅଜସ୍ର ଅର୍ଥ ବ୍ୟୟ କରନ୍ତି ଇତିହାସରେ ଅମର ହୋଇ ରହିବା ପାଇଁ । ଇତିହାସ ସ୍ୱାକ୍ଷର ବହନ କରେ ନିର୍ମାତା ରାଜାଙ୍କ ନାମ, ବଂଶ ପରମ୍ପରା ଓ

ଗୁଣଗ୍ରାମକୁ, ଅଥଚ ଜୀବନକୁ ତିଳ ତିଳ କରି ଜାଳି, ଘର ପରିବାର ଠାରୁ ବର୍ଷ ବର୍ଷ ଧରି ଦୂରେଇ ରହି, ପଥର ସହିତ ପଥର ହୋଇ କୀର୍ତ୍ତି ତୋଳି ସାଇତି ରଖିଥିବା ଶିଳ୍ପୀ ସମସ୍ତଙ୍କ ପାଖରେ ଅପରିଚିତ ହୋଇ ରହିଯାଏ । ତେଣୁ ବିପ୍ଳବୀ କବି ସଚ୍ଚି ରାଉତରାୟ ସେଦିନ କୋଣାର୍କ ଦର୍ଶନରେ ଯାଇ ଗାଇ ଉଠିଥିଲେ-

''ଦେଖିଲା ଜଗତ ବିରାଟ ଦେଉଳ
ଘୋଷିଲା ରାଜାର ଜୟ
ପଣ୍ଡିତ କହେ ଦେଶର କୁଆଡ଼େ
ଲେଖା ଏଥି ପରିଚୟ ।
କେ ରସିକ କହେ ସୁନ୍ଦରୀ ନଟୀ
ଲୀଳାୟିତ ନୀବି ବନ୍ଧ,
ସ୍ୱତଃ ଶ୍ଳଥ ତା'ର କାଞ୍ଚୁଲି ତଳେ
ପଦ୍ମକୋରକ ଛନ୍ଦ ।
କିଏ ଦେଖେ ନାଗ କନ୍ୟାର ଗଳେ
ରତି ଚ୍ୟୁତ ବନମାଳା,
ଯକ୍ଷ ବଧୂର କବରୀରେ କିଏ
ଶତ ରାତ୍ରିର ଜ୍ୱାଳା ।

ପଚାରିନି କିଏ କେତେ ବା ଜୀବନ
ସେ ଲାଗି ହୋଇଛି କ୍ଷୟ
କେତେ ବା ନିହାଣ କରତ, କୁଠାର
ଲଭିଅଛି ପରାଜୟ ।
କେତେ କ୍ଷୁଧାତୁର ମଣିଷ ଖାଇଛି
କ୍ଷୁଧାରେ ସେ ଦିନ ମାଟି,
ଅଥଚ କଳାର ଦରବାରେ ତା'ର
ନାହିଁ କିଛି ପରିପାଟୀ ।
ନାହିଁ ତା ଚରଣ ଲିପି, ଶିଳ୍ପ ରହିଛି, ନାହିଁ ନାହିଁ ସେଠି
କଳାକାର ବା ଶିଳ୍ପୀ ।''

ବୋଧହୁଏ ଉପରୋକ୍ତ ଭାବନା ଉପରେ ଗୁରୁତ୍ୱ ଦେଇ କେତେଜଣ ଶିଳ୍ପୀଙ୍କ ମନରେ କାଳଜୟୀ ହୋଇ ରହିବାର ପ୍ରବଳ ବାସନାର ଫଳ ସ୍ୱରୂପ ସେଠାରେ ସେହି ମନ୍ଦିର

ଗଢ଼ାଯାଇଥିଲା - ଏହା ନିଃସନ୍ଦେହ । ସେଠାରେ କିଛି ସମୟ ରହି ବିଶ୍ରାମ ବିବର୍ଜିତ ମହାନ୍ ବ୍ୟକ୍ତିତ୍ୱର ପରିଚୟ ଦେଉଥିବା ଶିଳ୍ପୀଗଣଙ୍କ କଳାମନ୍ଦିର ଉପରେ ଠିଆହୋଇ ତାଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ନୁଆଁଇ ଫେରିଲୁ । ଦିଗମ୍ବର ଜୈନ ମନ୍ଦିର ଓ କାଚରେ ତିଆରି ଅନ୍ୟ ଏକ ମନ୍ଦିର ଆମର କେତେଜଣ ତୀର୍ଥ ସାଥୀ ଯାଇଥିଲେ, ଆମେ ସେହି ଦୁଇଟି ମନ୍ଦିର ଦର୍ଶନରୁ ବଞ୍ଚିତ ହୋଇଥିଲୁ । ବସ୍‌ରେ ଫେରିଲୁ ଆବୁରୋଡ଼ ରାଜରାସ୍ତା ନିକଟରେ । ଆବୁରୋଡ଼ଠାରୁ ପାଲାନପୁର ଯିବା ଆମର ଲକ୍ଷ୍ୟ ଥିଲା । ରାଜସ୍ଥାନ ଓ ଗୁଜରାଟ ସୀମା ପାର ହେବା ପାଇଁ ଏଠାରେ ଟ୍ୟାକ୍‌ସିର ବ୍ୟବସ୍ଥା କରାଯାଇଥିଲା । ପାଲାନପୁର ଷ୍ଟେସନ୍‌ରୁ ବାହାରି ରାତି ଦୁଇଟାରେ ଅହମ୍ମଦାବାଦରେ ପହଞ୍ଚିଲୁ ।

### ତା. ୧୪.୧୧.୨୦୧୧, ସୋମବାର

ସାଢ଼େ ଦୁଇଟା ରାତିରେ ଅହମ୍ମଦାବାଦର "ମେଟ୍ରୋପୋଲ" ଲଜିଂରେ ପହଞ୍ଚିଲୁ । ସେଠାରେ ୧୦୪ ନମ୍ବର କୋଠରୀରେ ଆମର ଓ ପଟ୍ଟନାୟକ ଦମ୍ପତିଙ୍କ ପାଇଁ ବ୍ୟବସ୍ଥା ହୋଇଥିଲା । ମଧ୍ୟାହ୍ନ ୧୨ଟା ସୁଦ୍ଧା ପ୍ରସାଦ ସେବନ କରି ସଂରକ୍ଷିତ ବସ୍ ଯୋଗେ ଦର୍ଶନୀୟ ସ୍ଥାନ ଭ୍ରମଣରେ ବାହାରି ପଡିଲୁ । ପ୍ରଥମେ ପହଞ୍ଚିଲୁ ଶାନ୍ତି, ମୁକ୍ତି, ପ୍ରଗତିର ବାଣୀ ପ୍ରଚାରକ ସାବରମତୀ ସନ୍ଥ ବାପୁଜୀଙ୍କ ଆଶ୍ରମରେ । ୨୦୦୦ ମସିହାରେ ପବିତ୍ର ଗାନ୍ଧୀ ଜୟନ୍ତୀ ଅବସରରେ ବାପୁଙ୍କ ଆଶ୍ରମ ଦର୍ଶନର ସୌଭାଗ୍ୟ ଲାଭ କରିଥିଲୁ । ଏଗାର ବର୍ଷର ବ୍ୟବଧାନ ମଧ୍ୟରେ ଆଶ୍ରମର ଯଥେଷ୍ଟ ଉନ୍ନତି ହୋଇଥିବା ଲକ୍ଷ୍ୟ କଲୁ । ସ୍ୱାଧୀନତା ସଂଗ୍ରାମର ଏନ୍ତୁଡ଼ିଶାଳ ବୋଲାଯାଉଥିବା ଏହି ଆଶ୍ରମର ସଂଗ୍ରହାଳୟରେ ସଂରକ୍ଷିତ ବାପୁ ଓ ବା'ଙ୍କ ବ୍ୟବହୃତ ସାମଗ୍ରୀ, ଇଂରେଜ ଶାସନାଧୀନ ଭାରତର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀର ଫଟୋଚିତ୍ର, ଗାନ୍ଧିଜୀଙ୍କ ବିଦେଶଯାତ୍ରା ସମ୍ବନ୍ଧୀୟ ଚିତ୍ରାବଳୀ ବୁଲାବୁଲି କରି ଦେଖିଲୁ । ଇସ୍କନ ଆୟୋଜିତ ତୀର୍ଥଯାତ୍ରା ମାଧ୍ୟମରେ ଆମେ ଭାରତବର୍ଷର ପ୍ରାୟତଃ ସମସ୍ତ ଆଶ୍ରମ ଭ୍ରମଣର ସୁଯୋଗ ପାଇଆସିଛୁ । ବିଭିନ୍ନ ଧର୍ମ, ସଂପ୍ରଦାୟ, ଗୁରୁଙ୍କ ଆଶ୍ରମରେ ପ୍ରବେଶ ଓ ଦର୍ଶନ - ଇସ୍କନ ସଂସ୍ଥାର ଦୂରଦର୍ଶିତାର ପ୍ରମାଣ ବହନ କରେ । ଆଶ୍ରମ ଭିତରେ ଏବଂ ସାବରମତୀ ନଦୀ କୂଳରେ କିଛି ସମୟ ବୁଲାବୁଲି କରିବାପରେ 'ଗାନ୍ଧି ସ୍ମାରକ ସଂଗ୍ରହାଳୟ'ରୁ କୋଡୋଟି ବହି ଓ  ଉପହାର ସାମଗ୍ରୀ କିଣି ଅନ୍ୟ ଏକ ଲକ୍ଷ୍ୟସ୍ଥଳକୁ ଯିବା ପାଇଁ ବାହାରିଲୁ । ଦ୍ୱିତୀୟରେ ପହଞ୍ଚିଲୁ ଆଶାରାମ ବାପୁଙ୍କ ଆଶ୍ରମରେ । ବିରାଟ ଆୟତନ ବିଶିଷ୍ଟ ଆଶ୍ରମର ଶାନ୍ତ, ସୁଶୀତଳ ପରିବେଶରେ ବୁଲାବୁଲି କଲୁ ।

ଅଖଣ୍ଡ ନାମ ସଂକୀର୍ତ୍ତନ ସ୍ଥାନରେ କିଛି ମୁହୂର୍ତ୍ତ ପାଇଁ ବସିଲୁ । ଛୋଟ ବଡ଼ ମନ୍ଦିର ଦର୍ଶନ କଲୁ । ଆଶାରାମ ବାପୁଙ୍କ ଆଶ୍ରମରେ ପ୍ରାୟ ପ୍ରତ୍ୟେକ ଜିନିଷ ସୁଲଭ ଦରରେ (ବଜାରଠାରୁ ଶସ୍ତା) ମିଳୁଥିବାରୁ ଆମ ଯାତ୍ରୀଗଣ ଦୋକାନ ବଜାରରେ ଭିଡ଼ ଜମାଇ ଦେଇଥିଲେ । ଅଳ୍ପ କେତେଟି ପୁସ୍ତକ କିଣି 'ଅକ୍ଷରଧାମ' ଯିବା ଉଦ୍ଦେଶ୍ୟରେ ବସ୍‌ରେ ବସିଲୁ । ସୋମବାର ଦିନ ଅକ୍ଷରଧାମ ବନ୍ଦ ବୋଲି ଶୁଣି ହତାଶ ହେଲୁ । ଭାରତ ପ୍ରସିଦ୍ଧ ସ୍ୱାମୀ ନାରାୟଣ ମନ୍ଦିର ଅକ୍ଷରଧାମ ପୂର୍ବରୁ ଦେଖିଥିବା ଯୋଗୁଁ ମନକୁ ବୁଝାଇନେଲୁ । ଅହମ୍ମଦାବାଦ ସହରର ମୁଖ୍ୟ ରାସ୍ତାରେ ତ୍ରିକୂଟ ପର୍ବତ ଓ ଗୁମ୍ଫା ଭଳି କୃତ୍ରିମ ପର୍ବତ ଓ ଗୁମ୍ଫାରେ ଅବସ୍ଥାପିତ ମାତା ବୈଷ୍ଣୋଦେବୀଙ୍କୁ ଦର୍ଶନ କଲୁ । ମନୁଷ୍ୟ ତିଆରି ଗୁମ୍ଫାର ଗଠନ ଶୈଳୀ ବାସ୍ତବିକ ବଡ଼ ଚମତ୍କାର ଭଳି ଜଣାଗଲା । ଚତୁର୍ଥରେ ପହଞ୍ଚିଲୁ ବିରାଟ ଆୟତନ ବିଶିଷ୍ଟ ଶ୍ରୀ ବାଲାଜୀ ମନ୍ଦିରରେ । ଶ୍ରୀ ବାଲାଜୀ ଓ ମାତା ମହାଲକ୍ଷ୍ମୀଙ୍କୁ ଦର୍ଶନ କରି ଶେଷରେ ଇସ୍କନ ମନ୍ଦିର ଅଭିମୁଖେ ଗତି ଗଲୁ । ଇସ୍କନ ମନ୍ଦିରରେ ସାଂଧ ଆରତୀ ସମୟରେ ଘଣ୍ଟେ ଦେଢ଼ଘଣ୍ଟା ଉପସ୍ଥିତ ରହି ଶ୍ରୀରାଧାମାଧବଙ୍କ ବେଢ଼ା ପରିକ୍ରମା କଲୁ । ରାତି ୮ଟାରେ ସମସ୍ତ ଦର୍ଶନୀୟ ସ୍ଥାନ ଭ୍ରମଣ କରି ଅହମ୍ମଦାବାଦ ଷ୍ଟେସନରେ ପହଞ୍ଚିଲୁ ରାତି ଦଶଟାରେ । S-୧ ବଗିରେ ୫୭ ଓ ୫୮ ନମ୍ବର ସିଟ୍‌ରେ ରାତ୍ରି ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ ।

### ତା. ୧୫.୧୧.୨୦୧୧, ମଙ୍ଗଳବାର

ଆମ ଲକ୍ଷ୍ୟସ୍ଥଳ ଭେରାଭଲ ଷ୍ଟେସନ୍‌ରେ ସକାଳ ୬ ଘ. ୨୦ ମିନିଟ୍‌ରେ ଗାଡ଼ିରୁ ଓହ୍ଲାଇଲୁ । ନିଜ ବ୍ୟବସ୍ଥାରେ ଶ୍ରୀ ସୋମନାଥ ଟ୍ରଷ୍ଟ ଗେଷ୍ଟ ହାଉସ୍‌ରେ ପହଞ୍ଚିଲୁ । ସେହି ଗେଷ୍ଟ ହାଉସ୍‌ରେ ରୁମ୍ ପାଇବା ସମୟ ଦିନ ୧୨ଟା ହୋଇଥିବା ଯୋଗୁଁ ଯାତ୍ରୀମାନଙ୍କର ସ୍ନାନ, ଶୌଚାଦି ନିତ୍ୟକର୍ମ ସମାପନ ପାଇଁ ପୁରୁଷମାନଙ୍କ ପାଇଁ ୧୦ଟି ଓ ମହିଳାମାନଙ୍କ ପାଇଁ ୧୦ ଟି ରୁମର ବ୍ୟବସ୍ଥା ସହୃଦୟ ଆୟୋଜକ ଇସ୍କନ ବାବା ମହୋଦୟ କରିଥିଲେ । ଯଥା ସମୟରେ ନିତ୍ୟକର୍ମ ସମାପନ କରି ପ୍ରସିଦ୍ଧ ଜ୍ୟୋତିର୍ଲିଙ୍ଗ ପ୍ରଭାସପାଟଣସ୍ଥିତ ଶ୍ରୀ ଶ୍ରୀ ସୋମନାଥ ମହାଦେବଙ୍କ ଦର୍ଶନ କଲୁ । ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଭ୍ରମଣରେ ଅଟୋ ଯୋଗେ ବାହାରିଲୁ । ପ୍ରଥମେ ଲକ୍ଷ୍ମୀନାରାୟଣ ମନ୍ଦିର, ତା'ପରେ ତ୍ରିବେଣୀ ସଙ୍ଗମ (ହିରଣ୍ୟା, ସରସ୍ୱତୀ, କପିଳା), ତା'ପରେ ଗୀତା ମନ୍ଦିର, ଶ୍ରୀକୃଷ୍ଣଙ୍କ ଚରଣ ପାଦୁକା, ଶ୍ରୀ ଗୋଲକ ଘାଟ, ଶ୍ରୀ କାଶୀ ବିଶ୍ୱନାଥ, ମହାପ୍ରଭୁଜୀକୀ ବୈଠକ (ବଲ୍ଲଭାଚାର୍ଯ୍ୟଙ୍କ ସମାଧି), ଶ୍ରୀ ଭୀମନାଥ ମନ୍ଦିର, ଶ୍ରୀ ବଳଦେବଜୀକା ଗୁମ୍ଫା, ଭୀଲ ତୀର୍ଥ ଓ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ

ଶାରଦା ମଠ ଇତ୍ୟାଦି ଦର୍ଶନ କଲୁ । ସଂଧ୍ୟାରେ ପୁଣି ଥରେ ସଂକୀର୍ତ୍ତନ ମଣ୍ଡଳୀ ସହ ଏହି ମନ୍ଦିର ଗୁଡ଼ିକ ଦର୍ଶନ କଲୁ ଓ ଶ୍ରୀ ସୋମନାଥଙ୍କ ସାଂଧ୍ୟ ଆରତୀ ଦର୍ଶନ କଲୁ ।

***ତା. ୧୬.୧୧.୨୦୧୧, ବୁଧବାର***

ବଙ୍ଗୋପସାଗରର କୂଳସ୍ଥ ଶ୍ରୀ ଜଗନ୍ନାଥ ଓ ଆରବସାଗର କୂଳସ୍ଥ ଶ୍ରୀ ସୋମନାଥ ଏହି ଦୁଇ ଠାକୁରଙ୍କୁ ଯେତେଥର ଦର୍ଶନ କଲେ ମଧ୍ୟ ତୃପ୍ତି ଆସେ ନାହିଁ । ସୁଯୋଗ ଥିଲେ ହାତଛଡ଼ା କରିବାକୁ ମଧ ଇଚ୍ଛା ନଥାଏ । ତେଣୁ ପ୍ରାତଃ ୪ଟାରୁ ଉଠି ସଜବାଜ ହୋଇ ମନ୍ଦିରାଭିମୁଖୀ ହେଲୁ । ଶ୍ରୀ ସୋମନାଥ ଟ୍ରଷ୍ଟର ଶେଠ୍ ମୁଙ୍ଗଦ୍‌ରାମ ଢେିପୁରିଆ ଅତିଥି ଗୃହରେ କେବଳ ଆମ ପାଇଁ ୭୩ ନମ୍ବର ରୁମ୍‌ର



ଶ୍ରୀ ସୋମନାଥ (ଗୁଜରାଟ) ତା. ୧୬.୧୧.୨୦୧୧

ବ୍ୟବସ୍ଥା ହୋଇଥିଲା । ରାସ୍ତାର ଅପର ପାର୍ଶ୍ୱରେ ଅହଲ୍ୟା ବାଈ ସୋମନାଥ ଟ୍ରଷ୍ଟ ଧର୍ମଶାଳାରେ ପ୍ରସାଦ ରନ୍ଧନର ବ୍ୟବସ୍ଥା କରାଯାଇଥିଲା । ଇସ୍କନ ବାବା ମାନଙ୍କର ଅପାର କରୁଣାରୁ ପ୍ରତ୍ୟେକ ପୀଠରେ ଆମେ ମନ୍ଦିର ନିକଟରେ ଧର୍ମଶାଳା ପାଉଥିଲୁ ତେଣୁ ପାଦରେ ଚାଲି ଯିବା ଆମ ପକ୍ଷେ ସମ୍ଭବପର ହୋଇପାରୁଥିଲା । ପ୍ରାତଃ ୫ ଘ. ୩୦ ମିନିଟ୍‌ରେ ମୁଖ୍ୟ ଫାଟକ ପାଖରେ ପହଞ୍ଚିଲାବେଳକୁ ସେଠାରେ ଥିବା ଦ୍ୱାର ରକ୍ଷୀ ସକାଳ ୬ଟାରେ ଦ୍ୱାର ଖୋଲା ହେବାର ସୂଚନା ଦେଲେ । ଠିକ୍ ସମୟରେ ମୁଖ୍ୟ ଦ୍ୱାର ଖୋଲା ହେଲା । ଭିତରବେଢ଼ାରେ କର୍ଡନ ଭିତରେ ଧାଡ଼ିରେ ଠିଆହେବାକୁ ପଡ଼ିଲା । ଶଙ୍ଖ, ଘଣ୍ଟ ଧ୍ୱନି ପରେ ଗର୍ଭଗୃହର କବାଟ ଖୋଲିଲା । ଦଧି, ଦୁଗ୍ଧ, ଘୃତ, ମହୁ ଓ ଜଳରେ ଶ୍ରୀ ଶ୍ରୀ ସୋମନାଥଙ୍କୁ ସ୍ନାନ କରାଗଲା । ତା'ପରେ ମାଠିଆ ମାଠିଆ ପାଣି ମସ୍ତକ ଉପରେ ଢ଼ଳାଗଲା । ଉଜ୍ଜୟିନୀରେ ଶ୍ରୀ ଶ୍ରୀ ମହାକାଳେଶ୍ୱର ଭସ୍ମବେଶ ଓ ଆରତୀ ଦୂରଦର୍ଶନ ମାଧ୍ୟମରେ ଦେଖିଥିଲୁ । ବର୍ତ୍ତମାନ ଅତି ନିକଟରୁ ପ୍ରତ୍ୟକ୍ଷ ଭାବେ ଏହି ଦୃଶ୍ୟ ଦର୍ଶନର ସୌଭାଗ୍ୟ ଲାଭ କଲୁ । ମହାସ୍ନାନ ପରେ ଆରମ୍ଭ ହେଲା ଶୃଙ୍ଗାର । ପଲକ ଉଠିବା ବେଳକୁ ଅତି କ୍ଷିପ୍ର ବେଗରେ ବେଲପତ୍ର ଓ ଅରଖଫୁଲରେ ପୂଜକମାନେ ମନଲୋଭା ବେଶରେ ବାବା ଭୋଳାନାଥଙ୍କୁ ସଜାଇ ଦେଲେ । ସ୍ନାନ, ଶୃଙ୍ଗାର ପରେ ଆରତୀ ଆରମ୍ଭ ହେଲା ଦୀର୍ଘ ସମୟର ଏହି ଆରତୀ କାର୍ଯ୍ୟକ୍ରମରେ ଇସ୍କନ ବାବାମାନଙ୍କର ସୁଦୟାରୁ ଆମେ ସାମିଲ ହୋଇପାରିଥିବାରୁ ଇସ୍କନ ବାବା ମାନଙ୍କୁ କୃତଜ୍ଞତା ଜଣାଇଲୁ ଓ ନିଜକୁ ଧନ୍ୟ ମନେକଲୁ । ଦିନ ୧୦ଟାରେ ମଧ୍ୟାହ୍ନ ପ୍ରସାଦ ସେବନ କରି ସଂରକ୍ଷିତ ବସ୍ ଯୋଗେ ଦ୍ୱାରକା ଯାତ୍ରା କଲୁ । ଦ୍ୱାରକା ଯିବା ରାସ୍ତାରେ ପ୍ରଥମେ ଶ୍ରୀକୃଷ୍ଣଙ୍କ ଶରବିଦ୍ଧ ସ୍ଥାନ ଓ ଶ୍ରୀ ପର୍କଟେଶ୍ୱର ମହାଦେବଙ୍କୁ ଦର୍ଶନ କଲୁ । ତା'ପରେ ଯାଇ ପହଞ୍ଚିଲୁ ଅନ୍ୟ ଏକ ତୀର୍ଥସ୍ଥାନ ଜାତିର ପିତା ମହାତ୍ମା ଗାନ୍ଧିଙ୍କ ଜନ୍ମପୀଠରେ । ପୂର୍ବରୁ ଥରେ ଦେଖିବା ସୁଯୋଗ ପାଇଥିଲୁ । ବର୍ତ୍ତମାନ ଜନ୍ମସ୍ଥାନ, ପ୍ରାଚୀନ କୋଠା, ନବନିର୍ମିତ ତ୍ରି-ତଳ ପ୍ରାସାଦ, ସଂଗ୍ରହାଳୟ ବୁଲାବୁଲି କରି ଫେରିଲୁ । ଗାନ୍ଧି ଜନ୍ମପୀଠ ପୋରବନ୍ଦରସ୍ଥ ମହାତ୍ମାଙ୍କ ବାସଭବନରେ ଯେଉଁଠାରେ ଏହି ବିଶ୍ୱପ୍ରସିଦ୍ଧ ମହାମାନବ ଭୂମିଷ୍ଠ ହୋଇଥିଲେ ଠିକ୍ ସେହି ନିର୍ଦ୍ଦିଷ୍ଟ ସ୍ଥାନରେ କାନ୍ଥରେ ଲେଖାଥିବା ଲେଖାଟି ଏଠାରେ ଉଦ୍ଧାର କରୁଛି ।



ଶ୍ରୀ ସୋମନାଥ ମନ୍ଦିର (ଗୁଜରାଟ) ତା. ୧୬.୧୧.୨୦୧୧

''ସାଁସ ସାଁସ ପେ ରାମ କହୋ
ବୃଥା ସାଁସ ମତ ଖୋୟ
ନା ଜାନେ ୟା ସାଁସେ କୋ
ଆବନ ହୋୟ ନ ହୋୟ ।'' (କବୀର)

ଜାତିର ପିତା ଅହିଂସାର ପୂଜାରୀ ମହାମାନବ ମହାତ୍ମା ଗାନ୍ଧିଙ୍କୁ ପ୍ରଣାମ ଜଣାଇ ସୁଦାମାପୁରୀ ଅଭିମୁଖେ ଅଟୋରେ ଗମନ କଲୁ । ସୁଦାମାପୁରୀ ଭକ୍ତ ସୁଦାମାଙ୍କ ମନ୍ଦିର ଓ ଅଙ୍କା ବଙ୍କା ହୋଇ ସିମେଣ୍ଟ ଚଟାଣରେ ତିଆରି କର୍‌ାଯାଇଥିବା ବ୍ରଜ ଚୌରାଅଶୀ ବୋଲାଯାଉଥିବା ଏକ ପ୍ରହେଳିକା ଭଳି ଜଣାଯାଉଥିବା ସ୍ଥାନକୁ ପ୍ରଦକ୍ଷିଣ କଲୁ । ନିବିଡ଼ ବନ୍ଧୁତାର ସ୍ମାରକୀ ସ୍ୱରୂପ ମନ୍ଦିରରେ ବିକ୍ରି ହେଉଥିବା ଚୁଡ଼ା ଭଜା ପ୍ୟାକେଟ୍‌ଟିଏ କିଣି ଅଟୋ ଯୋଗେ ବସ୍ ରହିବା ସ୍ଥାନକୁ ଗଲୁ । ରାସ୍ତାରେ ଦ୍ୱାରକାର ୫୦ କି.ମି. ପୂର୍ବରୁ 'ଦିଲିସା' ନାମକ ସ୍ଥାନରେ 'ହୋଟେଲ କାନ୍ଦରୀ କୃପା' ରେ ସାନ୍ଧ୍ୟ ଚା' ପାନ କଲୁ । ସଂଧ୍ୟା ୭ ଘଣ୍ଟା ସମୟରେ ଦ୍ୱାରକାର ଭାରତ ସେବାଶ୍ରମ ସଂଘ ଧର୍ମଶାଳାରେ ପହଞ୍ଚିଲୁ । ସେଦିନ ସଂକ୍ରାନ୍ତି ହୋଇଥିବା ଯୋଗୁଁ ସ୍ୱାଦିଷ୍ଟ ପୁରି-ତରକାରୀ ଓ କ୍ଷୀରି ପ୍ରସାଦ ସେବନ କରି ଦ୍ୱାରକାଧୀଶଙ୍କୁ ସ୍ମରଣ କରି ୬ ଜଣ ଲେଖାଏଁ ଯାତ୍ରୀ ଗୋଟିଏ ଗୋଟିଏ ରୁମ୍‌ରେ ବିଶ୍ରାମ ନେଲୁ ।

## ତା. ୧୭.୧୧.୨୦୧୧, ଗୁରୁବାର

ସକାଳ ୬ଟା ପୂର୍ବରୁ ସ୍ନାନାଦି ନିତ୍ୟକର୍ମ ଶେଷ କରି ଶ୍ରୀ ସ୍ୱାଇଁ ଦମ୍ପତିଙ୍କ ସହ ଅଟୋଯୋଗେ ଦ୍ୱାରକାଧୀଶ ମନ୍ଦିର ଅଭିମୁଖେ ବାହାରିଲୁ । ଲମ୍ବା ଧାଡ଼ିରେ ପାଖାପାଖି ଘଣ୍ଟାଏ ଅପେକ୍ଷା କରିବାପରେ ମନ୍ଦିର ବେଢ଼ାରେ ପ୍ରବେଶ କଲୁ । ଅସମ୍ଭବ ଭିଡ଼ ଭିତରେ ମଙ୍ଗଳ ଆରତୀ ଦର୍ଶନ କଲୁ। ତ୍ରି-ଭୁବନ ସୁନ୍ଦର ରସରାଜ ଦ୍ୱାରକାଧୀଶଙ୍କ ଚତୁର୍ଦ୍ଧାମୂର୍ତ୍ତି ସଂଦର୍ଶନରେ ନୟନ ମନ ଶାନ୍ତି ଲାଭକଲା । ନିକଟସ୍ଥ ଘାଟରୁ ଜଳ ସିଞ୍ଚନ କରି ବସାକୁ ଫେରିଲୁ । ମଧ୍ୟାହ୍ନ ପ୍ରସାଦ ସେବନ ପରେ ଭେଟ ଦ୍ୱାରିକା ଅଭିମୁଖେ ଯାତ୍ରାରମ୍ଭ ହେଲା । ଯିବା ରାସ୍ତାରେ ପ୍ରଥମେ ପହଞ୍ଚିଲୁ ରୁକ୍ମିଣୀଜୀଙ୍କ ମନ୍ଦିରରେ । ଏଠାରେ ଗାଇଡ୍‌ଙ୍କଠାରୁ ଦୁର୍ବାସା ଋଷିଙ୍କ ଅଭିଶାପ ଯୋଗୁଁ ଦ୍ୱାରୀକାଧୀଶଙ୍କ ଠାରୁ ଦେବୀ ରୁକ୍ମିଣୀଙ୍କ ବିଚ୍ଛେଦ ଘଟିଛି ଓ ଦ୍ୱାରକାର ଦଶକୋଶ ଆୟତନର ପାଣି କ୍ଷାରଯୁକ୍ତ ହୋଇଥିବା ବିଷୟ ଶୁଣିଲୁ । ରୁକ୍ମିଣୀଜୀଙ୍କ ମନ୍ଦିରରୁ ବିଦାୟ ନେଇ ପ୍ରସିଦ୍ଧ ଜ୍ୟୋତିର୍ଲିଙ୍ଗ ଶ୍ରୀ ନାଗେଶ୍ୱର ମହାଦେବଙ୍କ ନିକଟରେ ପହଞ୍ଚିଲୁ । ଦାରୁକା ବନର ଶ୍ରୀନାଗେଶ୍ୱର ସ୍ୱଚ୍ଛନ୍ଦରେ ଦର୍ଶନ କଲୁ । ବେଢ଼ା ପରିକ୍ରମା ପରେ ନିକଟସ୍ଥ 'ଗୋପୀ ତାଲାବ'ରେ ପହଞ୍ଚିଲୁ । ଶୁଦ୍ଧ ପ୍ରେମଭକ୍ତି ସ୍ୱରୂପା ଷୋହଳ ସହସ୍ର ଗୋପନାରୀଙ୍କ ସ୍ନାନରେ ପବିତ୍ର ହୋଇଥିବା ଜଳ ମଥାରେ ସିଞ୍ଚନ କଲୁ । ଗୋପୀ ତିଳକ ମାଟି କିଣି ଭେଟ ଦ୍ୱାରକା ଅଭିମୁଖେ ଗମନ କଲୁ । ଭେଟ ଦ୍ୱାରକାରେ ପହଞ୍ଚିବାବେଳକୁ ସଂଧ୍ୟା ଆଗତ ପ୍ରାୟ । ତରବରରେ ମୋଟର ଲଞ୍ଚରେ ଯାଇ ଭେଟ ଦ୍ୱାରକାରେ ପହଞ୍ଚିଲୁ । ବିରାଟ ଆୟତନ ବିଶିଷ୍ଟ ଭେଟ ଦ୍ୱାରକାର ମୁଖ୍ୟ ଦ୍ୱାରକାଧୀଶ ମନ୍ଦିର ଓ ଗଳିକନ୍ଦିର ସମସ୍ତ ମନ୍ଦିର ପରିକ୍ରମା ଶେଷ କରିବା ପରେ ଲଞ୍ଚ ନିକଟରେ ପହଞ୍ଚିଲୁ । ଶଙ୍ଖଦ୍ୱାର କ୍ଷେତ୍ର ନାମରେ ନାମିତ ଏହି ତୀର୍ଥସ୍ଥାନର ମହିମା ଓ ସାଂଧ୍ୟ ଆରତୀ ଦର୍ଶନ ଗାଇଡ୍‌ଙ୍କ ଦ୍ୱାରା ଅତି ସହଜରେ ହୋଇପାରିଥିଲା । ଜଳଭାଗରୁ ସ୍ଥଳଭାଗକୁ ଯିବା ପାଇଁ ସମସ୍ତ ଯାତ୍ରୀମାନଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲିଥାଏ । ଅନ୍ୟ ଯାତ୍ରୀମାନଙ୍କର ଲଞ୍ଚ ନିକଟରେ ପାଣି ପାଖରେ ଠେଲାପେଲା ହେଉଥିବାର ଦୃଶ୍ୟ ଦେଖି କିଛି ସମୟ ଧୈର୍ଯ୍ୟ ସହକାରେ ଅପେକ୍ଷା କଲୁ । କିଛି ସମୟ ପରେ ଯଦୁପତି ଭେଟ ଦ୍ୱାରକାଧୀଶଙ୍କୁ ପ୍ରଣାମ ଜଣାଇ ଲଞ୍ଚ ଯୋଗେ ବସ୍ ନିକଟରେ ପହଞ୍ଚିଲୁ । ତୀର୍ଥ ଭ୍ରମଣର ତୀର୍ଥ ଦର୍ଶନ ଶେଷ ହେଲା, କେବଳ ଯାତ୍ରା/ଭ୍ରମଣ ରହିଲା ବୋଲି ଚରମ ଓ ପରମ ତୃପ୍ତିର ନିଃଶ୍ୱାସ ନେଲୁ । ସଂଧ୍ୟା ସମୟରେ ଅନ୍ଧକାର ସ୍ଥାନରେ ଆମେ ଦେଖିଥିବା ସ୍ଥାନରେ ବସ୍ ଗୁଡ଼ିକ ନଥିଲା ବୋଧହୁଏ ପାର୍କିଂର କଡ଼ା ନିୟନ୍ତ୍ରଣ ଯୋଗୁଁ ସେଠାରୁ ବସ୍ ଗୁଡ଼ିକୁ ସ୍ଥାନାନ୍ତର କରାଯାଇଥିଲା । ବହୁ ସମୟ ଖୋଜିବା ପରେ ବସ୍ ପାଇଲୁ

ଓ ଷ୍ଟେସନ୍ ଅଭିମୁଖେ ଗମନ କଲୁ । ଦ୍ୱାରକା ଷ୍ଟେସନରେ ରାତି ୧୦ଘ. ୪୪ ମି.ରେ ଓଖା-ଅହମ୍ମଦାବାଦ ଏକ୍ସପ୍ରେସରେ ଫେରିବା ଯାତ୍ରାର ଶୁଭାରମ୍ଭ କଲୁ ।

### ତା. ୧୮.୧୧.୨୦୧୧, ଶୁକ୍ରବାର

ଅହମ୍ମଦାବାଦ ଷ୍ଟେସନ୍‌ରେ ଗାଡ଼ି ପହଞ୍ଚିବା ବେଳକୁ ସମୟ ଦିନ ୩ଟା ବାଜିଥାଏ । ପ୍ରକାଶ ଥାଉକି, ଦ୍ୱାରକା ଧର୍ମଶାଳାରୁ ନିଜସ୍ୱ ବ୍ୟବସ୍ଥାରେ କେତେଜଣ ଯାତ୍ରୀ ସକାଳ ୮ଟାରେ ଅହମ୍ମଦାବାଦରେ ପହଞ୍ଚି ସାରିଥିଲେ । ସେମାନଙ୍କର ରହିବା ପାଇଁ ଓ ପ୍ରସାଦ ପ୍ରସ୍ତୁତି ପାଇଁ ଷ୍ଟେସନ ନିକଟସ୍ଥ 'ରେବା ଧର୍ମଶାଳା'ରେ ବ୍ୟବସ୍ଥା କରାଯାଇ ଥିଲା । ଅହମ୍ମଦାବାଦ ଷ୍ଟେସନ୍‌ରେ ଆମ ଲଗେଜ୍ ଜଗିବା ପାଇଁ ଇସ୍କନ ବାବାମାନେ ବନ୍ଦୋବସ୍ତ କରିଥିଲେ । ତେଣୁ ଆମେ ନିଶ୍ଚିନ୍ତରେ ଧର୍ମଶାଳାରେ ପହଞ୍ଚି ସ୍ନାନାଦି ନିତ୍ୟକର୍ମ ସାରି ସ୍ୱାଦିଷ୍ଟ ପ୍ରସାଦ ସେବନ କରି ପୁଣି ଅହମ୍ମଦାବାଦ ଷ୍ଟେସନ୍‌କୁ ଫେରିଲୁ । ସଂଧ୍ୟା ୬ଟାରେ ଅହମ୍ମଦାବାଦ-ପୁରୀ ଏକ୍ସପ୍ରେସ୍‌ରେ ଘରବାହୁଡ଼ା ଯାତ୍ରାରମ୍ଭ କଲୁ । ଟ୍ରେନ୍‌ରେ ରାତ୍ରି ପ୍ରସାଦ ପରେ ବିଶ୍ରାମ ନେଲୁ ।

### ତା. ୧୯.୧୧.୨୦୧୧, ଶନିବାର

ଏହି ଦିନଟି ଥିଲା କେବଳ ରେଳଯାତ୍ରାର ସମୟ । S-୮ ବଗିର ୯ ଓ ୧୨ ନମ୍ବର ସିଟ୍‌ରେ ଆରାମ୍‌ରେ ସହଯାତ୍ରୀମାନଙ୍କ ସହ ଆଳାପ ଆଲୋଚନା ମଝିରେ ମଝିରେ ବାବାମାନଙ୍କ ମୁଖରୁ ଭଗବଦ୍ କଥା ଶ୍ରବଣ, ପ୍ରାତଃ ଓ ସଂଧ୍ୟା ଭଜନ କୀର୍ତ୍ତନ ଅବସରରେ ଦିନ ଯାଇ ରାତି କେତେବେଳେ ଉପନୀତ ହେଲା ଜାଣିହେଲା ନାହିଁ । ଟ୍ରେନ୍‌ରେ ଦୁଇବେଳା ସ୍ୱାଦିଷ୍ଟ ଭୋଜନ ବିତରଣ କରାଯାଇଥିଲା । ଶେଷ ରାତ୍ରି ପ୍ରସାଦରେ 'ମଧୁରେଣ ସମାପୟେତ୍' ନୀତିରେ ମିଷ୍ଟାନ୍ନ ପରିବେଷଣ କରାଯାଇଥିଲା । ଇସ୍କନ ବାବାମାନଙ୍କର କଠିନ ପରିଶ୍ରମ, ନିଃସ୍ୱାର୍ଥ ସେବା ଓ ତ୍ୟାଗ ନିକଟରେ ଆମେ ଚିରଋଣୀ ହୋଇ ରହିଲୁ । ସାଧୁଙ୍କ ସେବା ପରିବର୍ତ୍ତେ ପ୍ରତି ମୁହୂର୍ତ୍ତରେ, ପ୍ରତି କ୍ଷେତ୍ରରେ ଆମେ ଉତ୍ତମ ସେବା ପାଇଥିଲୁ । ପୁଣି ସେଥିରୁ କାଣିଚାଏ ଊଣା ହେଲେ ପାଟି କରୁଥିଲୁ । ଏହା ଆମ ଅସହିଷ୍ଣୁ ମନୋଭାବର ପରିଚୟ ନୁହେଁ ତ ଆଉ କ'ଣ ହୋଇପାରେ ? ପ୍ରସାଦ ସେବନ ପରେ ବିଦାୟ ପର୍ବ ଆରମ୍ଭ ହୋଇଯାଇଥିଲା । ପରସ୍ପର ଠାରୁ ବିଦାୟ ନେଇ ପୁନର୍ମିଳନର ଆଶା ରଖି ବିଭୁ ସ୍ମରଣ କରି ବିଶ୍ରାମ ନେଲୁ ।

*ତା. ୨୦.୧୧.୨୦୧୧, ରବିବାର*

ତୀର୍ଥଯାତ୍ରା ପୂର୍ବରୁ ଆମ ଟିକଟ ପୁରୀ ପର୍ଯ୍ୟନ୍ତ ସଂପ୍ରସାରିତ ହୋଇସାରିଥିଲା । ଦିନ ୮ ଘଣ୍ଟା ସମୟରେ ପୁରୀ ଷ୍ଟେସନ୍‌ରେ ପଦାର୍ପଣ କଲୁ । ଅଟୋ ଯୋଗେ ବଡ଼ଦାଣ୍ଡସ୍ଥ 'ନୀଳାଚଳ ଭକ୍ତ ନିବାସ'ରେ ଉପନୀତ ହୋଇ ସ୍ନାନାଦି ନିତ୍ୟକର୍ମ ସାରି ମଙ୍ଗଳମୟ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ବାହାରିପଡ଼ିଲୁ । କରୁଣା ବରୁଣାଳୟଙ୍କର ଅପାରକରୁଣାରୁ ''ପଙ୍ଗୁ ଲଂଘୟତେ ଗିରି'' ଭଳି ଆମେ ଚାରିଧାମ, ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ, ସପ୍ତମୋକ୍ଷପୁରୀ, ନେପାଳର ପଶୁପତିନାଥ ଓ ଜନକପୁରୀ ଭଳି ସକଳ ତୀର୍ଥ ଭ୍ରମଣ କରିପାରିଥିବାରୁ ଶ୍ରୀପୟରରେ ଅଶେଷ ଅଶେଷ ପ୍ରଣାମ ଜଣାଇଲୁ । ମନ୍ଦିର ବେଢ଼ାରେ ଦର୍ଶନରେ ବୁଲୁଥିବା ସମୟରେ କେତେଜଣ ତୀର୍ଥସାଥୀଙ୍କୁ ମିଶିଲୁ । ପ୍ରସାଦ ବାହାରିବା ପରେ ବ୍ରାହ୍ମଣ ଭୋଜନ କରାଇ ପ୍ରସାଦ ସେବନ କଲୁ । ସଂଧ୍ୟାରେ କିଛି ଜିନିଷ କିଣାକିଣି କରି ''ଗ୍ରାଣ୍ଡ ହୋଟେଲ୍''ରେ ରାତ୍ରି ଭୋଜନ କରି ବିଶ୍ରାମ ନେଲୁ ।

*ତା. ୨୧.୧୧.୨୦୧୧, ସୋମବାର*

ଦିନ ଏଗାରଟାରେ ପୁରୀ-ତିରୁପତି ଏକ୍ସପ୍ରେସ୍‌ରେ ଆମର ସ୍ଥାନ ସଂରକ୍ଷଣ ହୋଇଥିଲା । ସକାଳ ଜଳଖିଆ ଓ ଗାଡ଼ି ପାଇଁ ମଧ୍ୟାହ୍ନ ଭୋଜନ ଆଣିବା ପାଇଁ ''ଗ୍ରାଣ୍ଡ ହୋଟେଲ୍''ରେ ପହଞ୍ଚିଲୁ । ଜଳଖିଆ ଆରମ୍ଭରେ ଫୋନ୍‌ରେ ଖବର ଆସିଲା ଆମ ତୀର୍ଥସାଥୀ ନନ୍ଦ ବାବୁଙ୍କର ସ୍ତ୍ରୀ ଆଉ ନାହାନ୍ତି, କଥାଟି ହଠାତ୍ ବିଶ୍ୱାସ ଆସିଲା ନାହିଁ । ମଧୁସୂଦନ ରାଓ ଲେଖିଥିବା ପଦଟିକୁ ମନେ ପକାଇଲୁ -

''ବାଲ୍ୟକାଳୁ ଧର୍ମ ଧନ ମୁଁ ସଞ୍ଚିବି
ଏ ଜୀବନ ଅନିଶ୍ଚିତ ।
କେ ଜାଣେ କାହାର ଆଜି ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।''

ପ୍ରକୃତରେ ମନୁଷ୍ୟ ଜୀବନ କେତେ କ୍ଷଣସ୍ଥାୟୀ - ମର୍ମେ ମର୍ମେ ଉପଲବ୍‌ଧି କଲୁ । ସ୍ୱଳ୍ପ ସମୟର ଆତ୍ମୀୟତା ଭିତରେ ଜାଣିଥିବା ତାଙ୍କ ଗୁଣ ଗ୍ରାମ ସ୍ମରଣ କଲୁ ଓ ଅମର ଆତ୍ମାର ସଦ୍‌ଗତି କାମନା କଲୁ । ଗତ ସଂଧ୍ୟାରେ ଦେଖିଥିବା ତାଙ୍କ ହସ ହସ ମୁହଁଟି ଦୀର୍ଘ ସମୟ ପର୍ଯ୍ୟନ୍ତ ଆଖି ଆଗରେ ଭାସି ଯାଇଥାଏ । ଘରକୁ ଯାଇ ସାନ୍ତ୍ୱନା ଜଣାଇବା ପାଇଁ ଆମ ପାଖରେ ସମୟ ନଥିଲା । ତେଣୁ ଅନନ୍ୟୋପାୟ ହୋଇ

ଷ୍ଟେସନ୍ ଅଭିମୁଖେ ବାହାରିଲୁ । ଦିନ ଏଗାରଟାରେ ଟ୍ରେନ୍ ଚଢ଼ି ବ୍ରହ୍ମପୁର ଷ୍ଟେସନ୍‌ରେ ସଂଧ୍ୟା ୫ ଘଣ୍ଟା ୪୦ ମିନିଟ୍‌ରେ ପହଞ୍ଚିଲୁ । ପୂର୍ବରୁ ଆମ ପାଇଁ ଅଟୋ ଅପେକ୍ଷା କରି ରହିଥିଲା । ସେଥିରେ ବମକୋଇ ଗ୍ରାମରେ ପହଞ୍ଚିବା ବେଳକୁ ରାତି ଆଠଟା ସମୟ ହୋଇଥିଲା । ସକଳ ଦେବ ଦେବୀ, ପିତୃପୁରୁଷ, ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନ, ପଡ଼ୋଶୀ ଓ ସହକର୍ମୀବୃନ୍ଦଙ୍କର ଶୁଭେଚ୍ଛା ଓ ସହଯୋଗ ବଳରେ ସମସ୍ତ ତୀର୍ଥସ୍ଥାନ ଭ୍ରମଣ ଶେଷ କରି ପାରିଥିବାରୁ ସମସ୍ତଙ୍କ ନିକଟରେ ଚିର କୃତଜ୍ଞ ହୋଇ ରହିଲୁ ।

କୌଣସି ଏକ ମନ୍ଦିରରେ କାନ୍ଥରେ ଲେଖାଥିବା ପଂକ୍ତିଟି ଏହିପରି ଥିଲା -

"ମଥୁରା ଭାବେ ଦ୍ୱାରକା ଭାବେଁ
ଜା ଜଗନ୍ନାଥ,
ସାଧ ସଂଗତକ ହରି ଭଜନ ବିନୁ
କଛୁ ନ ଆବେ ହାଥ ।" (ସନ୍ଥ କବୀର)

ପ୍ରକୃତରେ ତୀର୍ଥାଟନ, ଦେବ ଦର୍ଶନ ସହ ସାଧୁସଙ୍ଗ ଆମ ପାଇଁ ପ୍ରଚୁର ଲାଭଦାୟକ ଥିଲା । ପୁଣି କେବେ ଇସ୍କନ ବାବାମାନଙ୍କର ସାନ୍ନିଧରେ ଭ୍ରମଣ ଯୋଗ ସ୍ଥିର ହେବ- ସେହି ଅପେକ୍ଷାରେ ସେହି ବାବାମାନଙ୍କର ଉଦ୍ଦେଶ୍ୟରେ ଆଭୂମ ପ୍ରଣାମ ଜଣାଇ ବିଦାୟ ନେଉଛୁ ।

॥ ହରେ କୃଷ୍ଣ ॥



॥ ଓଁ ହରେକୃଷ୍ଣ ॥

# ଇସ୍କନ ଆୟୋଜିତ
# କୁମ୍ଭମେଳା ଦର୍ଶନ, ଅମୃତ ସ୍ନାନ ଓ ତୀର୍ଥ ଭ୍ରମଣ
## (ଯାତ୍ରାକାଳ - ତା. ୧୦.୦୨.୨୦୧୩ ଠାରୁ ୧୯.୦୨.୨୦୧୩)

**କୁମ୍ଭମେଳାର ଇତିହାସ ଓ ମାହାତ୍ମ୍ୟ :**

ସତ୍ୟଯୁଗର ଘଟଣା, ସମୁଦ୍ର - ମନ୍ଥନରୁ ଜାତ ଅମୃତକୁ ପ୍ରାପ୍ତ ହେବା ପାଇଁ ଦେବତା ଓ ଅସୁରମାନଙ୍କ ମଧ୍ୟରେ ଏକ ଭୟାନକ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧ ସମୟରେ ଅମୃତ କଳସରୁ କେତେ ବିନ୍ଦୁ ଅମୃତ ଛିଟିକି ଯାଇ ଭୂଲୋକର ହରିଦ୍ୱାରରେ ଗଙ୍ଗା, ନାସିକରେ ଗୋଦାବରୀ, ଉଜ୍ଜୟିନୀରେ ସିପ୍ରା ଓ ପ୍ରୟାଗଠାରେ ତ୍ରିବେଣୀ ସଂଗମରେ (ଗଙ୍ଗା, ଯମୁନା ଓ ଅଦୃଶ୍ୟ ସରସ୍ୱତୀ) ପଡ଼ିଥିଲା । ଫଳତଃ ଏହି ସମୟରେ ନଦୀ ବକ୍ଷମାନ ଅମୃତମୟ ହୋଇ ଉଠିଥିଲା । ଏହା ଥିଲା ଜୀବଜଗତ ପ୍ରତି ଭଗବାନଙ୍କର ଅହେତୁକୀ କୃପା । ଭୂଲୋକର ଅଧିବାସୀଗଣ ଏହି ସମୟରେ ଅମୃତ ସ୍ନାନ କରି ନିଜକୁ ପବିତ୍ର କରାଇଥିଲେ । ସେହି ଦିନରୁ ନାକ୍ଷତ୍ରିକ ଅବସ୍ଥିତି ଅନୁଯାୟୀ ପଡୁଥିବା ଏହି ମହାସ୍ନାନ ଯୋଗ ସମୟରେ ସ୍ନାନ କରିବାକୁ କୋଟି କୋଟି ଭକ୍ତ ସମାଗମ ହୋଇଥାଆନ୍ତି । ଏହି ସମାଗମ ଉତ୍ସବ 'କୁମ୍ଭମେଳା' ନାମରେ ଖ୍ୟାତ । ଦେବଭୋଗ୍ୟ ଅମୃତ ବିନ୍ଦୁ ପ୍ରୟାଗ ସ୍ଥିତ ତ୍ରିବେଣୀ ସଂଗମରେ ପତିତ ହେବା ସମୟରେ ଘଟିଥିବା ନାକ୍ଷତ୍ରିକ ସଂଯୋଗ୍ ବାରବର୍ଷ ପରେ ଯେତେବେଳେ ପୁନଃ ସଂଘଟିତ ହୁଏ ସେତେବେଳେ ଜଳରାଶି ଅମୃତରେ ରୂପାନ୍ତରିତ ହୋଇଥାଏ । ଏହି ଦୁର୍ଲ୍ଲଭ ସଂଯୋଗ ସମୟର ସ୍ନାନକୁ 'ଅମୃତ ସ୍ନାନ' କୁହାଯାଏ ।

**ଆରମ୍ଭରୁ ଦୁଇ ଧାଡ଼ି :**

ଅନୁଭବ ଓ ଅନୁଭୂତିକୁ ନେଇ ମଣିଷ ଜୀବନ । ଭାଷାନ୍ତରରେ ମଣିଷ ଜୀବନ ହେଉଛି ସେ ଅଙ୍ଗେ ଲିଭାଇଥିବା ଅନୁଭବ ଓ ଅନୁଭୂତିର ଏକ ଅସରନ୍ତି ଭଣ୍ଡାର । ସେହି ମଧ୍ୟରୁ କେତେକ ସାଧାରଣ ଓ କେତେକ ଏପରି ଅସାଧାରଣ ଓ ହୃଦୟସ୍ପର୍ଶୀ ଯେ ତାହା ଆମରଣ ଅବିସ୍ମରଣୀୟ । ଏହିଭଳି ଏକ ମର୍ମସ୍ପର୍ଶୀ ଅନୁଭୂତିର କିୟଦ୍ ଅଂଶ ଦୁଇ ହଜାର ତେର ମସିହାର 'ମହାକୁମ୍ଭ ମେଳା' ।

ଦୀର୍ଘ ବାର ବର୍ଷର ବ୍ୟବଧାନରେ କୁମ୍ଭମେଳାର ପବିତ୍ର ମୁହୂର୍ତ୍ତ ଆସେ । ପୁନଶ୍ଚ କାହାରି କାହାରି ମୁହଁରୁ ଶୁଣିବାକୁ ମିଳୁଛି ଏହି ବର୍ଷର ନାକ୍ଷତ୍ରିକ ସଂଯୋଗ ୧୨ x ୧୨ = ୧୪୪ ବର୍ଷ ବ୍ୟବଧାନରେ ସଂଘଟିତ ହେଉଛି, ପ୍ରତ୍ୟହ ଦୂରଦର୍ଶନ ଓ ଖବରକାଗଜରେ 'କୁମ୍ଭମେଳା' ବିଷୟରେ ଅନେକ କଥା ପ୍ରଚାର ଚାଲିଥାଏ । କୁମ୍ଭମେଳା ପ୍ରତି ଦୁର୍ବାର ଆକର୍ଷଣ ମନ ମଧ୍ୟରେ ବସା ବାନ୍ଧି ରହିଥିଲେ ମଧ୍ୟ ଭଗ୍ନସ୍ୱାସ୍ଥ୍ୟ ପ୍ରତିବନ୍ଧକ ସୃଷ୍ଟି କରୁଥାଏ । ମନକଥା ମନରେ ଥାଏ । ଚିହ୍ନା ପରିଚୟ, ସାଙ୍ଗସାଥୀ, ବନ୍ଧୁବାନ୍ଧବଙ୍କର କୁମ୍ଭମେଳା ପାଇଁ ପ୍ରସ୍ତୁତ ହେବା ଓ ଯାତ୍ରା କରିବା ଖବର ପାଇଥାଉ । ସମସ୍ତଙ୍କର ଶୁଭ ମନାସି ମନକୁ ସାନ୍ତ୍ୱନା ଦେଇ ରହିଥାଉ ।

ବିଧିର ବିଚିତ୍ର ବିଧାନ, ଭାବର ଠାକୁର ସେ ଭାବଗ୍ରାହୀ, ଅନ୍ତରର ନିଭୃତ କୋଣର ଗୋପନ କଥାକୁ ଜାଣି ପାରନ୍ତି ତେଣୁ ଅନ୍ତର୍ଯ୍ୟାମୀ । ସେ ଦିନର ସେହି ଘଟଣାରୁ ଆମ ମନ ମନ୍ଦିରରେ ଭଗବଦ୍ କୃପା ବିଷୟ ଦୃଢ଼ୀଭୂତ ହୋଇଗଲା । ଦୁଇହଜାର ତେର ଜାନୁୟାରୀ ଦଶ ତାରିଖ ଗୁରୁବାର ରାତି ନଅଟା । ହଠାତ୍ ମୋବାଇଲ୍ ଫୋନ୍ ବାଜି ଉଠିଲା । ଫୋନ୍ ଉଠାଇବାରୁ ପରିଚିତ ସ୍ୱର ଶୁଣାଗଲା, ''ଆପଣ କୁମ୍ଭମେଳା ଯିବେ? ଆମର ପୁରୁଣା ଲୋକ ବୋଲି ଆପଣଙ୍କୁ ଆମେ ପ୍ରଥମେ ଜଣାଉଛୁ । ମୁଁ ଭୁବନେଶ୍ୱର ଇସ୍କନ ମନ୍ଦିରରୁ କହୁଛି ।'' ଇସ୍କନ ବାବାଙ୍କର ନାମ ଶୁଣି ପ୍ରଣାମ ପୂର୍ବକ ଜଣାଇଲି, ''ବାବା ! ମୋ' ସ୍ୱାମୀ ଗାଧୋଇବାକୁ ଯାଇଛନ୍ତି, ଆସିଲା ପରେ ମୁଁ ଜଣାଇବି ।'' ଆମ ଭିତରେ ସ୍ୱଳ୍ପ ସମୟର ଆଲୋଚନା ପରେ ବାବାଙ୍କୁ ସମ୍ମତି ଜଣାଇଲୁ । ମନେ ମନେ ନିଶ୍ଚିନ୍ତ ହେଲୁ ଇସ୍କନ ଯାତ୍ରାରେ ପ୍ରବଳ ଶୀତ ଓ ଭିଡ଼ର ଭୟ ପାଇଁ ଚିନ୍ତା ନାହିଁ । ସେହି ଦିନ ବିଷ୍ଣୁ ପ୍ରଭୁ ଫୋନ୍ କରିଥିଲେ, ଯାତ୍ରାର କାର୍ଯ୍ୟସୂଚୀର ସଂକ୍ଷିପ୍ତ ସୂଚନା ଦେଲେ । ତତ୍‌କ୍ଷଣାତ୍ ଗୌରୀବାବୁଙ୍କୁ ଅଗ୍ରୀମ ଦେଇଦେବା ପାଇଁ ଜଣାଇଲୁ । ତା ୧୨.୦୧.୨୦୧୩ ଦିନ ଗୌରୀବାବୁ ଅଗ୍ରୀମ ଦେଇ ସ୍ଥାନ ସଂରକ୍ଷଣ କରିଦେଲେ । ଆମର ଯିବା ନିଶ୍ଚିତ ହେଲା ପରେ ଆମେ ଫୋନ୍ ମାଧ୍ୟମରେ ପୂର୍ବସାଥୀମାନଙ୍କୁ ଜଣାଇଲୁ । ଖବର ପାଇ ୭/୮ ଜଣ ପୂର୍ବ ସାଥୀ ମଧ୍ୟ ଏହି ଯାତ୍ରାରେ ସାମିଲ୍ ହୋଇଥିଲେ । ଯାତ୍ରାକାଳ ଥିଲା ତା.୧୦.୦୨.୨୦୧୩ ଠାରୁ ତା ୧୯.୦୨.୨୦୧୩ ପର୍ଯ୍ୟନ୍ତ ।

***ତା. ୦୯.୦୨.୨୦୧୩, ଶନିବାର***

କାର୍ଯ୍ୟସ୍ଥଳ ବମକୋଇରୁ ଦିନ ୧୧ଘ.୩୦ମି.ରେ ଅଟୋରେ ବାହାରି ବ୍ରହ୍ମପୁର ରେଲଷ୍ଟେସନରେ ଅପରାହ୍ନ ୧ଘ.୦୫ମି.ରେ ପହଞ୍ଚିଲୁ । ଚେନ୍ନାଇ-ଭୁବନେଶ୍ୱର

ଟ୍ରେନର ସମୟ ଥିଲା ଦିନ ୦୩ଟା । ସେଥିରେ ଚଢ଼ି ସଂଧ୍ୟା ୫ଘ.୫୫ମି.ରେ ଭୁବନେଶ୍ୱରରେ ପହଞ୍ଚିଲୁ । ରାତ୍ରି ଗୌରୀ ଘରେ ବିଶ୍ରାମ ନେଲୁ ।

**ତା. ୧୦.୦୨.୨୦୧୩, ରବିବାର**

ଇସ୍କନ ଯାତ୍ରାରମ୍ଭର ଯଜ୍ଞର ସମୟ ଦିନ ୧୦ ଘଣ୍ଟା ବୋଲି ନିର୍ଦ୍ଧାରିତ ହୋଇ ଥାଏ । ତେଣୁ ସକାଳ ୮ ଘଣ୍ଟା ୩୫ମି.ରେ ଗୌରୀ ଘରୁ ବାହାରି ଅଟୋ ଯୋଗେ ଇସ୍କନ ମନ୍ଦିରରେ ପହଞ୍ଚିଲୁ । ଦିନ ୧୦ଘଣ୍ଟା ୨୫ମି.ରେ ଯଜ୍ଞ ଆରମ୍ଭ ହେଲା । ମନ୍ଦିରରେ ପୂର୍ବ ପରିଚିତ ଓ ନୂତନ ସାଥୀମାନଙ୍କ ସହ ବାର୍ତ୍ତାଳାପ ପରେ 'ଗୋବିନ୍ଦ ବଜାର'ରୁ ମଧ୍ୟାହ୍ନ ପ୍ରସାଦ ସେବନ କରି ସଂରକ୍ଷିତ ଛୋଟ ବସ୍ ଯୋଗେ ଷ୍ଟେସନ ବାହାରିଲୁ । ପୁରୀ-ନୂଆଦିଲ୍ଲୀ ଏକ୍ସପ୍ରେସ୍ ନିର୍ଦ୍ଧାରିତ ସମୟ ୧୨ ଘଣ୍ଟା ୩୦ମିନିଟ୍‌ରେ ପହଞ୍ଚିଲା । ଏସ୍-୩ ର ୩୩ ଓ ୩୪ ନମ୍ବର ସିଟ୍‌ରେ ବସି କୁମ୍ଭମେଳା ଯାତ୍ରାର ଶୁଭାରମ୍ଭ କଲୁ । ଟ୍ରେନ୍ ଭିତରେ ତୀର୍ଥଯାତ୍ରୀମାନଙ୍କ ସହ ପୂର୍ବ ତୀର୍ଥଯାତ୍ରାର ଅନୁଭୂତି ବିଷୟରେ ଆଲୋଚନା କରୁ କରୁ ସଂଧ୍ୟା ଯାଇ ରାତି ପହଞ୍ଚି ସାରିଥିଲା । ରାତ୍ରି ପ୍ରସାଦସେବନ ପରେ ବିଭୁ ସ୍ମରଣ କରି ନିଶ୍ଚିନ୍ତରେ ବିଶ୍ରାମ ନେବାକୁ ଗଲୁ । ସେହି ସମୟରେ ଆମ ତୀର୍ଥଯାତ୍ରୀଙ୍କ ମଧ୍ୟରେ ପରସ୍ପର ସରଗରମ ଆଲୋଚନା ଚାଲିଥିବା ଲକ୍ଷ୍ୟ କଲୁ । କଥାକୁ କାନେଇବା ପରେ ଜାଣିବାକୁ ପାଇଲୁ, ମୌନି ଅମାବାସ୍ୟା ଅବସରରେ କୁମ୍ଭମେଳାରେ ପ୍ରବଳ ଭିଡ଼ ଯୋଗୁଁ କେତେଜଣ ତୀର୍ଥଯାତ୍ରୀ ମୃତ ଓ ଆହତ । ପରଦିନ ସକାଳୁ ହିନ୍ଦୀ ଖବରକାଗଜରୁ ସଠିକ୍ ଖବର ଜାଣିବାକୁ ପାଇଥିଲୁ । ପ୍ରୟାଗସ୍ଥ ବେଣୀମାଧବ ଓ ଆରାଧ୍ୟ ଜଗନ୍ନାଥଙ୍କର ଶରଣାଗତ ହେବା ବ୍ୟତୀତ ଆମ ପକ୍ଷରେ ଅନ୍ୟ କିଛି ଉପାୟ ନଥିଲା ।

***ତା. ୧୧.୦୨.୨୦୧୩, ସୋମବାର***

ଟ୍ରେନ୍ ଭିତରେ ନିତ୍ୟକର୍ମ ସମାପନ ପରେ ଇସ୍କନ ବାବାମାନଙ୍କ ସହ କିଛି ସମୟ କୁମ୍ଭ ସ୍ନାନର ସ୍ଥାନ ଓ ସମୟ ବିଷୟରେ ଆଲୋଚନା ଚାଲିଲା । ବାରାଣାସୀରେ ପ୍ରସ୍ତୁତ ହୋଇ ଆସିଥିବା ଶୁଦ୍ଧ, ସ୍ୱାଦିଷ୍ଟ, ସୁମିଷ୍ଟ ମଧ୍ୟାହ୍ନ ପ୍ରସାଦ ବିତରଣ କରାଯାଇ ଥିଲା । ନିଜ ନିଜର ଖାଇବା ସମୟ ଓ ସୁବିଧାନୁଯାୟୀ ତୀର୍ଥଯାତ୍ରୀମାନଙ୍କର ପ୍ରସାଦ ସେବନ ଓ ସ୍ୱଚ୍ଛ ବିଶ୍ରାମ ପରେ ଲକ୍ଷ୍ୟସ୍ଥଳ ଲକ୍ଷ୍ନୌ ପହଞ୍ଚିଯାଇଥିଲା । ହରେକୃଷ୍ଣଙ୍କର ଅପାର କରୁଣାର ମାଧ୍ୟମ ଇସ୍କନ ବାବାମାନଙ୍କର ସୁଚିନ୍ତିତ ଓ ବ୍ୟବସ୍ଥିତ ଯୋଜନାନୁସାରେ ଏହିଥର ବସ୍‌ରେ ସ୍ଥାନ ସଂରକ୍ଷଣ ଓ ପରିବର୍ତ୍ତନ କ୍ରମର ଏକ ଚାର୍ଟ ପୂର୍ବରୁ ବଣ୍ଟନ ହୋଇ ଥିଲା । ଫଳତଃ ଏହିଥର ପୂର୍ବଥର ମାନଙ୍କରେ ଦେଖାଦେଇଥିବା

'ଛକ' ଓ ଜୋତା ମାଧ୍ୟମରେ ସ୍ଥାନ ସଂରକ୍ଷଣ'' ଭଳି କୌତୁକ ଓ କ୍ରୋଧ ଜାଗ୍ରତ କଲାପରି ବିରଳ ଦୃଶ୍ୟ ଦେଖିବାକୁ ମିଳି ନଥିଲା । ସମଗ୍ର ତୀର୍ଥଯାତ୍ରା ସମୟରେ ବସ୍‌ର ସ୍ଥାନ ସମ୍ବନ୍ଧୀୟ କିଛି ବ୍ୟତିକ୍ରମ ଦେଖାଯାଇନଥିଲା ଏବଂ ସମସ୍ତ ଯାତ୍ରୀଙ୍କର ସ୍ୱଚ୍ଛନ୍ଦ ଯାତ୍ରା ମଧ୍ୟ ସମ୍ଭବ ହୋଇପାରିଥିଲା । ଲକ୍ଷ୍ନୌ ଷ୍ଟେସନ୍‌ରେ ପହଞ୍ଚିବା ପରେ ଆମ ପାଇଁ ଉଦ୍ଦିଷ୍ଟ 'ଜଗନ୍ନାଥ' ବସ୍ ଅନ୍ୱେଷଣରେ ବାହାରିଲୁ । ଏହି ଥର ଆମ କ୍ରମିକ ସଂଖ୍ୟା ୨୨ ଓ ୨୩ ଏବଂ ବସ୍‌ର ସ୍ଥାନାଙ୍କ ୩୮ ଓ ୩୯ ରଖାଯାଇଥିଲା । ଅପରାହ୍ଣ ସମୟରେ ରାଜ୍ୟ ରାଜଧାନୀ ଲକ୍ଷ୍ନୌ ସହର ମଧ୍ୟ ଦେଇ ବସ୍ ଗତି କରୁଥାଏ । ଏହି ସମୟରେ ବିଧାନସଭା ସୌଧ, ଅନେକ ସରକାରୀ, ବେସରକାରୀ କାର୍ଯ୍ୟାଳୟ, ଜନଗହଳିପୂର୍ଣ୍ଣ ଛକ ଓ ନଭଶ୍ଚୁମ୍ବୀ ଅଟ୍ଟାଳିକା ଦୃଷ୍ଟି ପଥାରୂଢ଼ ହେଲା । ସବୁଠାରୁ ବିନୋଦର ବିଷୟ ଏହି ଥିଲା ଯେ ଜନଗହଳି ପୂର୍ଣ୍ଣ ଛକ ମାନଙ୍କରେ ଉତ୍ତର ପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ସୁଶ୍ରୀ ମାୟାବତୀଙ୍କ କର କମଳରେ ଉଦ୍‌ଘାଟିତ ବିରାଟକାୟ ସୁସଜ୍ଜିତ ମୂଲ୍ୟବାନ ପ୍ରସ୍ତର ହସ୍ତୀ ମୂର୍ତ୍ତି ଶୋଭାବର୍ଦ୍ଧନ କରୁଥାଆନ୍ତି । ବିଧାନସଭାର ଚାରିଗୋଟି ଦ୍ୱାର ସମ୍ମୁଖରେ ଓ ଭିତର ବେଢ଼ାରେ ଛୋଟ ଓ ବଡ଼ ଧାଡ଼ି ଧାଡ଼ି ହାତୀ ସୁସଜ୍ଜିତ । ରାସ୍ତାରେ ଏକ ସ୍ଥାନରେ ମାୟାବତୀ ଓ କାଂଶୀରାମଙ୍କ ପ୍ରତିମୂର୍ତ୍ତିର ଦର୍ଶନ ଯାତ୍ରୀମାନଙ୍କ ମନରେ ପ୍ରମୋଦ ଭରିଦେଇଥିଲା । ଏଇ ବାତାବରଣରେ କିଛି ସମୟ ପାଇଁ ବସ୍ ଭିତରେ ରାଜନୀତି ଆଲୋଚନା ସ୍ଥାନ ପାଇଥିଲା । ସଂଜ ନଇଁ ଆସିଲାବେଳକୁ ଲକ୍ଷ୍ନୌ ସହର ପରିସୀମା ଶେଷ ହୋଇଯାଇଥିଲା । ଅଳ୍ପ କେତୋଟି ଗ୍ରାମ ଓ ସହର ପରେ ନୈମିଷାରଣ୍ୟ ଅଞ୍ଚଳର ଅରଣ୍ୟ ଦୁଇ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ତୀର୍ଥଯାତ୍ରୀଙ୍କୁ ସ୍ୱାଗତ ଜଣାଇବା ପରି ମନେ ହେଉଥିଲା । ଶୁକ୍ଳ ପ୍ରତିପଦା ତିଥିରେ ଚନ୍ଦ୍ରଦେବଙ୍କ ଅନୁପସ୍ଥିତି ପାର୍ଶ୍ୱସ୍ଥ ବୃକ୍ଷରାଜିର ଶୋଭା ସନ୍ଦର୍ଶନରେ ବାଧା ସୃଷ୍ଟି କରୁଥିଲା । ବସ୍‌ର ସମ୍ମୁଖ ଲାଇଟ୍ ଦ୍ୱାରା ଜଙ୍ଗଲର କିଛି ଅଂଶ ଦୃଷ୍ଟିଗୋଚର ହେଉଥିଲା । ଉତ୍ତର ପ୍ରଦେଶର 'ସୀତାପୁର' ପ୍ରାଚୀନ ନୈମିଷାରଣ୍ୟ ନାମରେ ଖ୍ୟାତ । ଏଠାରେ 'ସୀତାପୁର' ଗ୍ରାମର ପୌରାଣିକ ପୃଷ୍ଠଭୂମି ବିଷୟରେ ଲେଖିବା ଉଚିତ । ଶ୍ରୀ ସୁତ ମହର୍ଷି ଶୌନାକାଦି ମୁନିମାନଙ୍କୁ 'ସୀତାପୁର' ଗ୍ରାମର ନାମକରଣ ବିଷୟ ବର୍ଣ୍ଣନା କରି କହିଛନ୍ତି - ଲଙ୍କାର ରାବଣ ନିଧନ ପରେ ଶ୍ରୀରାମ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତି ପାଇବା ପାଇଁ ଏହି ସ୍ଥାନରେ ଏକ ବିରାଟ ଯଜ୍ଞର ଆୟୋଜନ କରିଥିଲେ । ଯଜ୍ଞ ଶେଷରେ ମାତା ସୀତା ଗୋଟିଏ ଗ୍ରାମ ଯାଜ୍ଞିକ ବ୍ରାହ୍ମଣଙ୍କୁ ଦାନ ଦେବାକୁ ନିବେଦନ କରିଥିଲେ । ସେତେବେଳେ ଶ୍ରୀରାମ ବ୍ରାହ୍ମଣମାନଙ୍କୁ ଏହି ପବିତ୍ର ସ୍ଥାନ ଦେଇ ସ୍ଥାନଟିର ନାମ 'ସୀତାପୁର' ରଖିଥିଲେ । ଲକ୍ଷ୍ନୌଠାରୁ ସୀତାପୁରର

ଦୂରତା ୯୦ କିଲୋମିଟର, କିନ୍ତୁ ଅନ୍ଧକାର ରାତ୍ରିରେ ଜନବସତିଶୂନ୍ୟ ଘଞ୍ଚ ଜଙ୍ଗଲପୂର୍ଣ୍ଣ ରାସ୍ତାର ଶେଷ ନ ଆସିବା ଭଳି ମନେହେଉଥାଏ । ବସ୍‌ର ଗତି ଟିକିଏ ଶିଥିଳ ହୋଇଯାଉଥିଲେ ଯାତ୍ରୀମାନେ 'ପହଞ୍ଚିଗଲେ' ବୋଲି ପାଟିକରି ଠିଆ ହୋଇଯାଉଥାଆନ୍ତି । ବାସ୍ତବିକ ଯାତ୍ରୀମାନଙ୍କ ମନରେ ସେହି ସମୟରେ ଦେଖାଦେଇଥିବା ଆବେଗ ଓ ଉତ୍କଣ୍ଠା ବେଶ୍ ଆମୋଦପୂର୍ଣ୍ଣ ମନେହେଉଥାଏ । ପରିଶେଷରେ ରାତ୍ରି ୮ ଘଣ୍ଟା ୩୦ ମିନିଟ୍‌ର ଅଭୀଷ୍ଟସ୍ଥଳ ସୀତାପୁରସ୍ଥ 'ଦୀକ୍ଷିତ ଅତିଥି ଭବନ'ରେ କିଛି ଯାତ୍ରୀଙ୍କୁ ଓହ୍ଲାଇ ଦିଆଗଲା ଓ ଅବଶିଷ୍ଟ ଯାତ୍ରୀଙ୍କୁ ନେଇ ବସ୍ 'କାଳୀ ମନ୍ଦିର' ଅତିଥି ଭବନ ଦିଗରେ ଅଗ୍ରସର ହେଲା । ଦୀକ୍ଷିତ ଅତିଥି ଭବନରେ ଉପର ମହଲାର ୧୦ ନମ୍ବର ରୁମ୍ ଆମ ପାଇଁ ସଂରକ୍ଷିତ ହୋଇଥିଲା । ସୀତାପୁର ସହରରେ ଆମେ ଏକ ବିସ୍ମୟକର ବ୍ୟବସ୍ଥା ଅନୁଭବ କଲୁ । ଏଠାରେ ଦୈନିକ ମାତ୍ର ୦୪ ଘଣ୍ଟା ବିଦ୍ୟୁତ ଯୋଗାଣ ହୋଇଥାଏ । ଆମେ ପହଞ୍ଚିବାର ଅଧ ଘଣ୍ଟାଏ ପରେ ବିଦ୍ୟୁତ୍ କାଟ ସମୟ ଆରମ୍ଭ ହୋଇଯାଇଥିଲା । ଅତିଥି ଭବନର ମାଲିକଙ୍କୁ ଅନୁରୋଧ କରି ଜେନେରେଟରର ସାହାଯ୍ୟରେ ଜଳ ଯୋଗାଣ ବ୍ୟବସ୍ଥା କରାଗଲା । ଉପରିସ୍ଥ ସୌରଶକ୍ତି ଚାଳିତ ବଲ୍‌ବର ଆଲୋକ ଝରକା କାଚ ଦେଇ ସବୁ କୋଠରୀକୁ କ୍ଷୀଣାଲୋକରେ ଆଲୋକିତ କରୁଥିଲା । ମାଘ ମାସର ପ୍ରବଳ ଶୀତ, ଚଟାଣରେ ପାଦ ପଡ଼ିଲେ ବରଫ ଉପରେ ଚାଲିବା ଭଳି ମନେହେଉଥିଲା, ତଥାପି ତୀର୍ଥାଟନର ନିଶା ମନକୁ ଏତେ ମସ୍‌ଗୁଲ କରିଥିଲା ଯେ ପ୍ରବଳ ଶୀତ ପ୍ରତି ଭ୍ରୁକ୍ଷେପ ନ ଥିଲା । ରାତ୍ର ୯ ଘଣ୍ଟା ୩୦ ମିଟିରେ କାଳୀ ମନ୍ଦିର ଅତିଥି ଭବନରେ ପ୍ରସ୍ତୁତ ହୋଇଥିବା ସ୍ୱାଦିଷ୍ଟ ପ୍ରସାଦ ବିତରଣ କରାଗଲା ଓ ଆସନ୍ତା କାଲିର କାର୍ଯ୍ୟକ୍ରମ ବିଷୟରେ ସୂଚନା ଦିଆଗଲା । ପରଦିନ ସକାଳୁ ଜେନେରେଟର ସାହାଯ୍ୟରେ ମୋବାଇଲ୍ ଚାର୍ଜ କରିବା ବିଷୟ ଠିକଣା କଲୁ । ପ୍ରବଳ ଶୀତର ଚିନ୍ତା ନ କରି ନୈମିଷାରଣ୍ୟବାସୀ ଅଗଣିତ ଦେବଦବୀଙ୍କୁ ଚିନ୍ତନ କରି ବିଶ୍ରାମ ନେଲୁ ।

### *ତା. ୧୨.୦୨.୨୦୧୩, ମଙ୍ଗଳବାର (କୁମ୍ଭ ସଂକ୍ରାନ୍ତି)*

ଘଞ୍ଚ ଜଙ୍ଗଲ ପରିବେଷ୍ଟିତ ସୀତାପୁର ସହରର ମାଘ ମାସର ପ୍ରବଳ ଶୀତର ପ୍ରକୋପ ତୀର୍ଥ ଭ୍ରମଣର ଉଷ୍ଣତା ଆଗରେ ହାର ମାନିଲା ଭଳି ଅନୁଭୂତ ହେଲା । ଦୁଇଟି ପରିବାର ପାଇଁ ଗୋଟିଏ ଗାଧୁଆଘରର ବ୍ୟବସ୍ଥା ଥିବା ଯୋଗୁଁ ପ୍ରଭାତର ଯଥେଷ୍ଟ ପୂର୍ବରୁ ନିତ୍ୟକର୍ମ ସମାପନ କରି ସଂକୀର୍ତ୍ତନ ମଣ୍ଡଳୀ ସହ ତୀର୍ଥ ଭ୍ରମଣର ଅପେକ୍ଷାରେ ରହିଲୁ । ଅତିଥି ଭବନର ନିକଟସ୍ଥ ଏକ ଛକରେ ଛୋଟ ଛୋଟ ବସ୍

ଜମା ହେବ । ସେଥିରେ ଯେଉଁମାନେ କୀର୍ତ୍ତନ ମଣ୍ଡଳୀ ସହ ଯାଇପାରିବେ ନାହିଁ, ସେହି ବସ୍ ଭିତରେ ଯିବେ ବୋଲି ଇସ୍କନ ବାବାମାନେ ସୂଚନା ଦେଲେ । ପ୍ରାୟ ଅଧଘଣ୍ଟାଏ ଅପେକ୍ଷା ପରେ ଜାଣିବାକୁ ପାଇଲୁ ବସ୍ ଗୁଡ଼ିକ ଏହି ସ୍ଥାନରେ ପହଞ୍ଚିବା ପାଇଁ ଅସମ୍ମତି ପ୍ରକାଶ କରୁଛନ୍ତି । ଇତ୍ୟବସରରେ ଇସ୍କନ ବାବାମାନେ କୀର୍ତ୍ତନମଣ୍ଡଳୀ ସହ ସେଠାରେ ଉପସ୍ଥିତ ହେଲେ । କୀର୍ତ୍ତନ ମଣ୍ଡଳୀ ସହ ଯାତ୍ରା କଲାପରେ ଯେଉଁ ସ୍ଥାନରେ ଥକିଯିବା ସେଠାରୁ ରିକ୍ସାରେ ବା ଅଟୋରେ ଫେରିବା ବିଷୟ ନିଷ୍ପତ୍ତି କରି ଆଗଭର ହେଲୁ । ଆମ ଭଳି ଅସମର୍ଥଙ୍କୁ ପାଦରେ ଚଲାଇ ମନ୍ଦିର ଭ୍ରମଣ କରାଇବାର ଇଚ୍ଛାମୟଙ୍କ ନିର୍ଦ୍ଦେଶ ଥିଲା, ତାକୁ ବଦଳାଇବ କିଏ ? ସର୍ବଥା ଓ ସର୍ବଦା ଆମ ଇସ୍କନ ମଣ୍ଡଳୀର କୀର୍ତ୍ତନ ଦାୟିତ୍ୱ ନିଅନ୍ତି ମଦନ ବାବା । ସେ ଅତି ସଂକ୍ଷିପ୍ତ ପାଦଚଲା ରାସ୍ତାରେ ଅଭୀଷ୍ଟସ୍ଥଳ ପହଞ୍ଚାଇବାରେ ଅଭ୍ୟସ୍ତ । ତାଙ୍କ ପଦାଙ୍କ ଅନୁସରଣ କରି ଯାତ୍ରାରମ୍ଭ କଲୁ ।

ଇସ୍କନ ଆୟୋଜିତ କୁମ୍ଭମେଳାର କାର୍ଯ୍ୟସୂଚୀରେ ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରେ ନୈମିଷାରଣ୍ୟ ତୀର୍ଥ ବିଷୟ ଶୁଣି କାହା କାହା ମୁଖରୁ ନୈମିଷାରଣ୍ୟର ପ୍ରସିଦ୍ଧି ବିଷୟରେ ପ୍ରଶ୍ନ ଶୁଣିବାକୁ ମିଳିଥିଲା । ତେଣୁ ମୁଁ ସ୍ୱଳ୍ପମତିରେ ପରମଶାସ୍ତ୍ର ଭାଗବତ ଅନ୍ୱେଷଣ କରି ନିମ୍ନ ତଥ୍ୟ ସଂଗ୍ରହ କରିଥିଲି ।

"କଳିର ଆଗମନ ଦେଖି,
ମୁନିଏ ସ୍ଥାନ ଉପଲକ୍ଷି ।
ଶୌନକ ଆଦି ମୁନିଗଣେ,
ମିଳିଲେ ନୈମିଷ ଅରଣ୍ୟେ ।"
(ଶ୍ରୀମଦ୍ ଭାଗବଦ, ୧ମ ସ୍କନ୍ଦ, ୪୨,୪୩)

ନୈମିଷଅରଣ୍ୟ ଋଷିମାନଙ୍କ ଦ୍ୱାରା ପୂର୍ଣ୍ଣ ଗୋଟିଏ ପ୍ରାଚୀନ ଅରଣ୍ୟ । ଶୁନକ ଋଷିଙ୍କ ପୁତ୍ର ଶୌନକ ପ୍ରୟାଗ ତୀର୍ଥରେ ଉପସ୍ଥିତ ହୋଇ ଭରଦ୍ୱାଜ ଋଷିଙ୍କ ଆଶ୍ରମରେ କିଛିଦିନ ଆଶ୍ରୟ ଗ୍ରହଣ କଲେ । ମହର୍ଷି ଭରଦ୍ୱାଜଙ୍କ ଉପଦେଶ ଅନୁସାରେ ସେମାନେ ପ୍ରୟାଗ ତୀର୍ଥରେ ପୂଜିତ ବେଣୀମାଧବଙ୍କୁ ଉପାସନା କରି ଖଣ୍ଡିଏ ତପୋଭୂମି ପାଇବା ପାଇଁ ବର ମାଗିଲେ । ବେଣୀମାଧବ ଶୌନକ ଆଦି ଋଷିମାନଙ୍କୁ ବର ଦେଇ କହିଲେ - "ମୋ ଚକ୍ର ତୁମ ଆଗେ ଆଗେ ଯିବ, ତୁମେମାନେ ତା'ରି ଅନୁସରଣ କର । ସେ ଚକ୍ର ଯେଉଁଠାରେ ତଳକୁ ଖସି ପଡ଼ିବ, ସେହିସ୍ଥାନ ହେବ ତୁମମାନଙ୍କର ତପୋଭୂମି ।" ଚକ୍ର ଆକାଶ ପଥରେ ଯାଇ ଗୋମତୀ ନଦୀ ତୀରସ୍ଥିତ



ଶ୍ରୀ ଲଳିତା ମା'ଙ୍କ ପାଖକୁ ଯିବା ରାସ୍ତା (ନୈମିଷାରଣ୍ୟ), ତା. ୧୨.୦୨.୨୦୧୩

(ଉତ୍ତର ପ୍ରଦେଶର ସୀତାପୁର ଜିଲ୍ଲା) ଏକ ଅରଣ୍ୟ ମଧ୍ୟରେ ତଳକୁ ଖସି ପଡ଼ିଲା, ଚକ୍ରର ନେମି (ଧାର) ଯେଉଁଠାରେ ଭୂମି ସ୍ପର୍ଶକଲା, ଋଷିମାନେ ସେହିସ୍ଥାନକୁ ନୈମିଷାରଣ୍ୟ ନାମ ଦେଇ ତପୋଭୂମି ରୂପେ ନିର୍ବାଚିତ କଲେ । ସେମାନେ ଦୀର୍ଘ ଦିନ ବ୍ୟାପୀ ଯଜ୍ଞ କରିବାର ସଂକଳ୍ପ କରି ପ୍ରଥମେ ଦ୍ୱାଦଶ ବର୍ଷ ବ୍ୟାପୀ ଏକ ଯଜ୍ଞ ଆରମ୍ଭ କରିଥିଲେ । (ଅର୍ଥ ଦୀପିକା, ଓଡ଼ିଆ ଭାଗବତ ।) ପ୍ରକାଶକ- ଓଡ଼ିଶା ସାହିତ୍ୟ ଏକାଡେମୀ ।

ଅନ୍ୟାନ୍ୟ ପୁରାଣର ଆଧାରରେ ମଧ୍ୟ ବହୁତ ତଥ୍ୟ ଜାଣିବାକୁ ମିଳିଥାଏ । ଶିବ ପୁରାଣ, ବରାହ ପୁରାଣ ଓ ଦେବୀ ଭାଗବତ ଭଳି ଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ, ଅଠାଅଶୀ ହଜାର ଋଷି ମିଳିତ ହୋଇ ଏଠାରେ ଏକ ବିରାଟ ଯଜ୍ଞର ଆୟୋଜନ କରିଥିଲେ । ଏହି ଯଜ୍ଞ ନିମନ୍ତେ ଦେଶର କୋଣ ଅନୁକୋଣରୁ ମୁନି, ଋଷି, ତପସ୍ୱୀ ନିଜ ନିଜର ଶିଷ୍ୟଗଣଙ୍କ ସହିତ ଉପସ୍ଥିତ ହୋଇଥିଲେ । ଏହି ଯଜ୍ଞରେ ଉପସ୍ଥିତ ଥିବା ବ୍ୟାସଦେବଙ୍କ ଶିଷ୍ୟ ସୁତ ମହାରାଜଙ୍କୁ ଶୌନକାଦି ଋଷିଗଣ ବ୍ୟାସଦେବଙ୍କ ରଚିତ ସକଳ ଶାସ୍ତ୍ର ଶୁଣାଇବା ପାଇଁ ପ୍ରାର୍ଥନା କରିଥିଲେ । ସର୍ବବିଧ ଶାସ୍ତ୍ର ଶ୍ରବଣପରେ ସେମାନେ ନୈମିଷାରଣ୍ୟର ନାମକରଣ ଓ ମହିମା ବିଷୟରେ ପ୍ରଶ୍ନ କରିଥିଲେ ।

ଜିଜ୍ଞାସୁ ଋଷିଗଣଙ୍କର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ବିବିଧ ଗ୍ରନ୍ଥରେ ବର୍ଣ୍ଣିତ ବିଭିନ୍ନ ଉପାଖ୍ୟାନ ଗୁଡ଼ିକୁ ସୁତଜୀ ମହାରାଜ ବର୍ଣ୍ଣନା କରିଥିଲେ । ସୃଷ୍ଟିର ପ୍ରଥମ ପୁରୁଷ ଓ ପ୍ରଥମ ସ୍ତ୍ରୀ ବୋଲି ପରିଚିତ ମନୁ, ଶତରୂପା ଭଗବାନଙ୍କୁ ପାଇବା ଉଦ୍ଦେଶ୍ୟରେ ଏହି ସ୍ଥାନରେ କଠୋର ତପସ୍ୟା କରିଥିଲେ । ଦେବ ଦେବ ମହାଦେବ ପାର୍ବତୀଙ୍କ ସହ ଶାସ୍ତ୍ର ଆଲୋଚନା କରିବା ପାଇଁ ଏହି ସ୍ଥାନଟିକୁ ପ୍ରକୃଷ୍ଟ କ୍ଷେତ୍ର ରୂପେ ମନୋନୀତ କରିଥିଲେ । ଏଠାରେ ରଘୁବର ରାମଚନ୍ଦ୍ର ଲଙ୍କା ବିଜୟ ପରେ ଅଶ୍ୱମେଧ ଯଜ୍ଞ ସଂପାଦନ କରିଥିଲେ । ମହର୍ଷି ବାଲ୍ମିକୀ ଏଠାରେ ଦେବୀ ସୀତାଙ୍କ ସହ ପୁତ୍ର ଲବ ଓ କୁଶଙ୍କୁ ଶ୍ରୀରାମଙ୍କ ସମ୍ମୁଖରେ ଉପସ୍ଥିତ କରାଇଥିଲେ । ସତୀ ଶିରୋମଣି ଜାନକୀ ମାତାଙ୍କର ପୁନଃ ଅଗ୍ନି ପରୀକ୍ଷାର ଅପମାନକୁ ସହ୍ୟ ନକରି ପାରି ସର୍ବଂସହା ଧରିତ୍ରୀ ମା'ନିଜ କୋଳରେ ଏହିସ୍ଥାନରେ ସୁତା ସୀତାଙ୍କୁ ଗ୍ରହଣ କରିଥିଲେ । ବୋଧହୁଏ ଏହାକୁ ଲକ୍ଷ୍ୟ କରି ସ୍ୱଭାବ କବି ଗଙ୍ଗାଧର ନିଜ କାଳଜୟୀ କାବ୍ୟ 'ତପସ୍ୱିନୀ'ରେ ବର୍ଣ୍ଣନା କଲେ -

''ମାତା ଜାଣେ ସୁତା ବେଦନା
ମାତା ନେତ୍ରେ ଦଗ୍ଧମୁଖୀ ଚନ୍ଦ୍ର ବଦନା ।''

ଏହି ପୁରାଣ ପ୍ରସିଦ୍ଧ ନୈମିଷାରଣ୍ୟ ପବିତ୍ର ମାଟିରେ କୀର୍ତ୍ତନ ମଣ୍ଡଳୀ ସହ ମନ୍ଦିର ଦର୍ଶନର ସୌଭାଗ୍ୟ ଲାଭ କରିଥିବାରୁ ଇସ୍କନ ବାବାମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଇଲୁ । ପାଦଚଲା ରାସ୍ତା, ଗଳିକନ୍ଦି ପାର ହୋଇ ପ୍ରଥମେ ପହଞ୍ଚିଲୁ ପରାଶର ମହର୍ଷିଙ୍କ ସୁତ କୃଷ୍ଣ ଦ୍ୱୈପାୟନ 'ବ୍ୟାସ ଗାଦି' ମନ୍ଦିରରେ । ଗୁରୁ ପରଂପରାନୁଯାୟୀ ବ୍ୟାସଦେବ ଉଚ୍ଚ ଆସନରେ ଅଧିଷ୍ଠିତ ଓ ନିମ୍ନରେ ସୁତ ମୁନିଙ୍କ ଆସନ ସ୍ଥାପିତ । ମନ୍ଦିରର ପାଦ ଦେଶରେ ସୁଶୀତଳ ଛାୟା ପ୍ରଦାନକାରୀ ବିରାଟ ପ୍ରାଚୀନ ବଟ ବୃକ୍ଷ । କେତୋଟି ଉଚ୍ଚ ପାହାଚ ଚଢ଼ିଲା ପରେ ମନ୍ଦିର, ପ୍ରଶସ୍ତ ପ୍ରାଙ୍ଗଣ ପରିବେଷ୍ଟିତ ମନୋରମ ଦୃଶ୍ୟ ସମ୍ୱଳିତ ପୂତ ପବିତ୍ର ଶାନ୍ତ ବାତାବରଣ ଦର୍ଶକ ଓ ଭକ୍ତଙ୍କୁ ବିମୋହିତ କରିଥାଏ । ପ୍ରାଚୀର ବକ୍ଷରେ ମାର୍ବଲ ଫଳକରେ ଶାସ୍ତ୍ର ବାଣୀ ଲିଖିତ ଥିବା ଦେଖିବାକୁ ମିଳିଥିଲା । ସେଥିରୁ କେତେଗୋଟି ଏହିପରି -

''ତୀରଥ ବର ନୈମିଷ ବିଖ୍ୟାତା
ଅତି ପୁନିତ ସାଧକ ସିଦ୍ଧି ଦାତା''
(ସନ୍ଥ ତୁଳସୀ ଦାସ ରଚିତ - ରାମ ଚରିତ ମାନସ - ବାଳକାଣ୍ଡ)

* * * * * * *

''ଇନ୍ଦ୍ର ଲୋକସ୍ୟ ବିଖ୍ୟାତଂ
ତୀର୍ଥ ନୈମିଷମତ୍ତମମ୍
ମହାଦେବ ପ୍ରିୟ କରଂ
ମହାପତକ ନାଶନମ୍ ।''

ମନୁ - ଶତରୂପାଙ୍କ ତପସ୍ଥଳର କାନ୍ଥରେ ଲେଖାଯାଇଥିବା ପଂକ୍ତିଟି ଏହିପରି-

''ନ ସୁଖଂ ଦେବରାଜସ୍ୟ
ନ ସୁଖଂ ବୀତ ରାଗସ୍ୟ
ମୁନିଃ ଏକାନ୍ତ ବାସିନଃ ।''

ବ୍ୟାସ ଗାଦି ପରେ ମନୁ ଶତରୂପାଙ୍କ ତପସ୍ଥଳରେ ପହଞ୍ଚିଲୁ । ଯେଉଁଠାରେ ମନୁ - ଶତରୂପା ଭଗବାନଙ୍କ ପରି ପୁତ୍ରଟିଏ କାମନା କରିଥିଲେ, କିନ୍ତୁ ଭଗବାନ ଏକ ଓ ଅଭିନ୍ନ ହୋଇଥିବାରୁ ଭକ୍ତ ଭାବରେ ବନ୍ଧା ହୋଇ ନିଜେ ଭଗବାନ ରାମାବତାର ଗ୍ରହଣ କରିଥିବା ବିଷୟ ଗାଇଡ଼୍ଙ୍କ ମୁହଁରୁ ଶୁଣିବାକୁ ପାଇଲୁ । ଦ୍ୱିତୀୟରେ ପହଞ୍ଚିଲୁ ସୁତ ଗାଦି ମନ୍ଦିରରେ । ଏଠାରେ ଅଠାଅଶୀ ହଜାର ଋଷିଙ୍କୁ ସୁତଜୀ ମହାରାଜ ପୁରାଣ ଶୁଣାଇଥିବା ବିଷୟ ପୂଜକଙ୍କ ଠାରୁ ଶୁଣିଲୁ । ପୂଜକ ମହାଶୟ କେଉଁ ବିଦେଶୀ ଧର୍ମଦ୍ରୋହୀ ଶାସକଙ୍କ ଅମଳରେ କେତେ ଥର ମଠ, ମନ୍ଦିର, ଗାଦି, ଆଶ୍ରମ ଭୂ-ଲୁଣ୍ଠିତ ହୋଇଥିବା ଇତିହାସ ବର୍ଣ୍ଣନା କରି ବର୍ତ୍ତମାନ ପୁନରୁଦ୍ଧାର ପାଇଁ ରସିଦ ସହିତ ଯତ୍ କିଞ୍ଚିତ୍ ଆର୍ଥିକ ସାହାଯ୍ୟ ପାଇଁ ନିବେଦନ କରିଥିଲେ । ବଦାନ୍ୟ ଭକ୍ତ କେତେଜଣ ପୂଜକଙ୍କର ନିବେଦନ ସ୍ୱୀକାର କରୁଥିବା ଦୃଶ୍ୟ ମଧ୍ୟ ଦୃଷ୍ଟିଗୋଚର ହେଉଥିଲା । ପୂଜକଙ୍କର ବର୍ଣ୍ଣନା ଓ ଅବକ୍ଷୟ ମନ୍ଦିର ଦର୍ଶନର ଅନୁଭୂତି ପୂର୍ବ ଶାସକ ଗଣଙ୍କର ଅତ୍ୟାଚାର ଯୋଗୁଁ ମନ୍ଦିରର ଦୂରବସ୍ଥା ତଥା ବର୍ତ୍ତମାନ ଶାସକଙ୍କର ଅବହେଳାର ପ୍ରତିଫଳନ ଆମ ଆଧ୍ୟାତ୍ମିକ ମନକୁ କିଛି କ୍ଷଣ ପାଇଁ ବ୍ୟଥିତ ଓ ଚିନ୍ତିତ କରିପାରିଥିଲା । ରାଜଧାନୀ ଲକ୍ଷ୍ନୌ ସହରର ଦଳୀୟ ଚିହ୍ନ ଧାଡ଼ି ଧାଡ଼ି ହାତୀ ଓ ଶାସକଙ୍କ ପ୍ରତିମୂର୍ତ୍ତି ସ୍ଥାପନ ନିକଟରେ ପ୍ରାଚୀନ ମନ୍ଦିରର ସୁରକ୍ଷା ଦାୟିତ୍ୱ ପ୍ରତି ଦୃଷ୍ଟିପାତ ନ କରିବା ଶାସକ ଗୋଷ୍ଠୀଙ୍କର ହୀନମନ୍ୟତାର ପରିଚୟକୁ ସୁସ୍ପଷ୍ଟ କରୁଥିଲା । ରାଜନୀତି, ଇତିହାସ ଓ ଅର୍ଥନୀତିରୁ ମନକୁ ଫେରାଇ ଆଣି ସର୍ବ ପାପ ହାରିଣୀ 'ଚକ୍ରତ୍ରୀର୍ଥ'ର ଉଚ୍ଚ ପାବଚ୍ଛ ନିକଟରେ ପହଞ୍ଚିଲୁ । ଏକ ବିରାଟ ଆୟତନ ବିଶିଷ୍ଟ ସ୍ଥାନ 'ଚକ୍ରତୀର୍ଥ' । ପୌରାଣିକ ଉପାଖ୍ୟାନ ଅନୁସାରେ ଚକ୍ରର 'ନେମି' ଏହି ନିକଟରେ ପତିତ ହୋଇଥିଲା । ରାଜା ବିକ୍ରମାଦିତ୍ୟ ଓ ରାଣୀ ଅହଲ୍ୟାବାଈ ସେମାନଙ୍କ ରାଜତ୍ୱ

ସମୟରେ ତୀର୍ଥର ପୁନରୁଦ୍ଧାର କରିଥିବା ବିଷୟ ମାର୍ବଲ ଫଳକରେ ଲିପିବଦ୍ଧ ହୋଇ ପର୍ଯ୍ୟଟକ ଓ ଗବେଷକଙ୍କୁ ତଥ୍ୟ ପ୍ରଦାନରେ ସାହାଯ୍ୟ କରୁଥିବା ଦୃଶ୍ୟମାନ ହେଲା । ଚକ୍ରତୀର୍ଥର ପାର୍ଶ୍ୱରେ ବିରାଟ ବଟବୃକ୍ଷ ତଳେ ସରସ୍ୱତୀ ଦେବୀଙ୍କର ଏକ ଛୋଟ ମନ୍ଦିର । ସମ୍ମୁଖରେ ଭିତର ବେଢ଼ାରେ ଶିବାଳୟ, ଉତ୍ତରରେ ଗଣେଶ ମନ୍ଦିର, ପ୍ରାଚୀନ ବଦ୍ରିନାରାୟଣ ମନ୍ଦିର, ରାଧାକୃଷ୍ଣ ମନ୍ଦିର ଏବଂ ଭୂତେଶ୍ୱର ନାଥ ମନ୍ଦିର ଇତ୍ୟାଦି ପରିକ୍ରମା କଲାପରେ ପୂତପାବନ ଚକ୍ରତୀର୍ଥର ଜଳ ମଥାରେ ସିଞ୍ଚନ କରି ସେଠାରୁ ବିଦାୟ ନେଲୁ । ତା'ପରେ ଆମର ଲକ୍ଷ୍ୟ ସ୍ଥଳ ଥିଲା ଗୋମତୀ ତୀର । ପଥ ପାର୍ଶ୍ୱରେ ଅନେକ ମନ୍ଦିର ଦେଖାଯାଉଥିଲେ ମଧ୍ୟ ସେଠାରେ ପହଞ୍ଚି ନ ପାରି ରାସ୍ତାରୁ ହାତ ଟେକି ପ୍ରଣାମ ଜଣାଉଥିଲୁ । ଗୋମତୀ ନଦୀର ସୁଉଚ୍ଚ ପଥର ବନ୍ଧର ନିମ୍ନ ଦେଶରେ ଯାତ୍ରା କରୁଥିବା ସମୟରେ କୀର୍ତ୍ତନ ମଣ୍ଡଳୀ ସହ ମହାମନ୍ତ୍ର ଗାନ କରି ପଥଶ୍ରମକୁ ଲାଘବ କରୁଥିଲୁ । ଯଥାର୍ଥରେ ମହାମନ୍ତ୍ର ଉଚ୍ଚାରଣ ଓ ବାଦ୍ୟଯନ୍ତ୍ରର ସୁମଧୁର ଧ୍ୱନି ଦୁର୍ବଳ ପାଦ ଓ ଅବଶ ମନକୁ ସବଳ ଓ ସତେଜ କରିବା ପାଇଁ ଶକ୍ତି ଯୋଗାଉଥିଲା । ଗୋମତୀ ତୀରରେ ପହଞ୍ଚି ଯାହା ଦେଖିଲୁ, ମଥା ଘୁରିଗଲା, ରାଜ୍ୟ ସରକାରଙ୍କ ଦ୍ୱାରା ସଦ୍ୟ ନିର୍ମିତ ୫୦/୫୫ଟି ପାହାଚ ଦେଖାଯାଉଥିଲା । ପାହାଚ ସଂଖ୍ୟା ହିସାବ ନ କରି ବଳବାନ୍ ଯାତ୍ରୀଙ୍କ ପଦାଙ୍କ ଅନୁସରଣ କରି ବୀର ଦର୍ପରେ ଆଗେଇଲୁ । ପାହାଚ ଉଠିଲା ପରେ ଚଟାଣଟିଏ ଦେଖାଗଲା, ପୁଣି ସେତିକି ପାହାଚ ଓହ୍ଲାଇବାକୁ ହେଲା । ଓହ୍ଲାଇବା ପରେ ମାଟି ରାସ୍ତା ଓ ନଦୀପଠାକୁ ଯିବା ପାଇଁ ଅନ୍ୟ କିଛି ବ୍ୟବସ୍ଥା ନ ଥିଲା । ଆବଡ଼ାଖାବଡ଼ା ପଥର ଉପରେ ପାଦ ରଖି ୫/୭ ମିଟର ତଳକୁ ଓହ୍ଲାଇବା ମଧ୍ୟ ବିଶେଷ କଷ୍ଟକର ମନେ ହେଉ ନ ଥିଲା । ତା'ପରେ ନଦୀର ବାଲୁକା ଶଯ୍ୟା ଅତିକ୍ରମ କରି ଗୋମତୀ ତୀରରେ ପହଞ୍ଚିଲୁ । ପୁରୁଷ କେତେଜଣ ସେଠାରେ ସ୍ନାନ କଲେ । ସମୟ ସ୍ୱଳ୍ପ ଓ ଆବଶ୍ୟକ ସୁବିଧାର ଅଭାବ ଯୋଗୁଁ ଆମେ କେବଳ ଜଳ ସିଞ୍ଚନ କରି ମନକୁ ତୃପ୍ତ କରିଥିଲୁ । ଗୋମତୀ ତୀରରୁ ଦର୍ଶନ ସାରି ଫେରିବା ପରେ କ୍ଳାନ୍ତ ଓ ଅବସନ୍ନ ଶରୀରରେ ଅଧିକ ଦୂର ପଥ ଯାତ୍ରା କରିବା ଇଚ୍ଛା ନ ଥିଲେ ମଧ୍ୟ ସେଠାରୁ ଫେରିବାର ଉପାୟ ନ ଥିଲା । କିଛି ଦୂର ବ୍ୟବଧାନରେ ଛୋଟ ବଡ଼ ମନ୍ଦିର ଗୁଡ଼ିଏ ଦେଖାଯାଉଥିଲା । ସେହି ସ୍ଥାନ ମାନଙ୍କରେ ଆମ ଭଳି ତୀର୍ଥ ଯାତ୍ରୀମାନେ ନିଜ ନିଜ ଯାନବାହନ ସହ ଉପସ୍ଥିତ ଥିଲେ । ସର୍ବ ସାଧାରଣଙ୍କ ପାଇଁ କୌଣସି ସୁବିଧା ନ ଥିଲା । ଅନନ୍ୟୋପାୟ ହୋଇ କୀର୍ତ୍ତନ ମଣ୍ଡଳୀ ପଛରେ ଅନୁଧାବନ କଲୁ । ପର୍ବତ ଉପରେ ଅଧିଷ୍ଠିତ ଦକ୍ଷିଣମୁଖୀ ହନୁମାନ ମନ୍ଦିର ପାଦ ଦେଶରେ ପହଞ୍ଚିଲୁ । ସେଠାରେ ଅଙ୍କାବଙ୍କା ୪୦/୫୦ଟି ଉଚ୍ଚ ଉଚ୍ଚ ପାହାଚ ଥିବା ବିଷୟ ଯାତ୍ରୀମାନଙ୍କ

ଠାରୁ ଶୁଣିଲୁ । ଅପର ପାର୍ଶ୍ୱରେ ପହଞ୍ଚିବାକୁ ହେଲେ ପାହାଡ଼ ଚଢ଼ିବାକୁ ହେବ ନଚେତ୍ ସମତଳରେ ଗଲେ ଅଧିକ ରାସ୍ତା ଅତିକ୍ରମ କରିବାକୁ ପଡ଼ିବ । ଜନବସତି ଶୂନ୍ୟ ଅଚିହ୍ନା ସ୍ଥାନରେ ଇସ୍କନ ବାବାଙ୍କ ଠାରୁ ଅଲଗା ହେବା ଉଚିତ୍ ମନେ ନ କରି 'ବଜରଂଗ ବଲୀ'ଙ୍କୁ ସ୍ମରଣ କରି ପାହାଡ଼ ଚଢ଼ିବା ଆରମ୍ଭ କଲୁ । ଶ୍ରୀ ହନୁମାନଙ୍କ ଆରତୀ ଦର୍ଶନ କୁମ୍ଭ ସଂକ୍ରାନ୍ତିର ଶୁଭ ଅବସରରେ ସଂପାଦିତ ହୋଇଥିବାରୁ ଆୟୋଜକ ଇସ୍କନ ବାବାଙ୍କୁ ଆଭୂମ ପ୍ରଣାମ ଜଣାଇଲୁ । ଅଳ୍ପ କିଛି ବାଟ ଗଲାପରେ 'ପାଣ୍ଡବ କିଲା' ନିକଟରେ ପହଞ୍ଚିଲୁ । ମହାଭାରତର ବର୍ଣ୍ଣନା ଅନୁଯାୟୀ ଅଜ୍ଞାତବାସ ସମୟରେ ପାଣ୍ଡବମାନେ ବିରାଟ ରାଜଦରବାରରେ ଆଶ୍ରୟ ନେବା ସମୟରେ ଏଠାରେ ରହୁଥିଲେ । ସୁଶୀତଳ ଛାୟା ପ୍ରଦାନକାରୀ ବିରାଟ ବୃକ୍ଷ ପରିବେଷ୍ଟିତ ଆଶ୍ରମସ୍ଥ ଛୋଟ ବଡ଼ ମନ୍ଦିର ଦର୍ଶନ ପରେ ଶକ୍ତିପୀଠ ମା' ଲଳିତା ଦେବୀଙ୍କ ମନ୍ଦିର ଅଭିମୁଖେ ଯାତ୍ରା କଲୁ । କେତୋଟି ଛୋଟ ବଡ଼ ମନ୍ଦିର ଅତିକ୍ରମ କରି ମା'ଙ୍କ ମନ୍ଦିର ମଧ୍ୟରେ ପ୍ରବେଶ କଲୁ । ଇସ୍କନ ବାବା ବୁଝାଇଲେ ଦକ୍ଷ ଯଜ୍ଞରେ ସତୀଙ୍କର ଅର୍ଦ୍ଧ ଦଗ୍ଧ ଶରୀର ଧାରଣ କରି ଦେବ ଦେବ ମହାଦେବଙ୍କ ମହାତାଣ୍ଡବ ନୃତ୍ୟ ସମୟରେ ସତୀଙ୍କ ଅଙ୍ଗ ଛିଟିକିପଡ଼ି ଭାରତ ବର୍ଷର ୫୧ଟି ସ୍ଥାନରେ ପତିତ ହୋଇଥିଲା । ସେହି ସ୍ଥାନ ଗୁଡ଼ିକ ଶକ୍ତି ପୀଠ ନାମରେ ପରିଚିତ । ଏହି ସ୍ଥାନରେ ମା'ଙ୍କ ବକ୍ଷସ୍ଥଳ ପଡ଼ିଥିଲା ଓ ଏହି ସ୍ଥାନର ଆରାଧ୍ୟା ଦେବୀ ମା' ଲଳିତା ଦେବୀ ନାମରେ ପୂଜିତା ହେଲେ । ମା'ଙ୍କ ଦର୍ଶନ ପରେ ମଧ୍ୟାହ୍ନ ପ୍ରସାଦ ସେବନ ଉଦ୍ଦେଶ୍ୟରେ 'କାଳୀ ମନ୍ଦିର' ଧର୍ମଶାଳାରେ ଉପନୀତ ହେଲୁ । 'କାଳୀ ମନ୍ଦିର' ଧର୍ମଶାଳାର ସମ୍ମୁଖ ପ୍ରକୋଷ୍ଠରେ ଏକ ବିଶାଳ କାଳୀମୂର୍ତ୍ତି ବିରାଜିତ । ପ୍ରବଚନ ଶୁଣିବା ପାଇଁ ପ୍ରଶସ୍ତ ପ୍ରକୋଷ୍ଠ ସୁସଜ୍ଜିତ । ଭିତର ପାର୍ଶ୍ୱରେ ପ୍ରସାଦ ପ୍ରସ୍ତୁତି ଓ ବିତରଣର ବ୍ୟବସ୍ଥା କରାଯାଇଛି । ସେଠାରେ ଗରମ ଗରମ ପ୍ରସାଦ ସେବନ ପରେ 'ଦୀକ୍ଷିତ ଅତିଥି ଭବନ'କୁ ଫେରି ନିଜ ନିଜ ଲଗେଜ୍ ସହ ଅଯୋଧ୍ୟା ଯିବା ପାଇଁ ବସ୍‌ରେ ଉଠିଲୁ । ଅପରାହ୍ନ ସମୟରେ ରାସ୍ତାରେ ବସ୍ ଅଟକିଲା 'ମିଶ୍ରିତ ତୀର୍ଥ' ନିକଟରେ । ମିଶ୍ରିତ ତୀର୍ଥରେ ଥିବା ଏକ ବିରାଟ କୁଣ୍ଡର ପାଣି ମଥାରେ ସିଞ୍ଚନ କରି ଗାଇଡ୍‌ଙ୍କ ମୁହଁରୁ ଏହି ସ୍ଥାନର ନାମକରଣ ଓ ମହିମା ବିଷୟ ଶୁଣିବା ପାଇଁ ପ୍ରଶସ୍ତ ପ୍ରାଙ୍ଗଣରେ ଉପବେଶନ କଲୁ । ଗାଇଡ୍ ବୁଝାଇଲେ - ଶ୍ରୀମଦ୍ ଭାଗବତର ବର୍ଣ୍ଣନାନୁସାରେ ଦଧୀଚି ମୁନିଙ୍କ ଦେହତ୍ୟାଗର ସ୍ଥଳ ଏହି ପବିତ୍ର ସ୍ଥାନ ଦଧୀଚି ମୁନିଙ୍କର ତପସ୍ୟାର ତେଜରେ କୌଣସି ରାକ୍ଷସ ଏହି ଆଶ୍ରମ ନିକଟରେ ପ୍ରବେଶ କରିବାକୁ ସାହସ କରିପାରୁ ନ ଥିଲେ । ତେଣୁ ଦୀର୍ଘଦିନର ଦେବାସୁର ସଂଗ୍ରାମ ଶେଷ ପରେ ଦେବରାଜ ଇନ୍ଦ୍ର ସବୁପ୍ରକାର ଅସ୍ତ୍ରଶସ୍ତ୍ରକୁ ସୁରକ୍ଷା ଦୃଷ୍ଟିରୁ ମୁନିଙ୍କ

ଆଶ୍ରମରେ ରଖି ଦେଇଗଲେ । ଏହାପରେ ଏକ ହଜାର ବର୍ଷ ବିତିଗଲା । ଦେବଗଣ ଅସ୍ତ୍ରଶସ୍ତ୍ର ଫେରାଇ ନେବା କଥା ସଂପୂର୍ଣ୍ଣ ଭୁଲିଗଲେ । ବୃତ୍ରାସୁର ଯେତେବେଳେ ସ୍ୱର୍ଗଲୋକ ଉପରେ ଆକ୍ରମଣ କଲା ସେତେବେଳେ ଦେବତା ମାନଙ୍କର ଅସ୍ତ୍ରଶସ୍ତ୍ରର ଠିକଣା ସ୍ଥାନ ମନେପଡ଼ିଲା । ଦେବଗଣ ଦଧୀଚି ମୁନିଙ୍କର ଆଶ୍ରମରେ ପହଞ୍ଚି ଅସ୍ତ୍ରଶସ୍ତ୍ର ଫେରାଇବା ପାଇଁ ମୁନିଙ୍କୁ ନିବେଦନ କଲେ । ଅସ୍ତ୍ରଶସ୍ତ୍ରକୁ ବାହ୍ୟ ଶତ୍ରୁ ଆକ୍ରମଣରୁ ରକ୍ଷା କରିବା ପାଇଁ ଅସ୍ତ୍ରଶସ୍ତ୍ର ଧୌତ ଜଳକୁ ନିଜେ ପାନ କରି ଦେଇଥିବା ବିଷୟ ମୁନି ଜଣାଇଲେ । ଯେହେତୁ ଅସ୍ତ୍ରଶସ୍ତ୍ରର ଶକ୍ତି ନିଜ ଶରୀରରେ ମିଶ୍ରିତ ହୋଇଯାଇଅଛି, ତେଣୁ ନିଜ ଶରୀରର ଅସ୍ଥିରୁ ବଜ୍ର ତିଆରି କରି ଅସୁର ସଂହାର କରିବା ଉପାୟ ବୁଝାଇଦେଲେ । ଏହି ସମୟରେ ଦେବରାଜ ଇନ୍ଦ୍ର ଦଧୀଚି ମୁନିଙ୍କ ସ୍ନାନ ପାଇଁ ସମସ୍ତ ତୀର୍ଥର ଜଳ ଏକତ୍ର କରିବା ବ୍ୟବସ୍ଥା କଲେ । ସମସ୍ତ ତୀର୍ଥର ଜଳ ମିଶ୍ରିତ ହୋଇଥିବାରୁ ଏହି ପବିତ୍ର ସ୍ଥାନର ନାମ 'ମିଶ୍ରିତ ତୀର୍ଥ' ବୋଲି ବିଖ୍ୟାତ ହୋଇଛି । ମିଶ୍ରିତ ତୀର୍ଥର ଜଳରେ ଅବଗାହନ କରି ଧ୍ୟାନରେ ବସିବା ସମୟରେ ଏକ ଗୋମାତା ମୁନିଙ୍କର ସମଗ୍ର ଶରୀରକୁ ଲେହନ କଲା । ଚର୍ମ ଲେହନ ପରେ ଶରୀରରେ ରହିଥିବା ଅସ୍ଥିରେ ବଜ୍ର ନିର୍ମିତ ହୋଇ ବୃତ୍ରାସୁର ସଂହାର କରାଯାଇଥିଲା । ସମସ୍ତ ବୃତ୍ତାନ୍ତ ଗାଇଡ୍‌ଙ୍କ ମୁହଁରୁ ଶୁଣିବା ପରେ ସେଠାରେ ଥିବା ଶିବ ମନ୍ଦିର ଓ ମୁନି ଦଧୀଚିଙ୍କର ପ୍ରତିମୂର୍ତ୍ତି ଦର୍ଶନ ସାରି ବସ୍‌ରେ ଚଢ଼ିଲୁ । ଦଧୀଚିଙ୍କ ଆଶ୍ରମ ଦର୍ଶନ ମନ ମଧ୍ୟରେ କ୍ଷଣକ ପାଇଁ ମହାନ୍ ଭାରତୀୟ ପରଂପରାର ନିଃସ୍ୱାର୍ଥ ଚରମ ତ୍ୟାଗର କାହାଣୀ ମନେପକାଇ ଅପୂର୍ବ ଶିହରଣ ସୃଷ୍ଟି କରୁଥାଏ । ବସ୍ ମଧ୍ୟରେ ପୌରାଣିକ ଉପାଖ୍ୟାନ ଓ ଉଦାହରଣ ବିଷୟ ଆଲୋଚନା କରୁ କରୁ ବସ୍ ସଂାଧ ଚା'ପାନ ପାଇଁ ରାଜ୍ୟ ରାଜପଥର 'ଓଁ' ଢ଼ାବାରେ ଅଟକିଲା । ରାସ୍ତା ସାରା ଟ୍ରାଫିକ୍ ନିୟନ୍ତ୍ରଣକୁ ଅତିକ୍ରମ କରି ବହୁ କଷ୍ଟରେ ରାତ୍ରି ୮ଘଣ୍ଟା ୩୦ମି.ରେ ବସ୍ ଅଯୋଧ୍ୟାର ବସ୍ ଷ୍ଟପ୍‌ରେ ପହଞ୍ଚିଲା । ସେଠାରେ ଯାତ୍ରୀମାନଙ୍କର ନିଜ ନିଜର ବିଶ୍ରାମ ସ୍ଥଳର ନାମ ଘୋଷଣା କରାଗଲା । ଟ୍ରାଫିକ୍ ପୋଲିସ୍‌ର କଡ଼ା ନିୟନ୍ତ୍ରଣ ହେତୁ ଧର୍ମଶାଳାରେ ପହଞ୍ଚାଇବା ପାଇଁ କୌଣସି ରିକ୍ସା ଚାଳକ, ଅଟୋ ଚାଳକ ମନା କରୁଥାନ୍ତି । ରାତି ବଢୁଥାଏ ତେଣୁ ଆଉ ଅଧିକ ସମୟ ଅପେକ୍ଷା ନ କରି ପ୍ରବଳ ଜନ ଗହଳି ଭିତରେ ପଦ ଯାତ୍ରାରେ ଆମ ଲକ୍ଷ୍ୟ ସ୍ଥଳ 'ହନୁମାନ ବାଗ୍'ରେ ପହଞ୍ଚିବା ପାଇଁ ଅଣ୍ଟା ଭିଡ଼ିଲୁ । ମହାକୁମ୍ଭ ସ୍ନାନ ପରେ ଓ ପୂର୍ବରୁ ଅଯୋଧ୍ୟାରେ ରାମଲାଲାଙ୍କ ଦର୍ଶନ ପାଇଁ ଅଯୋଧ୍ୟା ସହରରେ ଲୋକାରଣ୍ୟ ସୃଷ୍ଟି ହୋଇଥିଲା । ପାଖାପାଖି ୦୫ କିଲୋମିଟର ରାସ୍ତା ଲଗେଜ୍ ସହ ଯାତ୍ରା କରୁଥିବା ସମୟରେ ଲକ୍ଷ୍ୟସ୍ଥଳରୁ ବାକି ରହିଥିବା ଅଧ କିଲୋମିଟର ଦୂରରୁ ଏକ ରିକ୍ସାର ସନ୍ଧାନ

ପାଇଲୁ । ଲଗେଜ୍ ରିକ୍ସାରେ ଉଠାଇ ଯେନ କେନ ଉପାୟରେ 'ହନୁମାନ ବାଗ୍'ରେ ପହଞ୍ଚିଲୁ । ତଳ ମହଲାର ୦୬ ନଂ ପ୍ରକୋଷ୍ଠରେ ପ୍ରବେଶ କରି ନିତ୍ୟ କର୍ମ ସାରି ରାତ୍ରି ପ୍ରସାଦ ସେବନ ସ୍ଥାନରେ ଉପସ୍ଥିତ ହେଲୁ । ଯାତ୍ରୀମାନଙ୍କର ସେଠାରେ ପହଞ୍ଚିବାର ଅସୁବିଧାକୁ ନେଇ ଏକ ସରଗରମ ଆଲୋଚନା କିଛି ସମୟ ପାଇଁ ଚାଲିଲା । ତା'ପରେ ଜାନକୀ ରାମଙ୍କୁ ସ୍ମରଣ କରି ବିଶ୍ରାମ ନେଲୁ ।

**ତା.୧୩.୦୨.୨୦୧୩, ବୁଧବାର**

ନିତ୍ୟକର୍ମ ସମାପନ ପରେ ସକାଳ ୮ ଘଣ୍ଟା ୩୦ମିନିଟ୍‌ରେ କୀର୍ତ୍ତନ ମଣ୍ଡଳୀ ସହ ପୁଣ୍ୟତୋୟା ସରଜୁ ନଦୀ ଅଭିମୁଖେ ଯାତ୍ରାରମ୍ଭ କଲୁ । ଗତକାଲିର ରାସ୍ତାର ଭିଡ଼ଠାରୁ ସରଜୁ ନଦୀକୂଳ ଅଧିକ ଭିଡ଼ ଥିଲା । ସରଜୁ କୂଳର ମାଟି ଏକ ପ୍ରକାର କଳା ଚିକିଟା ମାଟି ସେଠାରେ ପାଦ ଖସିଯିବାର ଯଥେଷ୍ଟ ସମ୍ଭାବନା ରହିଥିବା ଦୃଷ୍ଟିରୁ ସରକାର ଓ ସ୍ୱେଚ୍ଛାସେବୀ ସଂଘ ଛଣ ଓ ପାଲକୁଟା ବିଛାଇଛନ୍ତି । ସରଜୁ ନଦୀ ଜଳରେ କେତେଜଣ ସ୍ନାନ ଓ ନଦୀ କୂଳରେ କେତେଜଣ ପିଣ୍ଡଦାନ କଲେ । ପ୍ରବଳ ଭିଡ଼ ଦୃଷ୍ଟିରୁ କେବଳ ମଥାରେ ସରଜୁ ଜଳ ସିଞ୍ଚନ ବ୍ୟତୀତ ଆମ ପାଖରେ ଅନ୍ୟ କିଛି ସମ୍ଭବ ନଥିଲା । ସରଜୁ କୂଳରୁ ଫେରି ଦିନ ୯ ଘଣ୍ଟା ସମୟରେ ପ୍ରଥମେ ଜାନକୀ ରାମ ମନ୍ଦିର, ପ୍ରାଚୀନ ମହାଦେବ ମନ୍ଦିର, ଶ୍ରୀ ଗଣେଶ ମନ୍ଦିର ଓ ବୀର ହନୁମାନ ମନ୍ଦିରରେ ଦର୍ଶନ ଶେଷ କରି ଶେଷରେ 'ହନୁମାନ ବାଗ୍'ରେ ପହଞ୍ଚିଲୁ । ମଧ୍ୟାହ୍ନ ପ୍ରସାଦ ସେବନ ପରେ ମାତ୍ର କେତେ ମିନିଟ୍ ବିଶ୍ରାମ ନେଇ ରାମ ଜନ୍ମଭୂମି ଦର୍ଶନ ପାଇଁ ବାହାରିଲୁ । ଧର୍ମଶାଳାର ପ୍ରବେଶ ଦ୍ୱାରରୁ ଅଟୋରେ ବାହାରି କମ୍ ସମୟ ମଧ୍ୟରେ ରାମଲାଲାଙ୍କ ଦର୍ଶନ ଧାଡ଼ି ନିକଟରେ ପହଞ୍ଚିଲୁ । ସେତେବେଳକୁ ଅପରାହ୍ନ ୩ଟା । ରାମ ମନ୍ଦିର ସଂଧ୍ୟା ୫ଟାରେ ବନ୍ଦ । ନିର୍ଦ୍ଧାରିତ ସମୟ ପୂର୍ବରୁ ଲମ୍ବା ଧାଡ଼ି ଅତିକ୍ରମ କରି ଲାଲାଙ୍କ ନିକଟରେ ପହଞ୍ଚିବା ନେଇ ମନରେ ସନ୍ଦେହ ସୃଷ୍ଟି ହେଉଥିଲା । ଦୀର୍ଘ ସମୟ ଧାଡ଼ିରେ ଠିଆହେଲାପରେ ପ୍ରବଳ ଠେଲା ପେଲା ସହ୍ୟ କରି ମନ୍ଦିରର ମୁଖ୍ୟ ଫାଟକ ସମ୍ମୁଖରେ ପହଞ୍ଚିଲୁ । ଏଠାରୁ ପୁରୁଷ ଓ ମହିଳାଙ୍କ ଧାଡ଼ି ଅଲଗା ଅଲଗା ହୋଇଥାଏ । ଇସ୍କନ ଆୟୋଜିତ ଉତ୍ତର ଭାରତ ତୀର୍ଥଯାତ୍ରା ସମୟରେ ୨୦୧୦ ମସିହାରେ ଆମେ ଏହି ମନ୍ଦିର ଦର୍ଶନର ସୁଯୋଗ ଲାଭ କରିଥିଲୁ । ସେତେବେଳେ ରାମ ଜନ୍ମଭୂମି ଓ ବାବ୍ରି ମସ୍‌ଜିଦ୍ ସମ୍ବନ୍ଧୀୟ ସୁପ୍ରିମ କୋର୍ଟର ରାୟ ସଦ୍ୟ ପ୍ରକାଶିତ ହୋଇଥିବାରୁ ୧୪୦୦୦ ପୁଲିସ୍‌ର ଛାଉଣୀ ରହିଥିଲା ଓ ପ୍ରତ୍ୟେକ ଯାତ୍ରୀଙ୍କୁ ତନ୍ନ ତନ୍ନ କରି ବହୁତ ଥର ଛୁଞ୍ଚି ମାଛି ପରୀକ୍ଷା କରାଯାଉଥିଲା । ଏହିଥର

ଯଦିଓ ବାରମ୍ବାର ପରୀକ୍ଷାର ବ୍ୟବସ୍ଥା ନ ଥିଲା ତଥାପି ଅଳ୍ପ କେତେ ଥର ଯାଞ୍ଚ ପରେ ଜଣକିଆ ଧାଡ଼ିରେ (ଲୁହା ଜାଲିର ବାଡ଼ ଭିତରେ ପୁରୁଷ ମହିଳା ଏକତ୍ର ଜଣକ ପଛରେ ଜଣେ) କିଛି ବାଟ ଅତିକ୍ରମ କରିବାକୁ ପଡ଼ିଲା, ଦର୍ଶନ ପାଇଁ ଅପେକ୍ଷା କରିବା ସମୟରେ ଏଠାରେ ଏକ ପ୍ରକାର ବିଚିତ୍ର ଅନୁଭୂତି ଅନୁଭବ ହୋଇଥାଏ । ଦର୍ଶନରେ ଏକାଠି ଆସିଥିବା ସମସ୍ତ ଯାତ୍ରୀ ତଥା ନିଜର ଆତ୍ମୀୟଙ୍କୁ ଏଠାରେ ମିଶିବାର ସୁଯୋଗ ନ ଥାଏ । ଅପରିଚିତ ପରିବେଶ, ଅଚିହ୍ନା ମୁହଁ । ଏହି ପରିପ୍ରେକ୍ଷୀରେ ଦାମ୍ଭିକ ମାନବର ସବୁ ଦମ୍ଭ, ସାହସ ଚୁର୍‌ମାର୍ ହୋଇଯାଏ । ଏଠାରେ ସାହା ଭରସା କେବଳ ରାମଲାଲା । ସେ ଇଚ୍ଛା କଲେ ଦର୍ଶନ ମିଳିବ, ଅଜଣା ଯାତ୍ରୀ ଓ ପୋଲିସ୍ ମାଧ୍ୟମରେ ରାମଲାଲାଙ୍କ ସହାୟତାର ହାତ ଲମ୍ବିଯିବ, ଅନ୍ୟଥା ଗତି ନାସ୍ତି, ଦୀର୍ଘ ସମୟ ଠେଲାପେଲାରେ ଅଣନିଃଶ୍ୱାସୀ ହୋଇ ୪ଘ.୫୫ମି.ରେ ଲାଲାଙ୍କ ଦର୍ଶନ ମିଳିଲା, ଗତଥର ଅପେକ୍ଷା ଏଥର କିଛି ଅଧିକ ସମୟ ଦର୍ଶନର ସୁଯୋଗ ପାଇଥିଲୁ ।

ଅଯୋଧ୍ୟାର ନାମକରଣ, ଉତ୍ପତ୍ତି ଓ ରକ୍ତ ରଂଜିତ ଇତିହାସ ବିଷୟରେ ଏଠାରେ ସାମାନ୍ୟ ଆଲୋକପାତ କଲେ ସନ୍ଦେହ ଦୂରୀଭୂତ ହୋଇପାରିବ ।

" 'ଅ' କାରେ ବ୍ରହ୍ମ ରୂପସ୍ୟ
'ଧ' କାରେ ରୁଦ୍ର ରୂପତେ
'ଯ' କାରେ ବିଷ୍ଣୁ ରୂପସ୍ୟ
'ଅଯୋଧ୍ୟା' ନାମ ରାଜତେ ।"

ଅର୍ଥାତ୍ 'ଅଯୋଧ୍ୟା' ଶବ୍ଦରେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ନିବାସ ଅଟେ । ସ୍ୱୟଂ ନାରାୟଣ ଏଠାରେ ଆବିର୍ଭୂତ ହୋଇଥିବାରୁ ଏହାକୁ 'ସାକେତ' ମଧ୍ୟ କୁହାଯାଏ । ଭାରତ ବର୍ଷରେ ଅଯୋଧ୍ୟା ନଗରୀକୁ ଦୁର୍ଗ ଓ ଗଡ଼ଖାଇ ଦ୍ୱାରା ଏପରି ପରିବେଷ୍ଟିତ କରାଯାଇଥିଲା ଯେ ଏହାକୁ ଶତ୍ରୁ ଜୟ କରିବା ଅସମ୍ଭବ ହୋଇ ପଡ଼ିଥିଲା । ତେଣୁ ଏହି ନଗରୀର ନାମ 'ଅଯୋଧ୍ୟା' । ଭାରତ ବର୍ଷର ମୋକ୍ଷ ଦାୟିକା ସପ୍ତନଗରୀ ମଧ୍ୟରୁ ଆଦ୍ୟ ନଗରୀ 'ଅଯୋଧ୍ୟା'। "ଅଯୋଧ୍ୟା, ମଥୁରା, କାଶୀ, କାଞ୍ଚି ଅବନ୍ତିକା,

ଦ୍ୱାରାବତୀ ମାୟାପୁରୀ ସପ୍ତତୀର୍ଥ ମୋକ୍ଷ ଦାୟିକା ।"

ଅବନ୍ତିକା ଅର୍ଥାତ ଉଜ୍ଜୟିନୀ ଭଗବାନ ବିଷ୍ଣୁଙ୍କ ଚରଣ, କାଞ୍ଚିପୁରୀ କଟିଭାଗ, ଦ୍ୱାରିକାପୁରୀ ନାଭି, ମାୟାପୁରୀ (ହରିଦ୍ୱାର) ହୃଦୟ, ବେକଭାଗ ମଥୁରା ଏବଂ କାଶୀ ନାସିକା ସ୍ଥଳ ଅଟେ । ଅଯୋଧ୍ୟା ପୁରୀ ଭଗବାନଙ୍କ ମସ୍ତକ ଅଟେ ।

(ରୁଦ୍ର ଜାମଳ)

ସୃଷ୍ଟିର ଆଦିପୁରୁଷ ରୂପେ ପରିଚିତ 'ମନୁ' ଏହି ନଗରୀକୁ ଭଗବାନ ବୈକୁଣ୍ଠନାଥଙ୍କ ଠାରୁ ବୈକୁଣ୍ଠରୁ ମାଗି ଆଣି ପୃଥିବୀରେ ଅବସ୍ଥାପିତ କରିଥିଲେ । ସେ ଏଠାରେ ଅନେକ ବର୍ଷ ରାଜତ୍ୱ କଲା ପରେ 'ଇକ୍ଷ୍ୱାକୁ'ଙ୍କୁ ପ୍ରଦାନ କଲେ । ତା'ପରେ ୬୨ ପିଢ଼ି ପରେ ଭଗବାନ ଶ୍ରୀରାମଚନ୍ଦ୍ର ଏଠାରେ ନର ଅବତାର ଗ୍ରହଣ କରିଥିଲେ ।

ଅଯୋଧ୍ୟା ନଗରୀର ଇତିହାସରୁ ଜଣାଯାଏ ଏଠାରେ ବୌଦ୍ଧ, ଜୈନ ଓ ଶିଖ୍ ଧର୍ମର ସ୍ମାରକୀମାନ ରହିଛି । ପ୍ରସିଦ୍ଧ ଚୀନ ପରିବ୍ରାଜକ ଫାହିୟାନଙ୍କ ବିବରଣୀରୁ ଜଣାଯାଏ ଯେ ବୌଦ୍ଧ ଧର୍ମର ଜନ୍ମସ୍ଥାନ ଅଯୋଧ୍ୟା । ଏଠାରୁ ଏହି ଧର୍ମ ବ୍ରହ୍ମଦେଶ, ଶ୍ୟାମ, ଚୀନ, ଜାପାନ, ତିବ୍ବତ ଓ ଶ୍ରୀଲଙ୍କା ଇତ୍ୟାଦି ଦେଶକୁ ବ୍ୟାପିଥିଲା । ଏଠାରେ ବୁଦ୍ଧଦେବ ୧୬ ବର୍ଷ ଅବସ୍ଥାନ କରିଥିଲେ । ହୁଏନ୍‌ସାଂଙ୍କ ''ଭାରତ ଯାତ୍ରା'' ପୁସ୍ତକରୁ ଅଯୋଧ୍ୟାରେ ବୌଦ୍ଧ ଧର୍ମର ଅବସ୍ଥିତି ବିଷୟ ଜାଣିବାକୁ ମିଳିଥାଏ ।

ପ୍ରାଚୀନ ଜୈନ ମନ୍ଦିର ମାନଙ୍କରୁ ଜୈନଧର୍ମ ଓ ଜୈନଧର୍ମ ପ୍ରଚାରକଙ୍କ ସମ୍ବଳିତ କିଛି ପ୍ରମାଣ ଜୈନ ଧର୍ମର ଅବସ୍ଥିତିର ସୂଚନା ଦିଏ । ପ୍ରାଚୀନ ଓ ନୂତନ 'ବିରାଟ ବିରାଟ ଗୁରୁଦ୍ୱାର ଏଠାରେ ପରିଲକ୍ଷିତ ହୋଇଥାଏ ।

ପୌରାଣିକ ବର୍ଣ୍ଣନାନୁସାରେ ଆଜିକୁ ୯ଲକ୍ଷ ବର୍ଷ ପୂର୍ବେ ତ୍ରେତୟାଯୁଗର ଚତୁର୍ଥ ଚରଣରେ ସାକ୍ଷାତ୍ ପରଂବ୍ରହ୍ମ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ଅଯୋଧ୍ୟାର ପାବନ ଭୂମିରେ ଅବତାର ଗ୍ରହଣ କରିଥିଲେ । ନଶ୍ୱର ଜଗତରେ ମାନବ ଲୀଳା ସମ୍ବରଣ କରି ଧର୍ମ ସଂସ୍ଥାପନ କଲା ପରେ ଯେତେବେଳେ ସେ ସ୍ୱର୍ଗଲୋକ ଗମନ କଲେ, ସେତେବେଳେ ସରଜୁ ନଦୀ ନଗରୀର ସମସ୍ତ ଧନ ସଂପତ୍ତି ନିଜ ବକ୍ଷରେ ଲୁଚାଇ ରଖିଲେ । ଅଯୋଧ୍ୟା ଜନବସତି ଶୂନ୍ୟ ଜଙ୍ଗଲରେ ପରିଣତ ହୋଇଗଲା । ଦ୍ୱାପର ଯୁଗରେ କୁଶ ମହାରାଜା ଏହି ନଗରୀର ହୃତ ଗୌରବ ଫେରାଇ ଆଣିଥିଲେ ଓ ଦୀର୍ଘ ସମୟ ପର୍ଯ୍ୟନ୍ତ ଏହି ନଗରୀ ଚଳ ଚଞ୍ଚଳ ହୋଇ ରହିଥିଲା । କଳିଯୁଗର ପ୍ରଥମ ସହସ୍ରାବ୍ଦ ପରେ ଶାକ୍ୟବଂଶର ରାଜା ଶୁଦ୍ଧୋଦନ ଏଠାରେ ରାଜତ୍ୱ କଲେ, କିନ୍ତୁ ପୂର୍ବ ତିନି ପିଢ଼ିର ଅମଙ୍ଗଳ ଏଠାରେ ହେଉଥିବା ହୃଦୟଙ୍ଗମ କରି ଏହି ନଗରୀ ତ୍ୟାଗ କରି ସେ ସରଜୁ ନଦୀର ଆର ପାରିରେ ଶ୍ରାବସ୍ତି ନାମକ ସ୍ଥାନରେ ନିଜର ରାଜଧାନୀ ନିର୍ମାଣ କଲେ । ଅଯୋଧ୍ୟା ନଗରୀ ପୁନଶ୍ଚ ଶ୍ରୀହୀନ ହୋଇଗଲା । ବହୁ ଉତ୍‌ଥାନ ପତନଦେଇ ଗତି କରି କେତେବେଳେ ଅଯୋଧ୍ୟା ଶ୍ରୀ-ସଂପନ୍ନ ତ

କେତେବେଳେ ଅଯୋଧ୍ୟା ଶ୍ରୀହୀନ ଅବସ୍ଥା ଧାରଣ କରିଥିବା ବିଷୟ କିମ୍ବଦନ୍ତୀ, ପୁରାଣ ଓ ଶାସ୍ତ୍ରରେ ପ୍ରତିଫଳିତ ହୋଇଛି ।

ଖ୍ରୀଷ୍ଟପୂର୍ବ ଏକଶହ ବର୍ଷ ପୂର୍ବେ ଉଜ୍ଜୟିନୀର ରାଜା ଗନ୍ଧର୍ବ ସେନଙ୍କ ପୁତ୍ର ବିକ୍ରମାଦିତ୍ୟ ପାରିଧିରେ ଯାଇ ସରଜୁ ନଦୀ କୂଳସ୍ଥ ଏକ ବିରାଟ ଆମ୍ରକୁଞ୍ଜ ତଳେ ବିଶ୍ରାମ ନେଉଥିଲେ । ଇତ୍ୟବସରରେ ଏକ ଚମତ୍କାର ଦୃଶ୍ୟ ତାଙ୍କ ଦୃଷ୍ଟି ପଥାରୂଢ଼ ହେଲା, ଶ୍ୟାମବର୍ଣ୍ଣ ଘୋଡ଼ାରେ ଶ୍ୟାମ ବସ୍ତ୍ର ଓ ଶ୍ୟାମ ପୁଷ୍ପମାଳା ପରିହିତ ଏକ କୃଷ୍ଣକାୟ ନବ ଯୁବକ ସରଜୁ ନଦୀରେ ସ୍ନାନ କରିବା ପାଇଁ ପ୍ରବେଶ କଲେ ଓ ପରମ ବିସ୍ମୟର ବିଷୟ ଯେ ସ୍ନାନ ପରେ ଘୋଡ଼ା ସହିତ ଯୁବକ ଜଣକ ଗୌରବର୍ଣ୍ଣ ଦେଖାଗଲେ । ମହାରାଜ ବିକ୍ରମାଦିତ୍ୟ ଏହି ରହସ୍ୟ ଜାଣିବା ପାଇଁ ଯୁବକଙ୍କ କୃପା ଭିକ୍ଷା କଲେ । ଜିଜ୍ଞାସୁ ରାଜାଙ୍କର ସବିନୟ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଯୁବକ ଜଣକ କହିଲେ - ''ମୁଁ ତୀର୍ଥରାଜ ପ୍ରୟାଗ, ପ୍ରତ୍ୟେକ ବର୍ଷ ମୋ' ଜଳରେ ସ୍ନାନ କରି ପାପ ଧୌତ କରିବା ପାଇଁ ଲକ୍ଷ ଲକ୍ଷ ଭକ୍ତ ମୋ' ନିକଟକୁ ଆସନ୍ତି ଯାହାଫଳରେ ମୋ ଶରୀର କୃଷ୍ଣ ବର୍ଣ୍ଣରେ ରୂପାନ୍ତରିତ ହୋଇଥାଏ । ସେହି କୃଷ୍ଣ ବର୍ଣ୍ଣ ଶରୀରକୁ ମୁଁ ଯେତେବେଳେ କଳି-କଳୁଷ ହାରିଣୀ ପୁଣ୍ୟ ସଲିଳା ସରଜୁରେ ଧୌତ କରେ ମୋର - ସ୍ୱାଭାବିକ ବର୍ଣ୍ଣ ଫେରିଯାଏ । ମୁଁ ସବୁବେଳେ ଗୁପ୍ତ ରୂପରେ ଆସିଥାଏ, କିନ୍ତୁ ଏହି ବିଲୁପ୍ତ ନଗରୀ ପ୍ରତି ତୁମ ମନରେ କୌତୁହଳ ଜାଗ୍ରତ ହୋଇଥିବା ଜାଣି ମୁଁ ତୁମ ନିକଟରେ ପ୍ରକଟ ହେଲି ।'' ରାଜା ବିକ୍ରମାଦିତ୍ୟ ତୀର୍ଥରାଜ ପ୍ରୟାଗଙ୍କ ଠାରୁ ଅଦ୍ଭୁତ କାହାଣୀ ଶୁଣି ସାରିବା ପରେ ଅଯୋଧ୍ୟା ନଗରୀର ପୁନଃସ୍ଥାପନର ସହାୟତା ବିଷୟ ବୁଝି ସେହି ସମୟରେ ପ୍ରଚଳିତ ଯୁଧିଷ୍ଠିର ସମ୍ବତ୍ ୨୪୨୬ ରୁ ୨୪୩୨ ମଧ୍ୟରେ ପୁନରୁଦ୍ଧାର କାମ ଶେଷ କରିଥିଲେ । ଅଯୋଧ୍ୟାପୁରୀର ମନ୍ଦିରମାନଙ୍କରେ ୨୬୦ଟି ସ୍ଥାନରେ - ଜୀର୍ଣ୍ଣୋଦ୍ଧାର କାମ ଶେଷ କରି ସଂସ୍କୃତରେ ''ଅଯୋଧ୍ୟା ମାହାତ୍ମ୍ୟ'' ନାମକ ଏକ କାବ୍ୟ ରଚନା କରିଥିଲେ । ସେହିଦିନ ଠାରୁ ନିଜ ନାମରେ ବିକ୍ରମ ସମ୍ବତ୍ ଗଣନା ଆରମ୍ଭ କରିଥିଲେ । ଏହି ବର୍ଷ ବୀର ବିକ୍ରମାଦିତ୍ୟ ସମ୍ବତ୍ ୨୦୬୯-୭୦ । ଚୈତ୍ର ଶୁକ୍ଳ ପ୍ରତିପଦାଠାରୁ ସମ୍ବତ୍ ଗଣନା ଆରମ୍ଭ କରାଯାଏ ।

ଏକାଦଶ ଶତାବ୍ଦୀରେ କନୌଜ ରାଜା ଜୟଚନ୍ଦ୍ର ଅଯୋଧ୍ୟାର ରାମ ମନ୍ଦିରର ଗୋ-ପୁର ର କାନ୍ଥରେ ଲିଖିତ ବିକ୍ରମାଦିତ୍ୟଙ୍କ ପ୍ରଶସ୍ତିକୁ ଲିଭାଇ ଦେଲେ ଓ ସେହି ସ୍ଥାନ ମାନଙ୍କରେ ନିଜ ପ୍ରଶସ୍ତି ପତ୍ର ଲେଖାଇଥିଲେ । ପରେ ପାନିପଥ ଯୁଦ୍ଧରେ ମହମ୍ମଦ ଘୋରୀଙ୍କ ଦ୍ୱାରା ପ୍ରଥମେ ପୃଥ୍ୱୀରାଜ ଓ ପରେ ଜୟଚନ୍ଦ୍ରଙ୍କ ଅନ୍ତ ଘଟିଲା । ଏହାପରେ ମୁସଲମାନ ଶାସକଙ୍କ ଅକଥନୀୟ ଅତ୍ୟାଚାର ଓ ଲୁଟ୍‌ତରାଜ ବଳରେ

ଭାରତ ଭୂମି ତ୍ରାହି ତ୍ରାହି ଡ଼ାକ ଦେଲା, ଅଥଚ ଅଯୋଧ୍ୟା ଉପରେ କୁଦୃଷ୍ଟି ପକାଇବା ପାଇଁ କୌଣସି ବିଧର୍ମୀଙ୍କ ନିକଟରେ ସାହସ ନ ଥିଲା । ସମୟ କ୍ରମେ ହୁଣ, ଶକ ଓ ମୁସଲମାନ ରାଜାମାନେ ଅନେକଥର ଅଯୋଧ୍ୟା ଉପରେ ଆକ୍ରମଣ କରିଥିଲେ । ମନ୍ଦିର ମାନଙ୍କରୁ ଅମାପ ଧନ ସଂପତ୍ତି, ଅଜସ୍ର ହୀରା, ନୀଳା, ମୋତି ମାଣିକ୍ୟ ଲୁଟି ନେଉଥିଲେ ସିନା ରାମ ଜନ୍ମଭୂମିର ମନ୍ଦିର ଧ୍ୱଂସ କରିବା ପାଇଁ କେହି ସାହସ କରୁ ନ ଥିଲେ । ୧୫୨୬ ଖ୍ରୀଷ୍ଟାବ୍ଦରେ ମୋଗଲ ସମ୍ରାଟ ବାବର ଦିଲ୍ଲୀ ସିଂହାସନ ଅଧିକାର କଲେ । ଏହି ସମୟରେ ମହାନ୍ ସାଧକ ଶ୍ୟାମନନ୍ଦଜୀ ମହାରାଜ ରାମ ଜନ୍ମଭୂମି ମନ୍ଦିର ଦାୟିତ୍ୱରେ ରହିଥିଲେ । ଏହି ମହାନ୍ ସାଧକଙ୍କର ସାଧନାର ଖ୍ୟାତି ଚତୁର୍ଦ୍ଦିଗରେ ବିସ୍ତାରିତ ହୋଇଥିଲା । ଏହି ସାଧକଙ୍କର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ମହନୀୟତା ଥିଲା - ସେ ଶିଷ୍ୟ ଗ୍ରହଣ ସମୟରେ ଉଚ୍ଚ-ନୀଚ, ଧର୍ମ-ସଂପ୍ରଦାୟର ବାଛ ବିଚାର ରଖୁ ନ ଥିଲେ । ଏହି ମହାନତାର ଓ ଉଦାର ସ୍ୱଭାବର ସୁଯୋଗ ନେଇ ଖ୍ୱାଜା ଫଜଲ ଆବ୍ବାସ ମୁସା ଆଶିକାନ ନାମକ ଜଣେ ମୁସଲମାନ ଶ୍ୟାମନନ୍ଦଙ୍କର ସାଧକ ଶିଷ୍ୟ ହେଲେ । ସେ ହିନ୍ଦୁଧର୍ମର ସିଦ୍ଧି ଯୋଗ, ବିଭୂତି ଯୋଗ ଇତ୍ୟାଦି ବିଷୟରେ ଶିକ୍ଷା ଗ୍ରହଣ କରିବାକୁ ଗୁରୁଦେବଙ୍କ ନିକଟରେ ବିନତି କଲେ । ଶ୍ୟାମନନ୍ଦଜୀ ମହାରାଜ ହିନ୍ଦୁଧର୍ମର ପବିତ୍ରତା ତୁମେ ରକ୍ଷା କରିପାରିବ ନାହିଁ ଓ ଜନ୍ମ ଜନ୍ମାନ୍ତରର ସଂସ୍କାର ପରେ ହିନ୍ଦୁ ଧର୍ମରେ ମନୁଷ୍ୟ ଜାତ ହୋଇଥାଆନ୍ତି, ତେଣୁ ତୁମେ ତୁମର ନିଜର ଇସ୍‌ଲାମ୍ ଧର୍ମର ନିୟମାନୁସାରେ 'ଲାଇଲାହ ଇଲ୍ଲିଲାହ' ମନ୍ତ୍ର ଉଚ୍ଚାରଣ ପୂର୍ବକ ସିଦ୍ଧି ଲାଭ କରିପାରିବ ବୋଲି ଆଦେଶ ଦେଲେ । ଏହି ସମୟରେ ଜଲାଲଶାହ ନାମକ ଏକ ଫକୀର ମଧ୍ୟ ଗୁରୁ ଶ୍ୟାମନନ୍ଦଙ୍କ ଠାରୁ ନିଜ ଧର୍ମର ମନ୍ତ୍ରରେ ସିଦ୍ଧି ପ୍ରାପ୍ତ ହେଲେ । ଏହି ଶିଷ୍ୟମାନଙ୍କୁ ରାମ ଜନ୍ମଭୂମିର ମହତ୍ତ୍ୱ ଓ ପ୍ରସିଦ୍ଧି ବିଷୟ ସର୍ବଦା ବିସ୍ମିତ କରୁଥିଲା । କଟ୍ଟର ମୁସଲମାନ ଧର୍ମୀ ଦୁଇଜଣଙ୍କର ସମୟ କ୍ରମେ ରାମ ଜନ୍ମଭୂମି ସ୍ଥାନକୁ ମକ୍କା, ମଦିନାରେ ପରିଣତ କରିବା ଏକମାତ୍ର ଲକ୍ଷ୍ୟ ହୋଇପଡ଼ିଲା । ଦୂର ଦୂରାନ୍ତରରୁ ହଜାର ହଜାର ସଂଖ୍ୟକ ମୁସଲମାନ ଭକ୍ତ ଏହି ସିଦ୍ଧି ଗୁରୁଙ୍କ ନିକଟରେ ଉପସ୍ଥିତ ହୋଇ ନିଜ ବାଞ୍ଛିତ ଫଳ ପ୍ରାପ୍ତ ହେଲେ । ଏହି ସମୟରେ ଉଦୟପୁରର ରାଜା ମହାରାଣା ସଂଗ୍ରାମ ସିଂଙ୍କ ସହ ମୋଗଲ ସମ୍ରାଟ ବାବରଙ୍କର ଆଗ୍ରା ସମୀପସ୍ଥ ଫତେପୁର ସିକ୍ରିଠାରେ ଏକ ଭୀଷଣ ଯୁଦ୍ଧ ହେଲା । ବାବର ଯୁଦ୍ଧରେ ପରାଜୟ ଲାଭ କରି ଅଯୋଧ୍ୟାରେ ପହଞ୍ଚି ଖ୍ୱାଜା ଫଜଲ ଆବ୍ବାସଙ୍କ ଶରଣାପନ୍ନ ହେଲେ । ଆବ୍ବାସଙ୍କ ନିକଟରୁ ଆଶୀର୍ବାଦ ଲାଭ କରି ବାବର ସଂଗ୍ରାମ ସିଂଙ୍କୁ ପରାସ୍ତ କଲେ । ଏହି ବିଜୟ ପରେ ଫଜଲ ଆବ୍ବାସ ବାବରଙ୍କ ଉପରେ ଆଧିପତ୍ୟ ବିସ୍ତାର କଲେ ଓ ରାମ ଜନ୍ମ - ଭୂମିରେ ମସ୍‌ଜିଦ୍ ନିର୍ମାଣ ପାଇଁ

ବାଧ କଲେ । ବାବର ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନିଜର ରଣମନ୍ତ୍ରୀ ମୀରବାଙ୍କି ଖାଁଙ୍କୁ ଦେଇ ଦିଲ୍ଲୀ ଚାଲିଗଲେ । ଶ୍ୟାମନନ୍ଦଜୀ ଏହି ଘଟଣା ଶୁଣିବାପରେ ଗଭୀର ମର୍ମାହତ ହୋଇ ମନ୍ଦିରର ପୂଜା ବିଗ୍ରହ ମାନଙ୍କୁ ସରଜୁ ନଦୀରେ ଭସାଇ ଦେଲେ । ୧୫୨୮ ଖ୍ରୀଷ୍ଟାବ୍ଦରେ ପ୍ରାତଃ ସମୟରେ ମନ୍ଦିର ଭାଙ୍ଗିବା ପାଇଁ ଯେତେବେଳେ ବିଧର୍ମୀ ମାନେ ମନ୍ଦିରରେ ପ୍ରବେଶ କଲେ, ଶହ ଶହ ସଂଖ୍ୟାରେ ହିନ୍ଦୁମାନେ ପ୍ରତିରୋଧ କଲେ, କିନ୍ତୁ ନିର୍ମମ ଭାବେ ସମସ୍ତଙ୍କ ମୁଣ୍ଡକାଟ କରିଦିଆଗଲା ଓ ତୋପ ସାହାଯ୍ୟରେ ମନ୍ଦିର ଭାଙ୍ଗି ଦିଆଗଲା । ମନ୍ଦିର ସାମଗ୍ରୀରେ ମସ୍‌ଜିଦ୍ ନିର୍ମାଣ ଆରମ୍ଭ ହେଲା । ଦିନ ତମାମ ଯେତୋଟି କାନ୍ଥ ତିଆରି ହେଉଥିଲା, ସଂଧ୍ୟାବେଳକୁ ସେଗୁଡ଼ିକ ଆପେ ଆପେ ଧରାଶାୟୀ ହୋଇଯାଉଥିଲା । ମାସ ମାସ ବିତିଗଲା, କିଏ କାନ୍ଥ ଭାଙ୍ଗୁଛି ଜଣାଗଲା ନାହିଁ । ବିବଶ ହୋଇ ମୀରାବାଙ୍କି ସମ୍ରାଟ ବାବରଙ୍କୁ ଚିଠି ଲେଖି ଜଣାଇଲେ ଓ ବାବରଙ୍କ ହୁକୁମ ଅନୁସାରେ ଦିଲ୍ଲୀ ଫେରିଗଲେ । ଫଜଲ ଆବାସଙ୍କ ମନ୍ଦ ଉଦ୍ଦେଶ୍ୟ ସଫଳରେ ବାଧା ସୃଷ୍ଟି ହେବାରୁ ସେ ବାବରଙ୍କୁ ନିଜେ ତୁରନ୍ତ ଉପସ୍ଥିତ ହେବାକୁ ଆଦେଶ ହେଲେ । ବାବର ପହଞ୍ଚିବା ପରେ ଜୋର୍ ଜବରଦସ୍ତ ହିନ୍ଦୁ ଧର୍ମାତ୍ମାମାନଙ୍କ ଠାରୁ ମସ୍‌ଜିଦ୍ ନିର୍ମାଣ ବିଷୟରେ ଉପଦେଶ ଆଦାୟ କଲେ । ପ୍ରତିବଦଳରେ ହିନ୍ଦୁମାନଙ୍କୁ ମନ୍ଦିର ନିକଟରେ ପୂଜା ଓ ଭଜନ କରିବାପାଇଁ ଅନୁମତି ଦିଆଗଲା । ଏହିଭଳି କ୍ରୁର କୂଟନୀତି ବଳରେ ମନ୍ଦିର ସ୍ଥାନରେ ମସ୍‌ଜିଦ୍ ନିର୍ମାଣରେ ବାବର ସଫଳ ହୋଇଥିଲେ । ବିଶିଷ୍ଟ ଐତିହାସିକ କାନିଂଘମ୍ 'ଲକ୍ଷ୍ନୌ ଗେଜେଟିୟର୍'ରେ ଉଲ୍ଲେଖ କରିଛନ୍ତି, ଯେ ଅତି ଅମାନୁଷିକ ଭାବରେ ଏକ ଲକ୍ଷ ଚଉସ୍ତରୀ ହଜାର ହିନ୍ଦୁଙ୍କର ଶବ ଉପରେ ମୀରାବାଙ୍କି ତୋପ ଚଳାଇ ମନ୍ଦିର ଭାଙ୍ଗିବାରେ ସଫଳ ହୋଇଥିଲେ । ମନ୍ଦିର ଭାଙ୍ଗିବା ସମୟରେ ମଣିମୁକ୍ତା ଓ ହନୁମାନ ବିଗ୍ରହ ଶୋଭିତ ୮୪ଟି ସ୍ତମ୍ଭ ବାହାରିଥିଲା । ଲୋମଶ ପୁରାଣ ବର୍ଣ୍ଣନାନୁସାରେ ଅଯୋଧ୍ୟାର ରାଜା ଅନରଣ୍ୟ ନିଜ ରାଜସଭାଗୃହକୁ ଏହି ସ୍ତମ୍ଭମାନଙ୍କ ଦ୍ୱାରା ସୁଶୋଭିତ କରିଥିଲେ । ଲଙ୍କାଧିପତି ରାବଣ ତୃତୀୟଥର ଅଯୋଧ୍ୟା ଆକ୍ରମଣ କରି ମହାରାଜ ଅନରଣ୍ୟଙ୍କ ବୀରଗତି ପ୍ରାପ୍ତ ପରେ ସ୍ୱର୍ଣ୍ଣମୟୀ ଲଙ୍କାକୁ ଏହି ସ୍ତମ୍ଭ ଗୁଡ଼ିକ ନେଇଯାଇଥିଲେ । ଶ୍ରୀରାମଚନ୍ଦ୍ରଙ୍କର ଲଙ୍କା ବିଜୟ ପରେ ଶ୍ରୀ ହନୁମାନ ପ୍ରଭୁ ରାମଚନ୍ଦ୍ରଙ୍କୁ ପୂର୍ବ ଇତିହାସ ସ୍ମରଣ କରାଇ ଅଯୋଧ୍ୟାକୁ ଏହାକୁ ଫେରାଇ ଆଣିଥିଲେ । ସମ୍ରାଟ ବିକ୍ରମାଦିତ୍ୟ ଅଯୋଧ୍ୟା ମନ୍ଦିର ପୁନରୁଦ୍ଧାର କରିବା ସମୟରେ ଏହି ସ୍ତମ୍ଭଗୁଡ଼ିକ ବିଦ୍ୟମାନ ଥିଲା ।

ବିକ୍ରମାଦିତ୍ୟଙ୍କ ଦ୍ୱାରା ପୁନଃ ପ୍ରତିଷ୍ଠିତ ମନ୍ଦିରର ପ୍ରାଚୁର୍ଯ୍ୟ ବର୍ଣ୍ଣନା କରିବାକୁଯାଇ ଐତିହାସିକ ମାନେ ଲେଖିଛନ୍ତି ଯେ ମନ୍ଦିରର ନିର୍ମାଣ କୌଶଳର ଶୋଭା

ଅବର୍ଣ୍ଣନୀୟ । ମନ୍ଦିର ପାଖରେ ଛଅ ଶହ ଏକର ତରୁଲତା ପୂର୍ଣ୍ଣ ଉଦ୍ୟାନ । ମନ୍ଦିର ଭିତରେ ଅଷ୍ଟକୋଣ ବିଶିଷ୍ଟ ସୀତା କୂପ ଓ ନବକୋଣ ବିଶିଷ୍ଟ କନ୍ଦର୍ପ କୂପ ପ୍ରତିଷ୍ଠିତ । ପ୍ରତିବର୍ଷ ରାଜସ୍ୱ ଆୟର ଦଶଲକ୍ଷ ଟଙ୍କା ମନ୍ଦିର ନିର୍ମାଣ ଓ ରକ୍ଷଣାବେକ୍ଷଣ ପାଇଁ ଖର୍ଚ୍ଚ ହେଉଥିଲା । ବାବରଙ୍କ କୂଟନୀତି ବଳରେ ଏହି ପ୍ରାଚୁର୍ଯ୍ୟ ଧୂଳିସାତ୍ ହୋଇଗଲା । ମନ୍ଦିର ଭଙ୍ଗା ହେବା ପରେ ସେହି ୮୪ଟି ସ୍ତମ୍ଭ ମଧ୍ୟରୁ ୧୨ଟି ମସ୍‌ଜିଦ୍‌ର ଭିତରେ ଓ ବାହାରେ, ଫଜଲଆବାସଙ୍କ (ଯାହାଙ୍କ ପ୍ରେରଣାରେ ବାବର ମସ୍‌ଜିଦ୍ ପାଇଁ ମନ୍ଦିର ଭାଙ୍ଗିଥିଲେ) କବରରେ ୦୬ଟି, ଲକ୍ଷ୍ନୌ ଓ ଫୌଜାବାଦସଂଗ୍ରହାଳୟରେ କେତୋଟି ଓ ଲଣ୍ଡନ ମ୍ୟୁଜିୟମ୍‌ରେ କେତୋଟି ଦେଖିବାକୁ ମିଳୁଛି । ବାବରଙ୍କର ଏହି ଅପକୀର୍ତ୍ତି ‘‘ବାବର ନାମା’’ରେ ନିମ୍ନଲିଖିତ ପ୍ରକାରେ ବର୍ଣ୍ଣନା କରାଯାଇଛି । ‘‘ହଜରତ ଫଜଲ ଆବାସ ମୁଶା ଆଶିକନ କଲନ୍ଦର ସାହବ କି ଇଜାଜତ ସେ ଜନ୍ମଭୂମି ମନ୍ଦିର କୋ ମିସମାର କର୍‌କେ ମୈନେ ଉସୀ କେ ମସାଲେ ସେ ଉସୀ ଜଗହ ୟହ ମସ୍‌ଜିଦ୍ ତାମିର କୀ’’। (ବାବର ନାମା, ପୃଷ୍ଠା ୧୭୩) ବାବରଙ୍କ ପରେ ହୁମାୟୁନ୍‌ଙ୍କ ଶାସନ କାଳରେ ହିନ୍ଦୁମାନେ ବିଦ୍ରୋହ କରିଥିଲେ ଓ ଆକବରଙ୍କ ରାଜତ୍ୱ ସମୟରେ ହିନ୍ଦୁମାନେ ଏକତ୍ରିତ ହୋଇ ଉଗ୍ରରୂପରେ ବିଦ୍ରୋହ ଚଳାଇଲେ । ବିଚକ୍ଷଣ ବୁଦ୍ଧି ସଂପନ୍ନ ଆକବର ବୀରବଲ୍ଲ ଓ ତୋଡ଼ରମଲ୍ଲଙ୍କ ପରାମର୍ଶରେ ବାବ୍‌ରୀ ମସ୍‌ଜିଦ୍ ସାମ୍‌ନାରେ ଏକ ଚଉତରାରେ ଶ୍ରୀରାମ ମୂର୍ତ୍ତି ସ୍ଥାପନ ପାଇଁ ରାୟ ଦେଲେ । ଉଦାରବାଦୀ ଆକବରଙ୍କ କଡ଼ା ନିର୍ଦ୍ଦେଶ ଯୋଗୁଁ ହିନ୍ଦୁମାନଙ୍କର ପୂଜାପାଠରେ ବାଧା ସୃଷ୍ଟି କରିବା ପାଇଁ କୌଣସି ମୁସଲମାନ ସାହାସ କରିପାରୁ ନଥିଲେ । ଆକବରଙ୍କ ପରେ ଜାହାଙ୍ଗିର ଓ ଶାହାଜାହାନ୍‌ଙ୍କ ଶାସନ କାଳ ପର୍ଯ୍ୟନ୍ତ ଏହିଭଳି ନିୟମ ସୁରୁଖୁରୁରେ ଚାଲୁ ରହିଲା । ଔରେଙ୍ଗଜେବ୍‌ଙ୍କ ସମୟରେ ୧୬୬୬ ଖ୍ରୀଷ୍ଟାବ୍ଦରେ ସେହି ଚଉତରା ଉପରେ ଆକ୍ରମଣ ହୋଇଥିଲା । ସେହି ସମୟରେ ହିନ୍ଦୁ ମାନଙ୍କର ପ୍ରବଳ ପ୍ରତିରୋଧର କିଛି ସୁଫଳ ମିଳି ନ ଥିଲା । ୧୮୫୭ ଖ୍ରୀଷ୍ଟାବ୍ଦର ସିପାହୀ ବିଦ୍ରୋହ ସମୟରେ ମୋଗଲ ସମ୍ରାଟ ବାହାଦୁର ଶାହ ଜାଫରଙ୍କୁ ଇଂରେଜ ବିରୋଧରେ ଲଢ଼ିବା ପାଇଁ ଅଯୋଧ୍ୟାର ନବାବ ସାହାଯ୍ୟ କରିଥିଲେ । ସାହାଯ୍ୟର ପ୍ରତିବଦଳରେ ମୁସଲମାନ ନେତା ଅମୀର ଅଲ୍ଲି ମସ୍‌ଜିଦ୍ ସ୍ଥାନରେ ପୁନଃ ରାମ ମନ୍ଦିର ନିର୍ମାଣ ପ୍ରସ୍ତାବ ଦେଲେ । ମୁସଲମାନ ମାନେ ଏହାକୁ ସମର୍ଥନ କରିଥିଲେ, କିନ୍ତୁ ଧୂର୍ତ୍ତ ଇଂରେଜ ମାନଙ୍କର ଏହା ଇଚ୍ଛା ନ ଥିଲା । ବିଦ୍ରୋହ ଦମନର ଫଳ ସ୍ୱରୂପ ହିନ୍ଦୁ ସାଧୁ ରାମଚରଣ ଦାସ ଓ ମୁସଲମାନ ନେତା ଅମୀର ଅଲ୍ଲିଙ୍କୁ ୧୮୫୮ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୮ ତାରିଖରେ ମନ୍ଦିର ପାର୍ଶ୍ୱରେ ଥିବା ଏକ ତେନ୍ତୁଳି ଗଛରେ ଫାଶି ଦିଆଯାଇଥିଲା । ବହୁତ ଦିନ ପର୍ଯ୍ୟନ୍ତ ଉଭୟ ହିନ୍ଦୁ ଓ ମୁସଲମାନ

ଏହି ତେନ୍ତୁଳି ଗଛକୁ ପୂଜା କରିବାକୁ ଲାଗିଲେ । ଦୁଇ ସଂପ୍ରଦାୟର ପ୍ରବଳ ଶ୍ରଦ୍ଧା, ବିଶ୍ୱାସ ଏବଂ ଏକତା ଉପରେ ସନ୍ଦିହାନ ହୋଇ ଇଂରେଜମାନେ ଏହି ବୃକ୍ଷଟିକୁ ହାଣି ଦେଇଥିଲେ । ଏହିପରି ଭାବେ ମୁସଲମାନ ମାନଙ୍କର କୋମଳ ମନୋଭାବକୁ ଇଂରେଜ ଶାସକ କ୍ରୁର, କଠୋର ଓ ଘୃଣାରେ ପରିଣତ କରିଦେଇଥିଲେ ।

୧୯୪୨ ମସିହା ଡ଼ିସେମ୍ବର ୨୩ ତାରିଖ ଦିନ ହନୁମାନ ଗାଦି ନିକଟରେ ୧୦୮ଟି ସ୍ଥାନରେ ଶ୍ରୀରାମ ଚରିତ ମାନସ ପାଠ ଆରମ୍ଭ ହେଲା, ବାବରଙ୍କ ସମୟରେ ହିନ୍ଦୁ ମୁସ୍‌ଲିମ୍ ସଂଘର୍ଷ ବେଳେ ମସ୍‌ଜିଦ୍ ଭିତରେ ନମାଜ ପଢ଼ିବାକୁ ଉଦ୍ୟମ କରିଥିବା ୦୩ ଜଣ ମୁସଲମାନଙ୍କ ମୁଣ୍ଡକାଟ କରି ଦିଆଯାଇଥିଲା । ସେହି ଭୟରେ ସେହି ଦିନଠାରୁ ମୁସଲମାନ ମାନେ ବାବ୍ରି ମସ୍‌ଜିଦ୍ ଭିତରେ ନମାଜ ପଢ଼ିବାକୁ ଇଚ୍ଛା କରୁ ନ ଥିଲେ ମଧ୍ୟ ଚତୁର ଇଂରେଜ ସରକାର ସାଂପ୍ରଦାୟିକତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଯଥେଷ୍ଟ ସୁରକ୍ଷା ଯୋଗାଇଦେବା ପ୍ରତିଶ୍ରୁତି ଦେଇଥିଲେ, ତଥାପି ଅଧିକ ସଂଖ୍ୟକ ଉଗ୍ର୍ୟକ୍ତ ହିନ୍ଦୁଙ୍କ ସହ ମୁକାବିଲା କରି ନ ପାରି ପ୍ରାୟ ୮୦/୮୫ ଜଣ ମୁସଲମାନ ଫେରିଯାଇଥିଲେ । ୧୯୪୭ରେ ଭାରତ ସ୍ୱାଧୀନ ହେଲା । ରାମ ଜନ୍ମଭୂମି ଓ ବାବ୍ରି ମସ୍‌ଜିଦ୍ ବିବାଦ ତୁଟିଲା ନାହିଁ । ତା.୦୧.୦୨.୧୯୮୬ ରେ ଥରେ ଭଗବାନଙ୍କ ମନ୍ଦିର ତାଲା ଖୋଲିଲା । ଗଣ୍ଡଗୋଳ ପରେ ବନ୍ଦ ହୋଇଗଲା । ପୁଣି ତା.୩୦.୧୦.୧୯୯୦ରେ ଥରେ ପ୍ରଚେଷ୍ଟା କରାଗଲା । ଶେଷରେ ସମସ୍ତ ହତାଶା ଓ ବିଫଳତାର ଅନ୍ତ ଘଟାଇ ତା.୦୬.୧୨.୧୯୯୨ରେ ବିବାଦୀୟ ଢ଼ାଞ୍ଚା ଚଳାଇ ରାମଲାଲାଙ୍କୁ ସିଂହାସନରେ ବିଜେ କରାଇ ଗୋଲାପି ରଂଗର ତମ୍ବୁ କପଡ଼ାରେ ଛାତ ଛାଉଣୀ କରାଗଲା । ବିଶ୍ୱ ହିନ୍ଦୁ ପରିଷଦ, ବଜରଂଗ ଦଳ, ଭାରତୀୟ ଜନତା ପାର୍ଟିର ଅସଂଖ୍ୟ ଜୀବନର ବଳିଦାନରେ ଏତିକି ସମ୍ଭବ ହୋଇପାରିଲା । ଇଂରେଜଙ୍କ କୂଟନୀତି ସ୍ୱାଧୀନ ଭାରତର ଧର୍ମ ନିରପେକ୍ଷ ଦ୍ୱାହି ଦେଉଥିବା ସରକାର ଆପଣେଇ ନେଇଛନ୍ତି । ଶ୍ରୀରାମ ଜନ୍ମଭୂମିର ଇତିହାସ ୭୭ ଥର ଆକ୍ରମଣରେ ରକ୍ତ ରଞ୍ଜିତ ହୋଇ ସାରିଛି । ଅଦ୍ୟାବଧି ହିନ୍ଦୁ ରକ୍ତ ଶୀତଳ ହୋଇନାହିଁ । ମନ୍ଦିର ନିର୍ମାଣ ପାଇଁ ହିନ୍ଦୁ ସମାଜ ଆତ୍ମ ବଳିଦାନ ପାଇଁ ପ୍ରସ୍ତୁତ ହୋଇ ବସିଛନ୍ତି । ବର୍ତ୍ତମାନ ଯାହା ଉପଲବ୍ଧି ହେଉଛି "ଏକତାର ଅଭାବ"। ଆକୁମାରୀ ହିମାଚଳ ଏକ ହେଲେ ମନ୍ଦିର ନିର୍ମାଣ ସମ୍ଭବ ହୋଇପାରିବ । ୨୦୧୦ ମସିହାର ସୁପ୍ରିମକୋର୍ଟର ରାୟ ମଧ୍ୟ ହିନ୍ଦୁ ସମାଜକୁ ସନ୍ତୋଷ ଦେଇପାରି ନାହିଁ । କେବଳ ଏତିକି କୁହାଯାଇପାରିବ ରାମଙ୍କ ଧାମର ନିର୍ମାଣ - ସେ ଇଚ୍ଛା କଲେ ହିଁ ସମ୍ଭବ ହୋଇପାରିବ ।

ଅଟୋରେ ଫେରିବା ବେଳେ ଅତୀତର ସ୍ମୃତି ଚାରଣ କରୁ କରୁ ଅତି ଚଞ୍ଚଳ ଆମ ଆଶ୍ରୟ ସ୍ଥାନ ହନୁମାନ ବାଗ ଦ୍ୱାର ଦେଶରେ ପହଞ୍ଚିଲୁ । ହନୁମାନ ବାଗର ମନ୍ଦିର ମାନଙ୍କରେ ସଂାଧ ଆରତୀ ଦର୍ଶନ କଲୁ । ନବ କିଶୋର ବାବାଙ୍କ ଶ୍ରୀମୁଖରୁ ପ୍ରବଚନ ଶ୍ରବଣ କଲୁ, ରାତ୍ରି ପ୍ରସାଦ ସେବନ ପରେ ଜାନକୀ ରାମ ସ୍ମରଣ କରି ବିଶ୍ରାମ ନେଲୁ ।

***ତା.୧୪.୦୨.୨୦୧୩, ଗୁରୁବାର***

ସକାଳ ୭ ଘଣ୍ଟା ସୁଦ୍ଧା ନିତ୍ୟକର୍ମ ସମାପନ ପରେ ଝାନ୍ସି ଦିଦି ଘର ଓ ପତିବାବୁ ଘର ଓ ଆମେ ଦୁହେଁ ଗୋଟିଏ ଅଟୋରେ ଅଯୋଧ୍ୟା ସହରର ପରିସୀମା ବାହାରେ ଥିବା ବିଭିନ୍ନ ମଠ, ମନ୍ଦିର ଓ ତୀର୍ଥସ୍ଥାନ ଦର୍ଶନ ଉଦ୍ଦେଶ୍ୟରେ ବାହାରିଲୁ ।

ସେହିଦିନ ଅଯୋଧ୍ୟା ସାଇଟ୍ ସିନ୍ ଦେଖିବା ଅବସରରେ ପ୍ରଥମେ ପହଞ୍ଚିଲୁ 'ମଣି ପର୍ବତ'ର ପାଦ ଦେଶରେ । ସୀତା ମାତାଙ୍କ ବିବାହ ସମୟରେ ରାଜର୍ଷି ଜନକ ଯୌତୁକରେ ଦେଇଥିବା ମଣିଗୁଡ଼ିକୁ ଏଠାରେ ସୁରକ୍ଷିତ ଅବସ୍ଥାରେ ରଖାଯାଇଥିବାରୁ ଏହାର ଏପରି ନାମକରଣ ହୋଇଛି । ଶ୍ରାବଣ ମାସରେ ପ୍ରଥମେ ଏଠାରେ ଝୁଲଣ ଉତ୍ସବ ପାଳନ ହେବା ପରେ ଅଯୋଧ୍ୟାର ଅନ୍ୟ ସମସ୍ତ ମନ୍ଦିରରେ ଏହି ପର୍ବ ଅନୁଷ୍ଠିତ ହୋଇ ଥାଏ । ଏହି ସ୍ଥାନଟିରେ ପହଞ୍ଚିବାକୁ ହେଲେ ଛୋଟ ବଡ଼, ଅଙ୍କା ବଙ୍କା ଉଚ୍ଚ ଉଚ୍ଚ ୫୦/୫୫ ପାହାଚ ଚଢ଼ିବାକୁ ହୋଇଥାଏ । ଏଠାରେ ବାନର ସେନାଙ୍କ ପ୍ରବଳ ପ୍ରକୋପ । ମନ୍ଦିର ଭିତରେ ରତ୍ନ ସିଂହାସନରେ ମଣି ଭଗବାନ, ବିଷ୍ଣୁ, ରାମ ଲକ୍ଷ୍ମଣ ଜାନକୀ, ରାଧାକୃଷ୍ଣ ଆଦି ଦେବ ଦେବୀ ବିରାଜିତ । ପର୍ବତ ଉପରୁ ସମଗ୍ର ଅଯୋଧ୍ୟାର ଦୃଶ୍ୟ ଅବଲୋକନ କଲେ ପାହାଡ଼ ଚଢ଼ାର କଷ୍ଟ ଲାଘବ ହୋଇଯାଏ । ପୂଜକଙ୍କ ଠାରୁ ପର୍ବତର ନାମକରଣ ଓ ମହିମା ଶ୍ରବଣ ପରେ ତଳକୁ ଓହ୍ଲାଇଲୁ । ଅଯୋଧ୍ୟା ଗାଇଡ୍ ବହିରେ ଲିଖିତ ଅଛି ଯେ ବହୁ ବର୍ଷ ପୂର୍ବେ ଏଠାରେ ଏକ ବୌଦ୍ଧ ବିହାର ଥିଲା ଓ ପ୍ରାୟ ୩୦୦ ବୌଦ୍ଧ ଭିକ୍ଷୁ ଏଠାରେ ନିବାସ କରୁଥିଲେ । ମହାତ୍ମା ଗୌତମ ବୁଦ୍ଧ ଏହି ପର୍ବତ ଉପରେ ୫ ବର୍ଷ ତପସ୍ୟାରେ ନିମଗ୍ନ ଥିଲେ ବୋଲି ଇତିହାସରୁ ଜଣାଯାଏ । ଛୋଟ ବଡ଼ ଗୁମ୍ଫାର ସମ୍ମିଶ୍ରଣରେ ଏହି ପର୍ବତର ଦୃଶ୍ୟ ବାସ୍ତବିକ ବେଶ୍ ରମଣୀୟ ଓ ମନୋମୁଗ୍ଧକର । ଦ୍ୱିତୀୟରେ ପହଞ୍ଚିଲୁ ସୂର୍ଯ୍ୟକୁଣ୍ଡ ସମୀପରେ, ସୁନ୍ଦର ଓ ପ୍ରଶସ୍ତ ପାହାଚ ଥିବା ତିନୋଟି ଘାଟ ସନ୍ନିବେଶିତ ସୂର୍ଯ୍ୟକୁଣ୍ଡର ଜଳରେ ପୁରୋହିତଙ୍କ ସାହାଯ୍ୟରେ ନାମ ଗୋତ୍ର ସହ ଜଳ ତର୍ପଣ କଲା ପରେ ଅଯୋଧ୍ୟା ରାଜବଂଶର କୁଳ ଦେବତା ଶ୍ରୀ ସୂର୍ଯ୍ୟନାରାୟଣଙ୍କ ଦର୍ଶନ ପାଇଁ ଗଲୁ । ସେହି ମନ୍ଦିରର ପୂଜକ

ବୁଝାଇ ଦେଲେ ଯେ ଶ୍ରୀ ରାମ ଲାଲାଙ୍କ ଜନ୍ମ ସମୟରେ ଗୋଟିଏ ମାସ ସୂର୍ଯ୍ୟଙ୍କର ଗତି ଅଟକି ଯାଇଥିଲା । ସନ୍ଥ ତୁଳସୀଦାସ ଶ୍ରୀରାମ ଚରିତ ମାନସରେ ବର୍ଣ୍ଣନା କରିଛନ୍ତି -

''ମାସ ଦିୱସ କର ଦିୱସ ଭା
ମରମ ନ ଜାନଇ କୋଇ,
ରଥ ସମେତ ରବି ଥାକଉ
ନିଶା କୱନ ବିଧି ହୋଇ''।

ଅର୍ଥାତ୍ ସୂର୍ଯ୍ୟଙ୍କର ଆଲୋକ ଯୋଗୁଁ ଅଯୋଧ୍ୟାରେ ମାସେ ଯାଏଁ କେବଳ ଦିନ ହୋଇ ରହିଲା, ଏହାର ମର୍ମ କେହି ଜାଣିପାରିଲେ ନାହିଁ, ସୂର୍ଯ୍ୟ ତ ତାଙ୍କ ରଥ ସହିତ ସେହିଠାରେ ଅଟକି ଗଲେ, ଆଉ ରାତି ହୁଅନ୍ତା କିପରି ? ସୁରଜ କୁଣ୍ଡର ବିସ୍ତୀର୍ଣ୍ଣ ପ୍ରାଙ୍ଗଣରେ ଅବସ୍ଥାପିତ ଏକ ଶିବାଳୟରେ ଦର୍ଶନ ସାରି ଭରତ ହନୁମାନ ମିଳନ ସ୍ଥଳ ଅଭିମୁଖେ ଗମନ କଲୁ । ସୁଉଚ୍ଚ ତୋରଣ ସମ୍ମୁଖରେ ଅଟୋ ଅଟକିଲା । ତୋରଣ ମଧ୍ୟ ଦେଇ ପ୍ରବେଶ କରିବା ପରେ ସ୍ଥାନଟି ଏକ ଆଶ୍ରମର ଶାନ୍ତ କାନ୍ତ ପରିବେଶ ଭଳି ମନେହେଲା । ବିରାଟ ଆୟତନ ବିଶିଷ୍ଟ ଏହି ଆଶ୍ରମରେ ପ୍ରଥମେ ଦୃଷ୍ଟିଗୋଚର ହେଲା ଏକ ବିରାଟ ବଟ ବୃକ୍ଷ । ସ୍ଥାନୀୟ ପୂଜକ ଏହି ସ୍ଥାନଟି ଭରତଙ୍କ ତପସ୍ୟାସ୍ଥଳ ଏବଂ ଗୋଟିଏ ବଟ ବୃକ୍ଷ ଛନ୍ଦି ହୋଇ ରହିଥିବା ବିଷୟରେ ପୌରାଣିକ ଉପାଖ୍ୟାନ ସହିତ ସମ୍ବନ୍ଧ ଯୋଡ଼ାଯାଇଥିବା ପ୍ରସଙ୍ଗ ଅବତାରଣା କରି ଭରତ-ହନୁମାନ ମିଳନର ଏହା ସ୍ମାରକୀ ବୋଲି ବୁଝାଇଲେ । ସେହି ବିରାଟ ବୃକ୍ଷର ଓହଳ ତଳେ ଲାଗେ ନାହିଁ, ତେଣୁ ଅନ୍ୟ ସମସ୍ତ ବୃକ୍ଷଠାରୁ ଏହା ସ୍ୱତନ୍ତ୍ର ବୋଲି ପରିକ୍ରମା ସମୟରେ ଦେଖାଇଲେ । ବୃକ୍ଷର ପାଦ ଦେଶରେ ଛୋଟ ଛୋଟ ମନ୍ଦିରରରେ ଗୁରୁ ବଶିଷ୍ଠ, ହନୁମାନ, ଭରତ ମାଣ୍ଡବୀଙ୍କ ମୂର୍ତ୍ତି ସ୍ଥାପନ କରାଯାଇଛି । ଅନ୍ୟ ଏକ ସ୍ଥାନରେ ଛୋଟ ମନ୍ଦିରରେ ରାମ-ଜାନକୀ ବିଦ୍ୟମାନ । ବୃକ୍ଷର ପାର୍ଶ୍ୱରେ ଏକ ମଧୁର, ସୁଶୀତଳ ଜଳ ପ୍ରଦାନକାରୀ କୂପ ଅବସ୍ଥାପିତ । ଏହି କୂପରେ ୨୭ ଗୋଟି ତୀର୍ଥର ଜଳ ମିଶ୍ରିତ ବୋଲି ପୂଜକ ମହାଶୟ ଅବଗତ କରାଇଲେ । ବାସ୍ତବିକ ସ୍ଥାନଟିର ପବିତ୍ରତାର ଅନୁଭବ ଦର୍ଶନ କରିଥିବା ବ୍ୟକ୍ତି ହିଁ ବ୍ୟକ୍ତ କରିପାରିବେ । ଏହି ପବିତ୍ର ସ୍ଥାନରେ ଭରତ ହନୁମାନଙ୍କର ମିଳନ ଦୁଇଥର ସଂଘଟିତ ହୋଇଥିଲା । ପ୍ରଥମ ଥର ଇନ୍ଦ୍ରଜିତ ଦ୍ୱାରା ଲକ୍ଷ୍ମଣଙ୍କ ଶକ୍ତିଭେଦ ସମୟରେ ବିଶଲ୍ୟକରଣୀ ନିମିତ୍ତ ସମଗ୍ର ଗନ୍ଧମାଦନ ପର୍ବତକୁ ବୋହି ଆଣିବା ସମୟରେ ପ୍ରଥମେ ପୀଡ଼ିତ ହୋଇ ଓ ପରେ ପରିଚୟ ପାଇ ମହାମିଳନ ହୋଇଥିଲା । ଦ୍ୱିତୀୟ ଥର ଆସନ୍ତାକାଲି ରାମଚନ୍ଦ୍ରଙ୍କ ବନବାସର

ଚଉଦବର୍ଷର ଅବଧି ଶେଷ ହୋଇଯିବ, ଭରତ ସନ୍ଦେଶ ନ ପାଇଲେ ଆତ୍ମାହୁତି ଦେବାର ଶପଥ ନେଇଥାନ୍ତି, ଏହିଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନର ସମାଚାର ପହଞ୍ଚାଇବାର ଚିନ୍ତା ଦୂରକରି ପବନ ତନୟ ବଲ ପବନ ସମାନ ପାବନୀ ଏହି ଆଶ୍ରମରେ ପହଞ୍ଚିଲେ । ସମଗ୍ର ରାମାୟଣରେ ଅଦ୍ୱିତୀୟ ଚରିତ୍ର ମହାନ୍ ତ୍ୟାଗୀ ଭରତ ଲାଲାଙ୍କର ଓ ରାମଦୂତ ହନୁମାନଙ୍କର ମହାମିଳନର ସ୍ମାରକୀ ଏହି ଆଶ୍ରମର ବାତାବରଣରେ ପବିତ୍ରତା ଭରି ରହିଛି । ପୃଥିବୀରେ ସମସ୍ତେ 'ରାମଭକ୍ତ' ହୋଇପାରନ୍ତି, କିନ୍ତୁ 'ରାମଦୂତ' କେବଳ ଅଞ୍ଜନା ନନ୍ଦନ ହନୁମାନ - ଠିକ୍ ସେହିଭଳି ପୃଥିବୀରେ ଅନେକ ତ୍ୟାଗୀ ଅଛନ୍ତି, ବିଭିନ୍ନ ପ୍ରକାର ତ୍ୟାଗ କରିପାରନ୍ତି, କିନ୍ତୁ ଭରତ ଲାଲାଙ୍କ ତ୍ୟାଗ ଅତୁଳନୀୟ । ସେହି ତାପସ ଓ ସାଧକଙ୍କ ମହାମିଳନସ୍ଥଳୀରୁ ବିଦାୟ ନେଇ ଅନ୍ୟ ମନ୍ଦିର ଦିଗରେ ଗମନ କଲୁ । ରାସ୍ତା ସାରା ଛୋଟ ବଡ଼ ମନ୍ଦିର ଉଦ୍ଦେଶ୍ୟରେ ଅଟୋରେ ବସି ପ୍ରଣାମ ଜଣାଉଥିଲୁ । କିଛି ସମୟ ପରେ ଅଟୋ ଏକ ବିରାଟ ଜଳାଶୟ ନିକଟରେ ପହଞ୍ଚାଇଲା । ଅଟୋବାଲାଙ୍କ ଠାରୁ ଜାଣିବାକୁ ପାଇଲୁ, ଏହା "ଭରତ ଜାନକୀ ମିଳନ କୁଣ୍ଡ" । ବନବାସରୁ ଫେରିବା ପରେ ପ୍ରଥମେ ଏଠାରେ ଭରତ ଓ ଜାନକୀଙ୍କର ମିଳନ ହୋଇଥିଲା । ଜଳାଶୟର ଉପରିଭାଗରେ ଗଞ୍ଜାମର ପୋଡ଼ାମାରୀ, କଂସାମାରୀ ଅଞ୍ଚଳର କେତେକ ତୀର୍ଥଯାତ୍ରୀ ରୋଷେଇ କରୁଥିବା ଦେଖିଲୁ । ଆମମାନଙ୍କର ଓଡ଼ିଆ କଥାବାର୍ତ୍ତା ଶୁଣି ସେମାନେ ଆମ ସହିତ ଦୁଇ ଚାରି ପଦ କଥା ହୋଇ ଏତେ ଆନନ୍ଦିତ ହେଲେ ଯେ କହିଲେ ନସରେ । ନିଜ ଗାଁ, ସହରଠାରୁ ଦୂରରେ କୌଣସି ସ୍ଥାନରେ ନିଜ ଅଞ୍ଚଳବାସୀଙ୍କ ସହ ପଦେ କଥା ହେଲେ ମନର ଆନନ୍ଦ ବହୁଗୁଣିତ ହୋଇଥାଏ । ତା'ପରେ ଆମେ ପହଞ୍ଚିଲୁ ପୂତ ପବିତ୍ର ସ୍ଥାନ 'ନନ୍ଦୀଗ୍ରାମ'ରେ । ନନ୍ଦୀଗ୍ରାମ ବିଷୟରେ ବର୍ଣ୍ଣନା କରିବାକୁଯାଇ ସନ୍ଥ ତୁଳସୀଦାସ ଲେଖିଛନ୍ତି-

"ନଂଦିଗାଓଁ କରି ପରନ କୁଟୀରା,
କୀହ୍ନ ନିୱାସୁ ଧରମ ଧୁର ଧୀରା ।"

ରାସ୍ତା ଉପରେ ଏକ ବିରାଟ ତୋରଣ ନନ୍ଦୀଗ୍ରାମର ଯାତ୍ରୀମାନଙ୍କୁ ସ୍ୱାଗତ କଲାଭଳି ଦଣ୍ଡାୟମାନ ହୋଇଥିବା ପ୍ରଥମେ ଅବଲୋକନ କଲୁ । ଅଯୋଧ୍ୟାଠାରୁ ଆଠ କିଲୋମିଟର ଦୂରରେ ଅବସ୍ଥିତ ନନ୍ଦୀଗ୍ରାମ ବର୍ତ୍ତମାନ "ଭରତ କୁଣ୍ଡ" ନାମରେ ପରିଚିତ । ଏଠାରେ ଦୁଇଟି ମନ୍ଦିର ରହିଛି । ସମ୍ରାଟ ବିକ୍ରମାଦିତ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରାଚୀନ ମନ୍ଦିର ଏବଂ ସେହି ସ୍ଥାନରେ ବର୍ତ୍ତମାନ ଗଢ଼ି ଉଠିଛି ଏକ ନୂତନ ମନ୍ଦିର । ନୂତନ ମନ୍ଦିରରେ ଶ୍ରୀ ଭରତ ରାମ ମିଳାପ ମନ୍ଦିର, ଶ୍ରୀ ଭରତ ହନୁମାନ ମିଳନ

ମନ୍ଦିର, ଶ୍ରୀରାମ ଜାନକୀ ମନ୍ଦିର, ଗୁରୁ ବଶିଷ୍ଠ ମନ୍ଦିର ଅବସ୍ଥିତ । ଭରତ ହନୁମାନ ମିଳନ ମନ୍ଦିରରେ ଆମ ପହଞ୍ଚିବା ବେଳକୁ ବିଗ୍ରହମାନଙ୍କର ମାଜଣା କାର୍ଯ୍ୟ ଚାଲୁ ରହିଥିଲା । ଅଳ୍ପ ସମୟର ଅପେକ୍ଷାପରେ ଦର୍ଶନ ମିଳିଲା । ଧଳା ମାର୍ବଲ ପ୍ରସ୍ତରରେ ପରସ୍ପର କୋଳାଗ୍ରତ ମୁଦ୍ରାରେ ଶ୍ରୀଭରତଜୀ ଓ ଶ୍ରୀହନୁମାନଜୀ ମୂର୍ତ୍ତି ସିଂହାସନରେ ବିରାଜିତ । ଦର୍ଶନ ପରେ ସୁସ୍ୱାଦୁ ଓ ସୁମିଷ୍ଟ ପ୍ରସାଦ ବଣ୍ଟନ କରାଗଲା । ମନ୍ଦିର ମଧ୍ୟରେ "ଅଖଣ୍ଡ ଜ୍ୟୋତି" ଦର୍ଶନ କଲୁ । ମନ୍ଦିରର ବିଜେ ବଖରାର ବାମ ପାର୍ଶ୍ୱରେ "ଭରତ ସୁଡ଼ଙ୍ଗ" ରହିଛି । ଉଚ୍ଚ ଉଚ୍ଚ ମାର୍ବଲ ନିର୍ମିତ କେତୋଟି ପାହାଚ ଅବତରଣ କଲେ ଭରତ ତପସ୍ଥଳରେ ପହଞ୍ଚିବାକୁ ହୋଇଥାଏ । ଏହି ସ୍ଥାନରେ ଦମ, ଶମ, ନିୟମର ମୂର୍ତ୍ତିମନ୍ତ ପ୍ରତୀକ ଭରତଲାଲା ଶ୍ରୀରାମଙ୍କର ଚରଣ ପାଦୁକା ଉଚ୍ଚ ଆସନରେ ସ୍ଥାପିତ କରି ନିଜେ ଶ୍ରୀରାମଙ୍କ ପ୍ରତିନିଧି ରୂପେ ଚଉଦ ବର୍ଷ ଅଯୋଧ୍ୟା ଶାସନ କରିଥିଲେ । ପରମ ନିଷ୍ଠା ଓ ଚରମ ପରାକାଷ୍ଠାର ଜ୍ୱଳନ୍ତ ପ୍ରତିଭୂ ଭରତଜୀଙ୍କର କଠୋର ତପସ୍ୟାସ୍ଥଳର ପବିତ୍ରତା ଓ ମହତ୍ତ୍ୱ ବିଷୟରେ ପୂଜକ ପ୍ରାଞ୍ଜଳ ଭାବେ ବୁଝାଇ ଦେଲେ । ତା'ପରେ ଶ୍ରୀରାମ ଜାନକୀ ମନ୍ଦିର, ଗୁରୁ ବଶିଷ୍ଠଙ୍କ ମନ୍ଦିର ଓ ମହାଦେବ ମନ୍ଦିର ଦର୍ଶନ କଲାପରେ ସେହି ସ୍ଥାନରୁ ବିଦାୟ ନେଲୁ । ତା'ପରେ ସେହି ଦିନର ଶେଷ ତୀର୍ଥସ୍ଥଳ ଦଶରଥଙ୍କ ସମାଧିପୀଠରେ ପହଞ୍ଚିଲୁ । ସେହି ସ୍ଥାନରେ ତଳ ପ୍ରଦେଶରେ ସୁଶୀତଳ ଛାୟା ପ୍ରଦାନକାରୀ ବୃକ୍ଷ ଓ ମଣ୍ଡପ ଶୋଭା ପାଉଥିଲା । କେତୋଟି ଉଚ୍ଚ ପାହାଚ ଚଢ଼ିଲା ପରେ ଦଶରଥଙ୍କ ସମାଧିସ୍ଥଳରେ ପହଞ୍ଚିଲୁ । ସମାଧିପୀଠ ନିକଟରେ ବିକ୍ରମାଦିତ୍ୟଙ୍କ ରାଜତ୍ୱକାଳୀନ ଦୁଇଟି ଯୁଦ୍ଧାସ୍ତ୍ର ଦର୍ଶକଙ୍କ ଦର୍ଶନ ନିମନ୍ତେ ରଖାଯାଇଛି । ସମାଧିସ୍ଥଳ ପରିକ୍ରମା କଲାପରେ ପ୍ରାଙ୍ଗଣ ମଧ୍ୟସ୍ଥ ମହାଦେବ ମନ୍ଦିରରେ ପହଞ୍ଚିଲୁ । ୧୦/୧୨ ବର୍ଷ ବୟସର ଛୋଟ ପୂଜକଙ୍କ ଠାରୁ ମନ୍ଦିର ଅଧିଷ୍ଠାତା ଦେବ ଦେବୀଙ୍କର ପରିଚୟ ଜାଣିଲୁ । ସମ୍ରାଟ ବିକ୍ରମାଦିତ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରାଚୀନ ବିଲ୍ୱହରି ମହାଦେବ ଶିବଲିଙ୍ଗଙ୍କୁ ବର୍ତ୍ତମାନ ନୂତନ ମନ୍ଦିରରେ ସ୍ଥାପନ କରାଯାଇଛି ବୋଲି ପରେ ସୂଚନା ମିଳିଲା । ପାଖ ପାଖରେ ଥିବା ଅନେକ ଦର୍ଶନୀୟ ସ୍ଥାନ ଯିବା ପାଇଁ ଆଗ୍ରହ ଥିଲେ ସୁଦ୍ଧା ଇସ୍କନ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁଯାୟୀ ଦିନ ଗୋଟାଏ ବେଳେ "ହନୁମାନ ବାଗ"ରେ ପହଞ୍ଚିଲୁ । ମଧ୍ୟାହ୍ନ ପ୍ରସାଦ ସେବନ ପରେ ଅଳ୍ପ ସମୟ ବିଶ୍ରାମ ନେଲୁ । ସଂଧ୍ୟା ୫ଟାରେ ଅଯୋଧ୍ୟାରୁ ବିଦାୟ ନେଇ ଚିତ୍ରକୂଟ ଅଭିମୁଖେ ଯାତ୍ରାରମ୍ଭ କଲୁ । ଆମ ସ୍ଥିରୀକୃତ ଯୋଜନାନୁସାରେ ରାତ୍ରି ପ୍ରସାଦ ସେବନ ପରେ ଚିତ୍ରକୂଟ ଅଭିମୁଖେ ଯାତ୍ରା କରିବା ବ୍ୟବସ୍ଥା ହୋଇଥିଲା, କିନ୍ତୁ ଅଯୋଧ୍ୟାରେ ପ୍ରବେଶ ସମୟରେ ଟ୍ରାଫିକ୍ ନିୟମ ଯୋଗୁଁ ସମସ୍ତ ଯାତ୍ରୀ ହଇରାଣ

ହୋଇଥିଲେ ଏବଂ ଆସନ୍ତାକାଲି ବସନ୍ତ ପଞ୍ଚମୀ  ତେଣୁ ଏହି ଅଲଭ୍ୟ ମହାସ୍ନାନ ନିମିତ୍ତ ଆହ୍ଲାବାଦ ସହର ଦେଇ ଯାଉଥିବା ରାସ୍ତାରେ ପ୍ରବଳ ଭିଡ଼ର ସମ୍ଭାବନାକୁ ଦୃଷ୍ଟିରେ ରଖି ରାତ୍ରି ପ୍ରସାଦ ପ୍ୟାକେଟ୍ ସହ ସଂଧ୍ୟା ୫ଟାରେ ଅଯୋଧ୍ୟାରୁ ପ୍ରସ୍ଥାନ କରିବାକୁ ବାଧ ହେଲୁ । ରାତ୍ରି ଆଠଟା ବେଳକୁ ରାସ୍ତାରେ ''ଓଁ ଢ଼ାବା'' ରେ ରାତ୍ରି ପ୍ରସାଦ ସେବନ କଲୁ ଓ ପୁଣି ବସ୍‌ରେ ଯାତ୍ରାରମ୍ଭ କଲୁ । ଆହ୍ଲାବାଦ ସହରର ୭/୮ କିଲୋମିଟର ଦୂରରେ ପିମ୍ପୁଡ଼ି ଧାଡ଼ି ପରି ଯାତ୍ରୀଗଣ ମୁଣ୍ଡ ଉପରେ ନିଜ ନିଜର ଲଗେଜ୍ ଧରି ରାତ୍ରି ଓ ପ୍ରବଳ ଶୀତକୁ ଖାତିର ନକରି ଚାଲୁ ଥାଆନ୍ତି । ଆସନ୍ତା ୧୭ ତାରିଖ ଦିନ ଏହି ପ୍ରବଳ ଜନସମାଗମରେ ଆମେ କିଭଳି ସ୍ନାନର ସୁଯୋଗ ପାଇବା- ସେହି ବ୍ୟସ୍ତତା କିଛି ସମୟ ପାଇଁ ବସ୍ ଭିତରେ ଯାତ୍ରୀମାନଙ୍କ ମଧ୍ୟରେ ଦେଖାଦେଲା । ଅଯୋଧ୍ୟାରୁ ଚିତ୍ରକୂଟର ଦୂରତା ୨୪୦ କିଲୋମିଟର, ତଥାପି ରାତ୍ରି ସାରା ବସ୍ ଚାଲୁଛି, ଅଟକୁଛି । ଏକ ସୁନ୍ଦର ତିକ୍ତ ଓ ବିରକ୍ତିଦାୟକ ଅନୁଭୂତି ଏହି ରାତ୍ରି ବସ୍‌ଯାତ୍ରା ସମୟରେ ସଂଗ୍ରହ ହୋଇଥିଲା । ସମସ୍ତ ବିରକ୍ତିର ଶେଷରେ ପ୍ରାତଃ ୬ଟାରେ ଚିତ୍ରକୂଟସ୍ଥ ଶ୍ରୀ ଶ୍ରୀଧର ଧାମ ଧର୍ମଶାଳାରେ ବସ୍ ଅଟକିଲା । ସେହିଦିନ ଶ୍ରୀ ଶ୍ରୀଧର ଧର୍ମଶାଳାର ୨୧୩ ନମ୍ବର ରୁମ୍‌ରେ ଆମ ପାଇଁ ବ୍ୟବସ୍ଥା ହୋଇଥିଲା ।

***ତା. ୧୫.୦୨.୨୦୧୩, ଶୁକ୍ରବାର***

ତ୍ରିତଳ ପ୍ରାସାଦ ସନ୍ନିବେଶିତ ଶ୍ରୀ ଶ୍ରୀଧରଧାମ ଧର୍ମଶାଳା । ସାଜସଜ୍ଜା ଓ ବନ୍ଦୋବସ୍ତର ସୁବ୍ୟବସ୍ଥା ଦୃଷ୍ଟିରୁ ଏହା କୌଣସି ତ୍ରି-ତାରକା ହୋଟେଲ୍‌ରୁ ନ୍ୟୁନ ନୁହେଁ । ସମ୍ମୁଖଭାଗରେ ତଳ ମହଲାରେ ଶ୍ରୀରାଧାକୃଷ୍ଣ ମନ୍ଦିର । ମନ୍ଦିର ମଧ୍ୟରେ ଗଣେଶ ଓ ହନୁମାନ ମଧ୍ୟ ପୂଜା ପାଉଛନ୍ତି । ଅଣ୍ଡର ଗ୍ରାଉଣ୍ଡ୍‌ରେ ହୋଟେଲ୍ ଓ ତ୍ରିତଳ ପ୍ରାସାଦରେ ଯାତ୍ରୀମାନଙ୍କର ରହିବା ବ୍ୟବସ୍ଥା କରାଯାଇଛି । ନିତ୍ୟକର୍ମ ସମାପନ ଓ ଦେବ ଦର୍ଶନ ପରେ ମଧ୍ୟାହ୍ନ ପ୍ରସାଦ ସେବନ ପାଇଁ ବସ୍‌ରେ ଅଖଣ୍ଡ ଧର୍ମଶାଳାରେ ପହଞ୍ଚିଲୁ । ଅଖଣ୍ଡ ଧର୍ମଶାଳାରେ ମଧ୍ୟାହ୍ନ ପ୍ରସାଦ ସେବନ କରି ଚିତ୍ରକୂଟର ତୀର୍ଥସ୍ଥଳ ଓ ଦର୍ଶନୀୟ ସ୍ଥାନ ଭ୍ରମଣ ଉଦ୍ଦେଶ୍ୟରେ ସଂରକ୍ଷିତ ବସ୍ ଯୋଗେ ବାହାରିଲୁ । ଚିତ୍ରକୂଟର ମହିମା ବର୍ଣ୍ଣନା କରିବାକୁ ଯାଇ ଗୋସ୍ୱାମୀ ତୁଳସୀଦାସ 'ରାମଚରିତ ମାନସ'ରେ ଲେଖିଛନ୍ତି -

''ରାମକଥା ମନ୍ଦାକିନୀ
ଚିତ୍ରକୂଟ ଚିତ ଚାରୁ,
ତୁଳସୀ ସୁଭଗ ସନେହ ବନପ୍ରିୟ
ରଘୁବୀର ବିହାରୁ ।''

ଦିନ ୨ଟାରେ ପ୍ରସିଦ୍ଧ ତୀର୍ଥସ୍ଥଳ ଗୁପ୍ତ ଗୋଦାବରୀ ନିକଟରେ ବସ୍ ରହିଲା । ପୁରାଣରେ ବର୍ଣ୍ଣନା କରାଯାଇଛି ଯେ, ଶ୍ରୀରାମଚନ୍ଦ୍ରଙ୍କ ବନବାସ ସମୟରେ ସେ ଏଠାରେ ପହଞ୍ଚିବା ପୂର୍ବରୁ ଦେବତାମାନେ ଏହି ପ୍ରାକୃତିକ ପରିବେଶରେ ସମସ୍ତ ବ୍ୟବସ୍ଥା କରିସାରିଥିଲେ । ଯେତେବେଳେ ପ୍ରଭୁ ଶ୍ରୀରାମଚନ୍ଦ୍ର ଏଠାରେ ପହଞ୍ଚିଲେ ନିଜ ବାଣରେ ନାସିକାରୁ ଗୋଦାବରୀ ନଦୀକୁ ଟାଣି ଆଣି ଏଠାରେ ପ୍ରକଟ କଲେ । ଆଗକୁ ଯାଇ ଗୋଦାବରୀ ନଦୀର ଧାର ଲୁପ୍ତ ହୋଇଯାଇଛି । ତେଣୁ ଏହି ସ୍ଥାନଟିର ନାମ 'ଗୁପ୍ତ ଗୋଦାବରୀ' ରଖାଯାଇଛି । ଅଯୋଧ୍ୟାରୁ ଚିତ୍ରକୂଟରେ ପ୍ରବେଶ କରିବା ଅଞ୍ଚଳଗୁଡ଼ିକ ଉତ୍ତର ପ୍ରଦେଶ ଅନ୍ତର୍ଗତ, ଗୁପ୍ତ ଗୋଦାବରୀ- ମଧ୍ୟପ୍ରଦେଶ ରାଜ୍ୟର ସତନା ଜିଲ୍ଲା ଅନ୍ତର୍ଭୁକ୍ତ । ବସ୍‌ରୁ ଓହ୍ଲାଇବା ସମୟରେ ପୁଷ୍ପ ବୃଷ୍ଟି ଭଳି ବାରିପାତ ହେଉଥିଲା, କିନ୍ତୁ ଗୁପ୍ତ ଗୋଦାବରୀ ଦର୍ଶନ ପାଇଁ ବାହାରିଲା ବେଳକୁ ପ୍ରବଳ ବର୍ଷା ଚାଲୁ ରହିଲା । ତଥାପି ଦେବ ଦର୍ଶନର ଲାଳସା ଏତେ ତୀବ୍ର ଥିଲା ଯେ ପାର୍ବତ୍ୟ ଅଞ୍ଚଳର ମୂଷଳଧାରାରେ ବର୍ଷା କାହା ମନରେ ଭୟ ସଞ୍ଚାର କରିପାରିନଥିଲା । କୁମ୍ଭମେଳାର ଅମୃତ ସ୍ନାନର ସୁଯୋଗ ସହିତ ନିକଟସ୍ଥ ଅନେକ ତୀର୍ଥ ଭ୍ରମଣ ଆମ ଭଳି ସମସ୍ତ ଭକ୍ତଙ୍କର ଲକ୍ଷ୍ୟ ଥିଲା । ତେଣୁ ଆମେ ଯେଉଁ ସ୍ଥାନକୁ ଯାଉଥିଲୁ ସେଠାରେ ପ୍ରବଳ ଭିଡ଼ର ସମ୍ମୁଖୀନ ହେଉଥିଲୁ । ଅସମ୍ଭବ ଭିଡ଼ରେ ଟିକଟ କାଉଣ୍ଟରରୁ ଟିକଟ ସଂଗ୍ରହ କରି ପର୍ବତାରୋହଣ ପାଇଁ ପ୍ରସ୍ତୁତ ହେଲୁ । କେତେକ ସ୍ଥାନରେ ନୀଳ ପ୍ଲାଷ୍ଟିକ ଝରି ଅଖା ଛାତର କାମ କରୁଛି ତ କେତେ ସ୍ଥାନ ଖୋଲା ଆକାଶ ତଳେ । ପୁଲିସ୍ ବାବୁମାନେ ସେଠାରେ ନୀରବ ଦ୍ରଷ୍ଟା । ଠେଲା ପେଲା ଯାତ୍ରୀଗଣ ପାହାଚ ଉପରେ ନିଜକୁ ନିଜେ ସମ୍ଭାଳିବା କଥା । ପାହାଚ ପରେ ପାହାଚ ଚଢ଼ା । ପାର୍ବତ୍ୟାଞ୍ଚଳର ପ୍ରବଳ ବର୍ଷା, ଲଣ୍ଡିତ ମସ୍ତକ ଛୋଟ ପିଲାଙ୍କର ବିରକ୍ତି ବୋଧକ କ୍ରନ୍ଦନ, ସମୟେ ସମୟେ ବିଜୁଳି ସହ ଘଡ଼ଘଡ଼ିର ଗର୍ଜନ ଯାତ୍ରା କଷଣକୁ ବହୁଗୁଣିତ କରିଥାଏ ସିନା ନୂତନ ସ୍ଥାନ ଦର୍ଶନର ଦୁର୍ବାର ଆକର୍ଷଣ ସମ୍ମୁଖରେ ଶରୀର ପୀଡ଼ା ତୁଚ୍ଛ ମନେ ହେଉଥାଏ । ପ୍ରବଳ ଭିଡ଼ ଯୋଗୁଁ ଏକ ଘଣ୍ଟା ପରେ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ସମ୍ଭବ ହେଲା । ପର୍ବତ ଉପରକୁ ଯେତେ ପାହାଚ ଚଢ଼ି ଯାଇଥିଲୁ ପୁଣି ସେତେ ପାହାଚ ତଳକୁ ଆସିଲେ ପ୍ରାକୃତିକ ଗୁମ୍ଫାରେ ପହଞ୍ଚିବାକୁ ହୁଏ । ସେଠାରେ କେତୋଟି ପ୍ରାକୃତିକ ଗୁମ୍ଫାର ରକ୍ଷଣାବେକ୍ଷଣ କରାଯାଇଛି ଓ ଯାତ୍ରୀମାନଙ୍କର ଯିବା ଆସିବାର ସୁବିଧା ପାଇଁ କେତୋଟି କୃତ୍ରିମ ଗୁମ୍ଫା ନିର୍ମାଣ କରାଯାଇଛି । ଗୁମ୍ଫା ଭିତରେ ଶ୍ରୀରାମ, ଲକ୍ଷ୍ମଣ ଓ ଜାନକୀ, ଶ୍ରୀହନୁମାନ ଓ ମହାଦେବଙ୍କ ପ୍ରସ୍ତର ମୂର୍ତ୍ତି । ଦୁଇଟି ପ୍ରାକୃତିକ କୁଣ୍ଡ ଅବସ୍ଥିତ । ଗୋଟିକରେ ଉଷ୍ମ ଜଳ ଓ ଅନ୍ୟଟିରେ ସୁଶୀତଳ ଜଳ ପୂର୍ଣ୍ଣ । ମଝିରେ

ଜାନକୀ କୁଣ୍ଡ । ସୀତା ମାତାଙ୍କର ସ୍ନାନ ସମୟରେ ଖଟଖଟା ନାମକ ଏକ ରାକ୍ଷସ ମାତାଙ୍କର ବସ୍ତ୍ର ଚୋରି କରିଥିଲା । ଦଣ୍ଡ ସ୍ୱରୂପ ଯାହାକୁ ଲକ୍ଷ୍ମଣଲାଲା ଓଲଟା ଝୁଲାଇ ଦେଇଥିଲେ ସେ ସବୁ ପ୍ରସ୍ତର ନିର୍ମିତ ମୂର୍ତ୍ତି ଏଠାରେ ଦେଖିବାକୁ ମିଳେ । ଏହି ପର୍ବତର ନାମ ତୁଙ୍ଗାରଣ୍ୟ ଓ ବନବାସ ସମୟରେ ଏଠାରେ ରାମ, ଲକ୍ଷ୍ମଣ ଓ ଜାନକୀଙ୍କ ବନବିହାର ଲୀଳା ବିଷୟରେ ସ୍ଥାନୀୟ ପୂଜକଙ୍କଠାରୁ ଶୁଣିବାକୁ ପାଇଲୁ । ଆପାଦ ମସ୍ତକ ବର୍ଷା ଜଳସିକ୍ତ ହୋଇଥିଲେ ମଧ୍ୟ ମନୋରମ ଦୃଶ୍ୟରାଜି ସମ୍ବଳିତ ପୌରାଣିକ ଉପାଖ୍ୟାନ ବର୍ଣ୍ଣିତ ଅତୀବ ପାବନ ସ୍ଥାନ ଦର୍ଶନର ସୌଭାଗ୍ୟ ଲାଭ କରିଥିବାରୁ ଇସ୍କନ ବାବାମାନଙ୍କୁ ଗଭୀର କୃତଜ୍ଞତା ଜଣାଇଲୁ । ବାରିଧାରାସ୍ନାତ ଶରୀରରେ ସାମାନ୍ୟ ଉଷ୍ଣତା ଫେରାଇ ଆଣିବା ପାଇଁ ସ୍ଥାନୀୟ ଚା' ହୋଟେଲରୁ କପେ କପେ ଚା' ପାନର ମଜା ନେଲୁ । ତା'ପରେ ଅତ୍ରିମୁନିଙ୍କ ଆଶ୍ରମ ଦର୍ଶନରେ ବାହାରିଲୁ । ସେହି ଦିନ ପ୍ରବଳ ଜନ ସମାଗମକୁ ଦୃଷ୍ଟିରେ ରଖି ଆଶ୍ରମର ଦୁଇ କିଲୋମିଟର ପୂର୍ବରୁ ବସ୍, ଅଟୋ ଇତ୍ୟାଦି ଯାନ ଯିବାପାଇଁ ନିଷେଧ କରାଯାଇଥାଏ । ପିଚ୍ଛିଳ କର୍ଦ୍ଦମାକ୍ତ ରାସ୍ତାରେ ପଦଯାତ୍ରା ହିଁ ଏକମାତ୍ର ପନ୍ଥା, ପୁଣି ସଂଧ୍ୟା ଆଗତ ପ୍ରାୟ, ତେଣୁ କାଳ ବିଳମ୍ବ ନକରି ତରବରରେ ଯାତ୍ରୀମାନେ ଦୌଡ଼ିବା ଲକ୍ଷ୍ୟ କଲୁ । ବର୍ଷାର କ୍ରୁରତା ଓ ଶାରୀରିକ ଅବସନ୍ନତା ସର୍ବୋପରି କର୍ଦ୍ଦମାକ୍ତ ରାସ୍ତାର ଶୋଚନୀୟ ଅବସ୍ଥା ଲକ୍ଷ୍ୟ କରି ଆମ ଭଳି କେତେ ଜଣ ଯାତ୍ରୀ ବସ୍ ଭିତରେ ଅନ୍ୟମାନଙ୍କର ଫେରିବା ଅପେକ୍ଷାରେ ରହିଲୁ । ସେହିସ୍ଥାନରୁ ଫେରିବା ପରେ ଯାତ୍ରୀମାନଙ୍କ ମୁହଁରୁ ଶୁଣିଲୁ ସେଠାରେ ଏକ ପ୍ରାଚୀନ ଆଶ୍ରମ ରହିଛି ଓ ନିକଟରେ ଆଧୁନିକ କଳା କୌଶଳରେ ପୂର୍ଣ୍ଣ ଏକ ନୂତନ ମନ୍ଦିର ମଧ୍ୟ ନିର୍ମାଣ କରାଯାଇଛି । ଏହି ଆଶ୍ରମରେ ଶ୍ରୀରାମ ଚନ୍ଦ୍ର ଅତ୍ରି ମୁନିଙ୍କୁ ଦର୍ଶନ କରିଥିଲେ ଓ ସତୀ ଅନସୂୟା ମାତା ସୀତାଙ୍କୁ ଉପଦେଶ ଓ ଅମଳାନ ବସ୍ତ୍ର ପ୍ରଦାନ କରିଥିଲେ । ପୁରାଣରେ ଲିଖିତ ଅଛି ଯେ ଥରେ ନିଜ ନିଜ ପତ୍ନୀଦେବୀଙ୍କ ପ୍ରରୋଚନାରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଦେବୀ ଅନସୂୟାଙ୍କ ସତୀତ୍ୱ ପରୀକ୍ଷା ପାଇଁ ଆଶ୍ରମରେ ପ୍ରବେଶ କରିଥିଲେ । ସତୀତ୍ୱ ବଳରେ ଦେବୀ ଏହା ଜାଣିପାରି ସେମାନଙ୍କୁ ଛୋଟ ଛୋଟ ବାଳକରେ ପରିଣତ କରାଇପାରିଥିଲେ । ଏହି ସମସ୍ତ ପୌରାଣିକ ବିଷୟ ବସ୍ତୁକୁ ମୂର୍ତ୍ତି ଆକାରରେ ଏହି ଆଶ୍ରମରେ ସ୍ଥାନିତ କରାଯାଇଥିବା ବିଷୟ ଦର୍ଶନ କରିଥିବା ଯାତ୍ରୀମାନେ ବର୍ଣ୍ଣନା କଲେ । ତା'ପରେ ସେଠାରୁ ସ୍ଫଟିକ ଶିଳା ଦର୍ଶନ ଅଭିମୁଖେ ଅଗ୍ରସର ହେଲୁ । ପୟସ୍ୱିନୀ ନଦୀ କୂଳରେ ସ୍ଫଟିକ ଶିଳାର ଏକ ଉଚ୍ଚ ସ୍ଥାନ ରହିଛି । ବନବାସ ସମୟରେ ଇନ୍ଦ୍ରଦେବଙ୍କ ପୁତ୍ର ଜୟନ୍ତ ଏଠାରେ ସୀତା ମାତାଙ୍କର ଚରଣ ଖୁମ୍ପିବାକୁ ପ୍ରଯତ୍ନ କରିଥିଲା । ସ୍ଫଟିକା ଶିଳା

ଉପରେ କିଛି କ୍ଷଣ ଉପବେଶନ କରି ସ୍ଥାନୀୟ ପୂଜକଙ୍କ ଠାରୁ ସ୍ଥାନର ମାହାତ୍ମ୍ୟ ବିଷୟ ଶୁଣି ଫେରିଲୁ । ବିଧିର ନିର୍ଦ୍ଦେଶରେ ସେହିଦିନ ଆମେ ଦର୍ଶନ ପାଇଁ ବସ୍‌ରୁ ଓହ୍ଲାଇଲେ ବର୍ଷା ଆରମ୍ଭ ହୁଏ ପୁଣି ବସ୍‌ରେ ଉଠିଲେ ବର୍ଷା ବନ୍ଦ ହୁଏ । ମନ୍ଦାକିନୀ ନଦୀର 'ରାମଘାଟ' ଥିଲା ସେ ଦିନ ଦର୍ଶନର ଶେଷ ସ୍ଥାନ । ରାତ୍ରି ସମୟ, ଝିପିଝିପି ବର୍ଷାର ପ୍ରକୋପ ଯୋଗୁଁ ଆମ ଭଳି ଅଧିକାଂଶ ଯାତ୍ରୀ 'ରାମଘାଟ' ଦର୍ଶନରୁ ବଞ୍ଚିତ ହେଲୁ । ଇସ୍କନ ବାବାମାନେ ଓ ଅଳ୍ପ କେତେ ଜଣ ଯାତ୍ରୀ ସେଠାରେ ରାମ, ଲକ୍ଷ୍ମଣ, ଜାନକୀ ମନ୍ଦିର ଓ ଗଂଗା ଆରତୀ ଦର୍ଶନ କରି ଫେରିଲେ । ଫେରିବା ରାସ୍ତାରେ ଅଖଣ୍ଡ ଧର୍ମଶାଳାରୁ ରାତ୍ରି ପ୍ରସାଦ ପ୍ୟାକେଟ୍ ସଂଗ୍ରହ କରି ଶ୍ରୀ ଶ୍ରୀଧର ସ୍ୱାମୀଙ୍କୁ ସ୍ମରଣ କରି ରାତ୍ରି ବିଶ୍ରାମ ନେଲୁ ।

### ତା. ୧୬.୦୨.୨୦୧୩, ଶନିବାର

ଚିତ୍ରକୂଟରୁ ପ୍ରସ୍ଥାନ ସମୟ ସକାଳ ୬ ଘଣ୍ଟା ବୋଲି ସୂଚନା ଦିଆଯାଇଥାଏ । ନିତ୍ୟକର୍ମ ସମାପନ ପରେ ଶ୍ରୀ ଶ୍ରୀଧର ଧାମର ମନ୍ଦିରର ମଙ୍ଗଳ ଆରତୀ ଦର୍ଶନ କରି ବସ୍‌ରେ ଆହ୍ଲାବାଦ ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ଫୁଲଝରି ପରି ପଡୁଥିବା ବର୍ଷା ବିନ୍ଦୁ ବସ୍‌ରେ ଉଠିବା ପରେ ଅଧିକରୁ ଅଧିକ ହେଲା । ସକାଳ ୧୦ ଘଣ୍ଟା ସମୟରେ ଆହ୍ଲାବାଦର ସ୍ୱାମୀ ନାରାୟଣ ମନ୍ଦିରରେ ପହଞ୍ଚିଲୁ । ସେଠାରେ ଯାତ୍ରୀମାନଙ୍କ ପାଇଁ ସାମୂହିକ ପ୍ରକୋଷ୍ଠର ବ୍ୟବସ୍ଥା କରାଯାଇଥିଲା । ମାତ୍ର ଦୁର୍ବଳ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଆମେ ବ୍ୟକ୍ତିଗତ କୋଠରୀ ପାଇଁ ଅନୁରୋଧ କରିଥିଲୁ ଓ ସେଠାରେ ପହଞ୍ଚିବା ପରେ ତଳ ମହଲାର ୦୪ ନମ୍ବର ରୁମ୍‌ର ଚାବି ଆମକୁ ଦିଆଗଲା । ମଧ୍ୟାହ୍ନ ସୁଦ୍ଧା ବର୍ଷା ଅଧିକରୁ ଅଧିକ ହେବାକୁ ଲାଗିଥାଏ । ଉତ୍ତର ଭାରତ ତୀର୍ଥ ଯାତ୍ରା ସମୟରେ ଆମେ ଏହି ମନ୍ଦିରରେ ଅବସ୍ଥାନ କରିଥିଲୁ । ଏଠାରେ ପ୍ରସାଦ ପ୍ରସ୍ତୁତି ଓ ଭୋଜନ ସ୍ଥାନର ସୁବ୍ୟବସ୍ଥା ରହିଥିବାରୁ ଯଦିଓ ବର୍ଷା ବିଶେଷ କିଛି ବାଧକ ସୃଷ୍ଟି କରି ନ ଥିଲେ ମଧ୍ୟ ସ୍ଥାନୀୟ ଲୋକଙ୍କ ଠାରୁ ସ୍ଥାନୀୟ ପାଣିପାଗ ବିଷୟରେ ଶୁଣି ବ୍ୟାକୁଳିତ ହେଉଥିଲୁ । ମଧ୍ୟାହ୍ନ ପ୍ରସାଦ ସେବନ ପରେ ବିଶ୍ରାମ ପ୍ରକୋଷ୍ଠର କବାଟ ଝରକା ବନ୍ଦ କରି କେବଳ ପ୍ରୟାଗସ୍ଥ ବେଣୀ ମାଧବ, ଶ୍ରୀ ଗଂଗାମାତା ଓ ସ୍ୱାମୀ ନାରାୟଣଙ୍କୁ ପ୍ରାର୍ଥନା କରିବା ବ୍ୟତୀତ ଆମ ପକ୍ଷରେ ଅନ୍ୟ କିଛି ସମ୍ଭବ ନ ଥିଲା । ଥରକୁ ଥର କୋଠରୀର ବାହାରକୁ ଆସି ବର୍ଷାର ପ୍ରକୋପକୁ ଅନୁଧ୍ୟାନ କରୁଥିଲୁ । ରାତି ୯ଟା ବେଳକୁ ରାତ୍ରି ପ୍ରସାଦ ସେବନ ସମୟରେ ବର୍ଷା ସାମାନ୍ୟ କମ୍ ହେବା ଲକ୍ଷ୍ୟ କଲୁ । ମଧ୍ୟ ରାତ୍ରିରେ ବାହାରକୁ ଆସି ମେଘମୁକ୍ତ ଆକାଶକୁ ଦେଖି ସାମାନ୍ୟ ଆଶ୍ୱସ୍ତି ଅନୁଭବ

କଲୁ । ପ୍ରାତଃ ୪ ଘଣ୍ଟା ସମୟରେ ଅଲଭ୍ୟ ଅମୃତ ସ୍ନାନ ଉଦ୍ଦେଶ୍ୟରେ ବାହାରିବା ପାଇଁ କାର୍ଯ୍ୟକ୍ରମ ସ୍ଥିର କରାଯାଇଥିଲା ।

**ତା. ୧୭.୦୨.୨୦୧୩, ରବିବାର**

ଠିକ୍ ପ୍ରାତଃ ୪ ଘଣ୍ଟା ସମୟରେ ହରିନାମ ସଂକୀର୍ତ୍ତନ ସହ ବହୁ ପ୍ରତୀକ୍ଷିତ ଦୁର୍ଲ୍ଲଭ କୁମ୍ଭସ୍ନାନ ନିମନ୍ତେ ତ୍ରିବେଣୀ ସଂଗମକୁ ଯାତ୍ରା କରିବା ବ୍ୟବସ୍ଥା ଥିଲେ ମଧ ସ୍ୱାସ୍ଥ୍ୟଗତ ଅପାରଗତା ଯୋଗୁଁ ଆମ ଭଳି କେତେ ଯାତ୍ରୀ ଅଟୋରେ ଯିବା ପାଇଁ ବାହାରିଲୁ । ଅଳ୍ପ ବାଟ ଚାଲିଲା ପରେ ଅଟୋ ପାଇଲୁ ଓ ଅଟୋବାଲା ମହାବୀର ପୋଲିସ୍ ଚୌକ ନିକଟରେ ଥିବା ସ୍ନାନ ଘାଟ ନିକଟରେ ପହଞ୍ଚାଇଦେଲା । ଅଳ୍ପ କିଛିବାଟ ଚାଲିଲା ପରେ ଘାଟ ନିକଟରେ ପହଞ୍ଚିଲୁ । ସ୍ୱାମୀ ନାରାୟଣ ମନ୍ଦିର ଠାରୁ ତ୍ରିବେଣୀ ସଂଗମର ଦୂରତା ୫ କି.ମି. । ବର୍ଷା ନ ଥିଲେ ମଧ ପରିବେଶ ଘନ କୁହୁଡ଼ି ଦ୍ୱାରା ଆଚ୍ଛାଦିତ । ସଂଗମ ସ୍ଥାନରେ ସୋରିଷ ପକାଇବା ପାଇଁ ଜାଗା ନାହିଁ । ଆମ ଦଳର ସ୍ତ୍ରୀ ମାନେ ପ୍ରଥମେ ଓ ପରେ ପୁରୁଷମାନେ ସ୍ନାନ କରିବା ଠିକ୍ କଲୁ । ରାସ୍ତା ଦେଖାଇବା ପାଇଁ ଓ ପୂଜା ଦୀପ ଜଳାଇବା ପାଇଁ ପତିବାବୁ ଆମ ସାଙ୍ଗରେ ଯାଇଥିଲେ । ବହୁ ଆକାଂକ୍ଷିତ ଅଲଭ୍ୟ ଅମୃତ ସ୍ନାନ ସାରି ଶୁଖିଲା ସ୍ଥାନକୁ ଫେରିଲୁ । ପୁରୁଷମାନେ କୁମ୍ଭ ସ୍ନାନ ସାରି ସଂଗମର ଜଳ ସଂଗ୍ରହ କରି ଫେରିଲେ । ଆମର ସ୍ନାନ ସରିବା ପରେ କୀର୍ତ୍ତନ ମଣ୍ଡଳୀ ସହ ବାବାମାନେ ପହଞ୍ଚିଲେ । କୁମ୍ଭସ୍ନାନର ସମସ୍ତ ଶ୍ରେୟ ବହନ କରିଥିବା ଆୟୋଜକ ଇସ୍କନ ବାବାମାନଙ୍କୁ ପ୍ରଣିପାତ ହୋଇ ଅତ୍ୟନ୍ତ ହର୍ଷ ଉଲ୍ଲାସରେ ଫେରିବା ରାସ୍ତା ଧରିଲୁ । ନିକଟରେ ବଡ଼ ହନୁମାନ ମନ୍ଦିରରେ ଯାତ୍ରୀମାନଙ୍କର ଭିଡ଼ ଦେଖିସୁଦ୍ଧା ଉଚ୍ଚ ପାହାଚ ଚଢ଼ିବା ଭୟରେ ରାସ୍ତାରୁ ହାତ ଟେକି ଫେରିଲୁ । ଅଟୋ ଡ୍ରାଇଭର୍ ମାନଙ୍କୁ ଆମ ବସା ସ୍ଥାନ ସ୍ୱାମୀ ନାରାୟଣ ମନ୍ଦିରର ଠିକଣା କହିଲେ ସେମାନେ ବୁଝିପାରୁନଥାନ୍ତି । ଜଣେ ଦୁଇ ଜଣ ପୁଲିସ୍‌କୁ ପଚାରି ମଧ ନିରାଶ ହେଲୁ । ଅଟୋର ସନ୍ଧାନରେ ପାଖାପାଖି ଏକ କିଲୋମିଟର ରାସ୍ତା ଅତିକ୍ରମ କଲୁ । କିଛି ସମୟ ଏଣେ ତେଣେ ବୁଲାବୁଲି କଲାବେଳକୁ ଆମ ଇସ୍କନ ସଂସ୍କାର ସହାୟକ ବାଳକଟିକୁ ଦେଖି ପତିବାବୁଙ୍କ ସ୍ତ୍ରୀ ଡ଼ାକ ପକାଇଲେ । ସେହି ପିଲାଟି କେ.ଏମ୍.ସି ସାମ୍ନାରେ କହିଲେ ଅଟୋବାଲା ବୁଝିବେ ବୋଲି ଠିକ୍ ଠିକଣା ବୁଝାଇ ଦେଲେ । ପିଲାଟି ସହ ଠିକଣା ବୁଝିବା ସମୟରେ ରାସ୍ତାର ବାମ ପାର୍ଶ୍ୱରେ ଏକ ମନ୍ଦିର ବୋର୍ଡ଼ ଉପରେ "ଜଗଦୀଶ ସ୍ୱାମୀ" ଲେଖାଥିବା ଦେଖିଲୁ । କୁମ୍ଭସ୍ନାନ ପରେ ଦେବ ଦର୍ଶନ କରି ପାରି ନ ଥିବାରୁ ମନ ବିଷର୍ଣ୍ଣ ହୋଇଥାଏ ପୁଣି ବାଟ ଖୋଜି ପାଉ ନ ଥାଉ । ଏହିଭଳି ଏକ ଆବେଗ ପୂର୍ଣ୍ଣ ମୁହୂର୍ତ୍ତରେ ଭାବର ଠାକୁର

ଭାବଗ୍ରାହୀ ଠିକଣା ବୁଝାଇଦେବା ପାଇଁ ଆମ ତୀର୍ଥ ପିଲାଙ୍କୁ ସାକ୍ଷାତ୍ କରାଇଲେ ଓ ସ୍ୱୟଂ ଦର୍ଶନ ଦେଲେ । ମାତ୍ର ୦୬/୦୭ଟି ପାହାଚ ଚଢ଼ିଗଲା ପରେ ମନ୍ଦିରରେ ପ୍ରବେଶ କରି ଦେଖିଲୁ ଆମର ପରମ ଆରାଧ୍ୟ ଜଗତର ନାଥ ଜଗନ୍ନାଥ, ଭାଇ ବଳଭଦ୍ର ଓ ସୁଭଦ୍ରାଙ୍କ ସହ ରତ୍ନ ସିଂହାସନରେ ବିରାଜିତ । ସେହି ସମୟରେ ଅପ୍ରତ୍ୟାଶିତ ଭାବେ ଜଗନ୍ନାଥ ଦର୍ଶନର ଅନୁଭବ କେବଳ ଅନୁଭବୀ ହିଁ ପ୍ରକାଶ କରିପାରିବ । କିଛି କ୍ଷଣ ପାଇଁ ମନ ଓ ନୟନ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ଚକାନୟନଙ୍କୁ ଚର୍ମ ନୟନରେ ଦର୍ଶନ କଲା ପରେ ମଧ୍ୟ ମନରେ ବିଶ୍ୱାସ ଆସୁ ନଥିଲା ଯେ ସୁଦୂର ଆହ୍ଲାବାଦ ସହରରେ ଚିନ୍ତନ କରୁ କରୁ ଚିନ୍ତାମଣି, ଓଡ଼ିଆ ପ୍ରାଣର ଦେବତା ଶ୍ରୀଜଗନ୍ନାଥ ଦର୍ଶନ ଦେବେ, ଭାଗବତ ବାଣୀ -

''ଏ ମନ ପାଞ୍ଚୁଥାଏ ଯାହା
କାଳେ ପ୍ରାପତ ହୁଏ ତାହା !''

ଏଠାରେ ଅକ୍ଷରେ ଅକ୍ଷରେ ପ୍ରମାଣିତ ହେଲା, ଆମକୁ ଠିକଣା ବୁଝାଇଥିବା ଇସ୍କନ ପିଲାଟି ବାବାମାନଙ୍କ ପାଇଁ ଓ ନିଜ ଗାଁର ଲୋକଙ୍କ ପାଇଁ ସଂଗମରୁ ପବିତ୍ର ଜଳ ସଂଗ୍ରହ କରିଥିଲା । ବାଟରେ ଆଉ ଜଣେ ଦୁଇଜଣ ଇସ୍କନ କର୍ମକର୍ତ୍ତାଙ୍କୁ ଅଟୋରେ ବସାଇ ବେଶ୍ ଖୁସିରେ ସ୍ୱାମୀ ନାରାୟଣ ମନ୍ଦିରରେ ପହଞ୍ଚିଲୁ । ସାମାନ୍ୟ ଜଳଯୋଗ ପରେ ପ୍ରଫୁଲ୍ଲିତ ମନରେ ଆହ୍ଲାବାଦ ସହର ପରିକ୍ରମା ଉଦ୍ଦେଶ୍ୟରେ ବାହାରି ପଡ଼ିଲୁ । କିଛି ଜିନିଷ କିଣାବିକାର ଉଦ୍ଦେଶ୍ୟ ନ ଥିଲେ ମଧ୍ୟ କୁମ୍ଭସ୍ନାନ ସଫଳ ହୋଇଥିବା ଯୋଗୁଁ ପ୍ରବଳ ଉତ୍ସାହରେ ବଜାର ବୁଲି ଯତ୍ ସାମାନ୍ୟ ଜିନିଷ କ୍ରୟ କରି ବସାକୁ ଫେରିଲୁ । ଆହ୍ଲାବାଦ ସହରର ବଜାର ବୁଲିବା ସମୟରେ ଲକ୍ଷ୍ୟ କଲୁ ପ୍ରାଚୀନ ଐତିହାସିକ ସହର ଆହ୍ଲାବାଦର ପ୍ରତି ସାହିରେ ମୋଗଲ ଶୈଳୀରେ ନିର୍ମିତ କେତୋଟି ଜୀର୍ଣ୍ଣ ଶୀର୍ଣ୍ଣ ସୌଧ ରହିଛି, ଅଳ୍ପ କେତୋଟି ସୌଧର ନବୀକରଣ କରାଯାଇ ହୋଟେଲ୍ ଓ ବଜାର କମ୍ପ୍ଲେକ୍ସ ତିଆରି ହୋଇଛି । ମହାକୁମ୍ଭ ସ୍ନାନ ପାଇଁ ପନିପରିବା ଦର ବୃଦ୍ଧି ହୋଇନାହିଁ । ଗଳି କନ୍ଦିରେ ଅଗଣିତ ତୀର୍ଥଯାତ୍ରୀଙ୍କ ଭିଡ଼ ଦେଖାଯାଉଥାଏ । ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଅପୂର୍ବ ଭାଇଚାରା ଭାବ ମଧ୍ୟ ପରିଲକ୍ଷିତ ହେଉଥାଏ । ମଧ୍ୟାହ୍ନରେ ପ୍ରସାଦ ସେବନ ପରେ ଅଳ୍ପ ସମୟ ବିଶ୍ରାମ ନେଇ ସଙ୍ଗମ ସ୍ଥଳକୁ ପୁଣି ଥରେ ବୁଲିଯିବା ପାଇଁ ଠିକ୍ କଲୁ । ପ୍ରସନ୍ନ ହୃଦୟ କିପରି ମାନସିକ ଓ ଶାରୀରିକ ବଳ ବଢ଼ାଇଥାଏ, ଅପର ପକ୍ଷରେ ବିଷର୍ଣ୍ଣ ହୃଦୟ ମନୋବଳ ଓ ଦୈହିକ ବଳ କିପରି କ୍ଷୀଣ କରିଥାଏ - ଏହା ସେହି ଦିନର ସେହି ଅଲଭ୍ୟ ଅମୃତ ସ୍ନାନ ସମାପନ ପରେ

ଆମେ ମର୍ମେ ମର୍ମେ ଅନୁଭବ କଲୁ । ମନ୍ଦିର ସାମ୍‌ନା ହୋଟେଲ୍‌ରୁ ଚା' ପାନ କରି ଅଟୋରେ ସଂଗମ ଯିବା ପାଇଁ ବାହାରିଲୁ । ଟ୍ରାଫିକ୍ ନିୟନ୍ତ୍ରଣ ଯୋଗୁଁ ଅଟୋ ଆମକୁ ଯେଉଁ ସ୍ଥାନରେ ପହଞ୍ଚାଇଲା ସେଠାରୁ ୫ କିଲୋମିଟର ଆଗକୁ ଗଲେ ସଂଗମ ସ୍ଥଳ । ତେଣୁ ୫ + ୫ = ୧୦ କିଲୋମିଟର ଯିବା ଓ ଫେରିବା ପାଇଁ ଆମ ପକ୍ଷରେ ସମୟ ଓ ସାହସ ନଥିଲା । ଅଧ କିଲୋମିଟର ଲକ୍ଷ୍ୟ ଭ୍ରଷ୍ଟ ହୋଇ ବୁଲିବା ପରେ ପୃଥିବୀ ବିଖ୍ୟାତ 'ମୀନା ବଜାର'ରେ ପହଞ୍ଚିଲୁ । କିଛି କିଣିବା ଉଦ୍ଦେଶ୍ୟ ନ ଥିଲେ ମଧ୍ୟ ଭ୍ରମଣ ସମୟରେ ସରକାରଙ୍କ ସୁବନ୍ଦୋବସ୍ତ, ଜନସାଧାରଣଙ୍କର ଅକୁଣ୍ଠିତ ସାହାଯ୍ୟ, ବଦାନ୍ୟ ବ୍ୟକ୍ତିମାନଙ୍କର ଦାନ, ବିଭିନ୍ନ ଅନୁଷ୍ଠାନମାନଙ୍କର ସହଯୋଗ କୁମ୍ଭମେଳାର ମୁଖ୍ୟ ଆକର୍ଷଣୀୟ ବିଷୟ ଥିଲା, ଏହା ହୃଦୟଙ୍ଗମ କଲୁ । ପ୍ରତିଦିନ ଦୂରଦର୍ଶନ ଓ ଖବର କାଗଜରେ ''ପୁରୀ ସମୁଦ୍ର କୂଳରେ ବଙ୍ଗୀୟ/ବିହାରୀ ପର୍ଯ୍ୟଟକଙ୍କ ମୃତ୍ୟୁ'' ଖବର ଦେଖିବାକୁ ଓ ଶୁଣିବାକୁ ମିଳୁଛି । ଏଠାରେ ଅମୃତ ସ୍ନାନ ଯୋଗ ସମୟରେ କୋଟି କୋଟି ଭକ୍ତଙ୍କର ସୁବିଧା ପାଇଁ ଉତ୍ତର ପ୍ରଦେଶ ସରକାର ''ଜଲ୍ ପୁଲିସ୍'' ଭଳି ଏକ ସ୍ୱତନ୍ତ୍ର ସଂସ୍ଥା ସ୍ଥାପନ କରିଥିବା ପ୍ରୟାସ ଯୋଗୁଁ ଦୁର୍ଘଟଣା ଜନିତ ଅମୂଲ୍ୟ ଜୀବନ ସୁରକ୍ଷିତ ହୋଇ ପାରୁଥିବା ବିଷୟ ଦେଖିବାକୁ ପାଇଲୁ । ଜଳ ପରିମଳ ବ୍ୟବସ୍ଥା, ଅସ୍ଥାୟୀ ଡ଼ାକଘର, ଡ଼ାକ୍ତରଖାନା ପାଇଁ ଶହ ଶହ କୋଟି ଟଙ୍କା ବ୍ୟୟ କରାଯାଇ ପରିବେଶକୁ ସୁରକ୍ଷିତ ଓ ଶୃଙ୍ଖଳିତ କରିଥିବା ଯୋଗୁଁ ଉତ୍ତର ପ୍ରଦେଶ ସରକାରଙ୍କର ଉଦ୍ୟମକୁ ଉଚ୍ଚ ପ୍ରଶଂସା କଲୁ । ଅବଶ ଦେହରେ ଉଦାସ ମନରେ ଫେରିବା ପାଇଁ ଚେଷ୍ଟା କଲୁ କିନ୍ତୁ ଅଟୋ ନ ପାଇ ନିରାଶ ହେଲୁ । ଦୁଇ କିଲୋମିଟର ରାସ୍ତା ଅତିକ୍ରମ କଲା ପରେ ଏକ ଅଶ୍ୱବାହୀ ପଟା ରିକ୍ସାରେ ଆଶ୍ରୟ ନେଲୁ । ତୀର୍ଥଯାତ୍ରା ସମୟରେ ସବୁ ପ୍ରକାର ଯାନବାହନରେ ବସିବା ଅନୁଭୂତି ସଂଗ୍ରହ କରିବା ଆବଶ୍ୟକ ତେଣୁ କିଛି ଚିନ୍ତା ନ କରି ବୀର ଦର୍ପରେ ପଟା ରିକ୍ସାରେ ଉଠିଗଲୁ । ସଂଧ୍ୟା ସମୟ, କୁମ୍ଭ ନଗରୀର ଜନ ଗହଳି ପୂର୍ଣ୍ଣ ରାସ୍ତାରେ ଟ୍ରାଫିକ୍‌ର କଡ଼ା ଅନୁଶାସନ, କିନ୍ତୁ ଅତ୍ୟନ୍ତ ମଜାର ବିଷୟ ଯେ ଆମ ବାହକ ଘୋଟକଟି କୌଣସି ଟ୍ରାଫିକ୍ ନିୟମକୁ ଖାତିର ନ କରି ରାସ୍ତାର ବାମ ପାର୍ଶ୍ୱରେ ପଦଯାତ୍ରୀ, ଦ୍ୱିଚକ୍ର, ତ୍ରି-ଚକ୍ର ଓ ଚତୁର୍ଚକ୍ର ଯାନର ଭିଡ଼ ମଧ୍ୟରେ କେତେବେଳେ ମନ୍ଥର ଓ କେତେବେଳେ କ୍ଷିପ୍ର ଗତିରେ ଚାଲୁଥାଏ । ସେହି ଭିଡ଼ ମଧ୍ୟରେ ଆମକୁ ଦେଖି କେତେ ଜଣ ହସୁଛନ୍ତି ସେହି କଥା ଆମେ ଲକ୍ଷ୍ୟ କରୁଥିଲୁ । ଆମ ବାହନଟି ଟ୍ରାଫିକ୍ ନିୟମ ଅବମାନନା କରୁଥିଲା କେବଳ ସେତିକି ନୁହେଁ, ରାସ୍ତାର ଖାଲ ଢ଼ିପ, ରାସ୍ତା ମଝିରେ ଥିବା ହମ୍ପ୍ ଗୁଡ଼ିକୁ ମଧ୍ୟ ଭ୍ରୁକ୍ଷେପ କରୁ ନ ଥିଲା ଫଳରେ ଅସମତଳ ରାସ୍ତାରେ ଗତି କରିବା ସମୟରେ ପଛରେ ବସିଥିବା

ଲୋକ ତଳେ ପଡ଼ିଯିବା ଭୟ ମଧ୍ୟ ରହିଥିଲା । ଯାହାହେଉ ପାଦଚଲା ପରିଶ୍ରମରୁ ରକ୍ଷା ମିଳିଲା । ସ୍ୱାମୀ ନାରାୟଣ ମନ୍ଦିର ଦ୍ୱାର ଦେଶରେ ଆମକୁ ଘୋଟକ ବାହନରୁ ଓହ୍ଲାଇବା ଦେଖି ଆମର କେତେଜଣ ତୀର୍ଥଯାତ୍ରୀ ବ୍ୟଙ୍ଗ ମାଧ୍ୟମରେ ଆମକୁ ସ୍ୱାଗତ ଜଣାଇଲେ । ରାତ୍ରି ପ୍ରସାଦ ସେବନ ପରେ ତୀର୍ଥରାଜ ପ୍ରୟାଗ ଓ ବେଣୀମାଧବଙ୍କୁ ସ୍ମରଣ କରି ବିଶ୍ରାମ ନେଲୁ ।

### ତା. ୧୮.୦୨.୨୦୧୩, ସୋମବାର

"ତୀର୍ଥଯାତ୍ରା" କାର୍ଯ୍ୟକ୍ରମରୁ 'ତୀର୍ଥ ଭ୍ରମଣ' ଶେଷ ହୋଇ କେବଳ 'ଯାତ୍ରା' ବାକି ରହିଯାଇଥିଲା । ପ୍ରାତଃ ୫ଟାରେ ନିତ୍ୟକର୍ମ ସମାପନ ପରେ ମଧ୍ୟାହ୍ନ ଓ ରାତ୍ରି ପ୍ରସାଦ ପ୍ୟାକେଟ୍ ସଂଗ୍ରହ କରି ସଂରକ୍ଷିତ ବସ୍ ଯୋଗେ ଷ୍ଟେସନ ଅଭିମୁଖେ ଯାତ୍ରାରମ୍ଭ କଲୁ । ନିର୍ଦ୍ଧାରିତ ସମୟ ସକାଳ ୭ଘଣ୍ଟା ୩୦ମିନିଟରେ ପୁରୁଷୋତ୍ତମ ଏକ୍ସପ୍ରେସ୍‌ର S-6 ନଂ ବଗିର ୧୭ ଓ ୧୮ ନଂ ସିଟ୍‌ରେ ଆମ ପାଇଁ ବ୍ୟବସ୍ଥା କରାଯାଇଥିଲା । ଏଠାରେ ଯାତ୍ରାର ଶେଷାର୍ଦ୍ଧରେ ଏକ ବିଚିତ୍ର ବିଲକ୍ଷଣ ଦେଖାଯାଇଥିଲା । ଆମର ସିଟ୍‌ରେ ବିହାରୀ ଯୁବକମାନେ ଶୋଇଥିଲେ, ସେମାନଙ୍କର ଯାତ୍ରା ଦିନ ଗୋଟାଏ ବେଳକୁ 'ସାସାରାମ'ରେ ଶେଷ ହେବାର ଥିଲା । ସେମାନଙ୍କୁ ଆମ ସଂରକ୍ଷିତ ଆସନରୁ ଉଠାଇବା ପାଇଁ ଆମ ମାନଙ୍କର ପ୍ରବଳ ପାଟିତୁଣ୍ଡ, ସୁସେବକ ଓ ଶରଣ ପ୍ରଭୁଙ୍କର ପ୍ରଚେଷ୍ଟା ସବୁ ବିଫଳ ହେଲା । ଶେଷରେ ଆମ ପୂର୍ବ ପରିଚିତ ତୀର୍ଥ ସାଥୀ ସୁଶ୍ରୀ ନିନିମା ଓ ଶ୍ରୀମତୀ ରାଧା ନାମ୍ନୀ ଦୁଇ ଜଣ ସାହସିନୀ ଯୁବତୀଙ୍କ ଉଦ୍ୟମରେ, ଟି.ଟି.ଇ, ଆମ ତୀର୍ଥ ସାଥୀ କ୍ରାଇମ୍ ବ୍ରାଞ୍ଚ୍ ଇନ୍‌ସପେକ୍ଟର ତଥା ଅନ୍ୟ କେତେ ଜଣ ତୀର୍ଥ ସାଥୀଙ୍କ କଡ଼ା ନିର୍ଦ୍ଦେଶରେ ଶେଷରେ ବିହାରୀ ଯୁବକ ମାନେ ସ୍ଥାନରୁ ଉଠିବାକୁ ବାଧ୍ୟ ହେଲେ । ମଧ୍ୟାହ୍ନ ପ୍ରସାଦ ସେବନ ପରେ ବିଶ୍ରାମ ନେଲୁ । ପରିଚିତ ତୀର୍ଥ ସାଥୀଙ୍କ ସହ ବାର୍ତ୍ତାଳାପ ପରେ ସଂଧ୍ୟା ଆସିଯାଇଥିଲା । ସଂାଧ ଭଜନ କୀର୍ତ୍ତନ ପରେ ରାତ୍ରି ପ୍ରସାଦ ସେବନ କଲୁ । ରାତ୍ରି ୧୦ଟା ପରଠାରୁ ବିଦାୟର ପର୍ବ ଆରମ୍ଭ ହୋଇଯାଇଥିଲା । ଆମ ଲକ୍ଷ୍ୟ ସ୍ଥଳ ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମ ଏକ୍ସପ୍ରେସ୍‌ରୁ ପରଦିନ ସକାଳ ୭ଟା ବେଳେ ଅବତରଣ କଲୁ ।

### ତା. ୧୯.୦୨.୨୦୧୩, ମଙ୍ଗଳବାର

ଆହ୍ଲାବାଦରେ ରହଣି ସମୟରେ କୋଡ଼ିଏ ଓ ଏକୋଇଶି ତାରିଖ ଭାରତ ବନ୍ଦ ବୋଲି ଶୁଣିବାକୁ ପାଇଥିଲୁ । ତେଣୁ କୋଡ଼ିଏ ତାରିଖର ପୁରୀରୁ ଫେରିବା ଟିକଟକୁ ବାତିଲ କରି ପୁଣି ୧୯ ତାରିଖରେ ପୁରୀ - ତିରୁପତି ଏକ୍ସପ୍ରେସ୍‌ରେ ଟିକଟ

ସଂରକ୍ଷିତ କଲୁ । ପୁରୀ ବଡ଼ଦାଣ୍ଡର ନୀଳାଚଳ ଭକ୍ତ ନିବାସରେ ପହଞ୍ଚି ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ବାହାରିଲୁ । ମହାପ୍ରସାଦ ଉଠି ବ୍ରାହ୍ମଣ ଭୋଜନ କରାଇବା ପାଇଁ ଆମ ପାଖରେ ସମୟ ନ ଥିଲା ତେଣୁ ଅନ୍ନଭୋଗ ଅଫିସ୍‌ରେ ଟଙ୍କା ଜମା ଦେଇ ଶୁଖିଲା ମହାପ୍ରସାଦ କିଣି ଫେରିବା ପାଇଁ ଠିକ୍ କଲୁ । ଦିନ ୯ଟାରେ ଆମେ ଦର୍ଶନକୁ ଯିବା ସମୟରେ ସାହାଣ ମେଲା ଦର୍ଶନ ଚାଲିଥାଏ । ବିରାଟ ଆୟତନ ବିଶିଷ୍ଟ ଶ୍ରୀମନ୍ଦିର ପ୍ରାଙ୍ଗଣରେ ଅସମ୍ଭବ ଭିଡ଼ ଜମିଥାଏ । ପ୍ରବଳ ଭିଡ଼ ମଧ୍ୟରେ ଠେଲି ପେଲି ପଶି ଜଗମୋହନ ରୁ ଅନ୍ତରଙ୍ଗ ଜଗନ୍ନାଥଙ୍କୁ ଅନ୍ତର ବେଦନା ଜଣାଇଲୁ । ଆଉ ଗୋଟିଏ ଦିନ ଶ୍ରୀକ୍ଷେତ୍ରରେ ରହି ଶ୍ରୀଜଗନ୍ନାଥଙ୍କୁ ଆଉ ଦୁଇଥର ଆଖି ପୁରାଇ ଦେଖିବାର ବାସନାରେ "ଭାରତ ବନ୍ଦ" ଡ଼ାକରା ପ୍ରତିବନ୍ଧକ ସୃଷ୍ଟି କଲା । ତଥାପି ଏହା ମଧ୍ୟ ମଙ୍ଗଳମୟଙ୍କ ଇଚ୍ଛା ବୋଲି ମନେ କରି ସନ୍ତୁଳିତ ମନକୁ ସାନ୍ତ୍ୱନା ଦେଇ ତୀର୍ଥଯାତ୍ରା ସମାପନ କଲୁ । ପଣ୍ଡିତ ଗୋପବନ୍ଧୁଙ୍କ ଲେଖନୀରେ 'ଧର୍ମପଦ' କବିତାରେ ଧରମା ମୁହଁରେ ଫୁଟି ଉଠିଥିବା ପଂକ୍ତିଟିକୁ ମନେ ପକାଇଲୁ -

"ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀ ପୟରେ,
ପୂରୁ ତବ ଇଚ୍ଛା ଏ ନର ପରାଣେ
ଜୟ ଜଗଦୀଶ ହରେ ।"

କରୁଣା ବରୁଣାଳୟଙ୍କ ଅପାର କରୁଣା ସିନ୍ଧୁର ବିନ୍ଦୁଟିଏ ଝରିଥିଲା ବୋଲି ସେହିଦିନ ରାତ୍ରି ୯ ଘଣ୍ଟା ୨୦ ମିନିଟରେ ବ୍ରହ୍ମପୁର ଏବଂ ୧୧ଟାରେ ବମକୋଇରେ ଆମେ ସୁବିଧାରେ ପହଞ୍ଚିପାରିଲୁ ।

ଘର ଇଷ୍ଟ, ସକଳ ଦେବ ଦେବୀ, ପିତୃପୁରୁଷ, ବନ୍ଧୁ ବାନ୍ଧବ, ଆତ୍ମୀୟ ସୋଦର, ପରିଚାରକ ଓ ଅଗଣିତ ହିତାଂକ୍ଷୀଙ୍କ ଶୁଭକାମନା ଯୋଗୁଁ ଆମ ଭଳି ଅକିଞ୍ଚନଙ୍କର ତୀର୍ଥଯାତ୍ରା ସଂପୂର୍ଣ୍ଣ ଓ ସୁଗମ ହୋଇପାରିଥିଲା । ସର୍ବୋପରି ଇସ୍କନ ବାବା ମାନଙ୍କର ଅନବରତ ନିଃସ୍ୱାର୍ଥ ସେବା ଓ ସୁଚିନ୍ତିତ ବ୍ୟବସ୍ଥା ନିକଟରେ ଆମେ ଜନ୍ମ ଜନ୍ମାନ୍ତର ପାଇଁ ଋଣୀ । ଜୀବନରେ ଚଲାପଥରେ ଅନେକ ସାଂଗ ମିଳିବେ କିନ୍ତୁ ସାଧୁ ସଙ୍ଗ ପାଇବା କଷ୍ଟକର । ଗୋସ୍ୱାମୀ ତୁଳସୀ ଦାସଙ୍କ ଭାଷାରେ -

''ତାତ ସ୍ୱର୍ଗ ଅପବର୍ଗ ସୁଖ ଧରିଏ
ତୁଲା ଏକ ଅଙ୍ଗ,
ତୁଲ ନ ତାହି ସକଲ ମିଲି ଜୋ
ସୁଖ ଲବ ସତ୍ ସଙ୍ଗ !''

ଇସ୍କନ ଆୟୋଜିତ ତୀର୍ଥଯାତ୍ରା କାର୍ଯ୍ୟକ୍ରମରେ ପ୍ରକୃତରେ ଆମ ସ୍ୱାର୍ଥ ସାଧନ ଉଦ୍ଦେଶ୍ୟ ନିହିତ ଥିଲେ ମଧ୍ୟ କିଛି ଦିନ ପାଇଁ ସାଧୁ ସଙ୍ଗ ପ୍ରାପ୍ତି ବୋଧହୁଏ ଆମ ପୂର୍ବ ସୁକୃତର ଫଳ ବୋଲି ଭାବିନେଇଛୁ । ଏଇ ପରିପ୍ରେକ୍ଷୀରେ ବାଲ ବ୍ୟାସ ଈଶ୍ୱର କୃଷ୍ଣ ଶାସ୍ତ୍ରୀଜୀଙ୍କର ଭଜନଟି ସ୍ମରଣକୁ ଆସେ -

''ମିଲନ ଆଜ ତକ ଥା
ହମାରା ତୁହ୍ମାରା,
ରହେ ଜୀନ୍ଦେଗି ଫିର୍
ମିଲେଙ୍ଗେ ଦୋ ବାରା !''

ପୁନର୍ମିଳନର ଆଶା ନେଇ ହରେକୃଷ୍ଣ ଓ ଇସ୍କନ ବାବା ମାନଙ୍କୁ ଶତ କୋଟି ପ୍ରଣାମ ଜଣାଇ ରହୁଛୁ ।

!! ହରେ କୃଷ୍ଣ !!





ହରେ କୃଷ୍ଣ ହରେ କୃଷ୍ଣ
କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ
ରାମ ରାମ ହରେ ହରେ



## ପଦେ କଥା...

କବି, ଲେଖକ, ଐତିହାସିକ ତଥା ପ୍ରାବନ୍ଧିକ ବୋଲାଇବା ପ୍ରକୃତରେ ସହଜସାଧ୍ୟ ନୁହେଁ, ସେଥି ନିମିତ୍ତ କେତେ ସାଧନା, ଜ୍ଞାନ ଓ ଅନୁଭୂତି ଆବଶ୍ୟକ । ବାସ୍ତବରେ ମୁଁ କବି, ଲେଖକ ବୋଲାଇ ନାଆଁ ନେବାରେ ମୋର ଅଭିପ୍ରାୟ ନାହିଁ । ଏକ କଳାକାର ଓ ସାହିତ୍ୟିକ ପରିବାରରେ ଜନ୍ମ ଓ ଶ୍ୱଶୁରାଳୟରେ ଉପଯୁକ୍ତ ପ୍ରୋତ୍ସାହନ ମୋତେ ଲେଖନୀ ପାଇଁ ପ୍ରେରଣା ପ୍ରଦାନ କରିଛି । ଏହି ଲେଖା ମାଧ୍ୟମରେ ମନ ଦର୍ପଣର ନିଭୃତ କୋଣର କିଛି ସ୍ମୃତି ଓ ଅନୁଭୂତିକୁ ଫେଣ୍ଟା ଫେଣ୍ଟି କରି ଅପରକୁ ବାଣ୍ଟିବାରେ ଓ ଶ୍ରୀଜଗନ୍ନାଥଙ୍କ ଚରଣ ଅମ୍ବୁଜରେ ଭକ୍ତି ନୈବେଦ୍ୟ ଅର୍ପଣ କରିବାରେ ପ୍ରୟାସ କରିଛି । ରସିକ ପାଠକେ ଏହାର ରସ ଆସ୍ୱାଦନ କଲେ ଶ୍ରମ ସାର୍ଥକ ହେବ ବୋଲି ଆଶା ରଖିଛି ।

ଇନ୍ଦିରା ପଣ୍ଡା

ଇନ୍ଦିରା ପଣ୍ଡା